**ସମୟର ସ୍ୱରଲିପି**

**ଡକ୍ଟର ବିମଳେନ୍ଦୁ ମହାନ୍ତି**

ପ୍ରକାଶକ: **କାଦମ୍ବିନୀ ମିଡିଆ ପ୍ରା.ଲି.,** କାଦମ୍ବିନୀ ଭିଲ୍ଲା, ୪୨୧/୨୩୫୮, ପଦ୍ମାବତୀ ବିହାର, ଶୈଳଶ୍ରୀ ବିହାର, ଭୁବନେଶ୍ୱର-୨୧ । ଦୂରଭାଷ: ୦୬୭୪-୨୭୪୧୨୬୦, ୨୭୪୦୫୧୯

ପ୍ରଚ୍ଛଦ: ତପନ କୁମାର ପଣ୍ଡା

ଅକ୍ଷର: ଶ୍ରୀ ସରୋଜ କୁମାର ମିଶ୍ର

ପ୍ରଥମ ପ୍ରକାଶ: **ଜୁଲାଇ ୨୦୧୫**

ମୁଦ୍ରଣ: **ପ୍ରିଣ୍ଟଟେକ୍ ଅଫ୍‌ସେଟ୍ ପ୍ରା.ଲି.,** ଭୁବନେଶ୍ୱର

ମୂଲ୍ୟ: **୧୬୦.୦୦ ଟଙ୍କା**

**SAMAYARA SWARALIPI**

**Dr. Bimalendu Mohanty**

Published by **Kadambini Media Pvt. Ltd.,** Kadambini Villa, 421/2358 Padmabati Vihar, Sailashree Vihar, Bhubaneswar-751021, Odisha
Tel: 0674-2741260, 2740519 I E-mail: contact@kadambini.org, kadambini.odia@gmail.com I Website: www.kadambini.org

Cover: Tapan Kumar Panda

First Edition: **July 2015**

Printed at: **Print-Tech Offset Pvt. Ltd.,** Bhubaneswar

Price: **Rs.160.00**

**ISBN - 978-93-85350-03-0**



---

Publisher: **Kadambini Media Pvt. Ltd.**

Founder: **Dr. Achyuta Samanta**

Managing Director: **Dr. Iti Samanta**

---



୰ ଲକ୍ଷ୍ମୀନାରାୟଣ ପଟ୍ଟନାୟକ



୰ ଶଙ୍କରନାରାୟଣ ପଟ୍ଟନାୟକ

# ଉତ୍ସର୍ଗ

ବିବାହ ପରଠାରୁ
ମୋର ବଡ଼ଭାଇନା ୰ ଲକ୍ଷ୍ମୀନାରାୟଣ ପଟ୍ଟନାୟକ
(ଡିଭିଜନାଲ ଇଂଜିନିୟର, ଟେଲିଗ୍ରାଫ)
ଏବଂ
ସାନଭାଇନା ୰ ଶଙ୍କରନାରାୟଣ ପଟ୍ଟନାୟକ
(ନିର୍ବାହୀ ଯନ୍ତ୍ରୀ, ଇଲେକ୍ଟ୍ରିକାଲ)
ମୋର ସବୁ କାର୍ଯ୍ୟକୁ ପ୍ରଶଂସା କରନ୍ତି ।
ସେମାନଙ୍କ ଆଶୀର୍ବାଦ ମୋ ପାଇଁ ସବୁବେଳେ
ରହିଥିବା ମୁଁ ଅନୁଭବ କରୁଛି ।
ସେମାନଙ୍କ ପବିତ୍ର ସ୍ମୃତିରେ...



# ମୁଖବନ୍ଧ

ଡକ୍ଟର ବିମଳେନ୍ଦୁ ମହାନ୍ତିଙ୍କର ଓଡ଼ିଶାର ଖବରକାଗଜମାନଙ୍କରେ ୨୦୧୧ ମସିହା ପରଠାରୁ ଅଦ୍ୟାବଧି ପ୍ରକାଶିତ ୪୨ଟି ପ୍ରବନ୍ଧ ଚୟନ କରାଯାଇ ଏକ ସଙ୍କଳନ 'ସମୟର ସ୍ୱରଲିପି' ପ୍ରସ୍ତୁତ କରାଯାଇଅଛି । ବର୍ତ୍ତମାନ ବୁଦ୍ଧିଜୀବୀମାନଙ୍କ ବିଷୟରେ ଗୋଟିଏ କଥା ପ୍ରାୟ ଆଲୋଚନା ହୁଏ ଯେ ସେମାନେ ସମାଜରେ ଘଟୁଥିବା ଅନ୍ୟାୟ, ଅବିଚାର, ମୂଲ୍ୟବୋଧର ଦ୍ରୁତ ଅବକ୍ଷୟ ବିଷୟରେ ମତବ୍ୟକ୍ତ କରୁନାହାନ୍ତି । ସମସ୍ୟା ଜର୍ଜରିତ ରାଜ୍ୟକୁ ଦିଗ୍‌ଦର୍ଶନ ଦେବାରେ ଆଗଭର ନ ହୋଇ ସେମାନେ ନିରବ ରହିବାକୁ ଶ୍ରେୟ ମନେକରୁଛନ୍ତି । କିନ୍ତୁ ବିମଳେନ୍ଦୁ ମହାନ୍ତି ତାଙ୍କ ଲେଖା ମାଧ୍ୟମରେ ଦେଶରେ ଘଟୁଥିବା ଘଟଣାବଳୀ ସମ୍ବନ୍ଧରେ ଆଲୋଚନା କରିବା ସଂଗେ ସଂଗେ ତା'ର ସମାଧାନର ପନ୍ଥା ସୂଚାଇ ଥାଆନ୍ତି । ତାଙ୍କର କେତେଗୁଡ଼ିଏ ଲେଖା 'ଅସହିଷ୍ଣୁତା ଓଡ଼ିଶାର ବିକାଶରେ ବାଧକ', '୯୯ତମ ବିଜ୍ଞାନ କଂଗ୍ରେସ ଓଡ଼ିଶାର ସମ୍ମାନକୁ ଦ୍ୱିଗୁଣିତ କରିଛି', 'ଦେଶର ପ୍ରତିରକ୍ଷା ପ୍ରସ୍ତୁତିରେ ଅକ୍ଷମଣୀୟ ଅବହେଳା', 'ସେନାରେ କ୍ରମବର୍ଦ୍ଧିଷ୍ଣୁ ଦୁର୍ନୀତି ଓ ବିଶୃଙ୍ଖଳା', 'କଳାଧନ ଅତୀତ ଓ ବର୍ତ୍ତମାନ' ପ୍ରଭୃତି ଅତ୍ୟନ୍ତ ଭାବ ଉଦ୍ଦୀପକ । ତାଙ୍କର ପ୍ରତ୍ୟେକ ପ୍ରବନ୍ଧ ତଥ୍ୟଭିତ୍ତିକ ହେବା ସଂଗେ ସଂଗେ ସୁଖପାଠ୍ୟ । ଏହି ପ୍ରବନ୍ଧ ସଙ୍କଳନଟି ପାଠକମାନଙ୍କ ଦ୍ୱାରା ଆଦୃତ ହେବ ବୋଲି ମୁଁ ଆଶା ବ୍ୟକ୍ତ କରୁଛି । ଡକ୍ଟର ମହାନ୍ତି ଅବିରାମ ଭାବେ ତାଙ୍କ ଲେଖନୀ ଚାଳନା କରନ୍ତୁ ଏବଂ ନିର୍ଭୀକ ଭାବେ ତାଙ୍କ ମତ ବ୍ୟକ୍ତ କରନ୍ତୁ । ଏହାଦ୍ୱାରା ରାଜ୍ୟର ଅଶେଷ ହିତ ସାଧିତ ହେବ ।

ଡକ୍ଟର ଅଚ୍ୟୁତ ସାମନ୍ତ
କଳିଙ୍ଗ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଇଣ୍ଡଷ୍ଟ୍ରିଆଲ୍ ଟେକ୍ନୋଲୋଜି ଓ
କଳିଙ୍ଗ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ସୋସିଆଲ୍ ସାଇନ୍ସର ପ୍ରତିଷ୍ଠାତା ଏବଂ
ଓଡ଼ିଶାର ସର୍ବପ୍ରଥମ ମାସିକ ପାରିବାରିକ ପତ୍ରିକା 'କାଦମ୍ବିନୀ'ର
ପ୍ରତିଷ୍ଠାତା ଓ ଦିଗ୍‌ଦର୍ଶକ



# ନିଜକଥା

ମୋର ଦୁଇଟି ପ୍ରବନ୍ଧ ସଂକଳନ ପୁସ୍ତକ 'ଆମେ ଓଡ଼ିଆ ଏବଂ ଅନ୍ୟାନ୍ୟ' ଓ 'ବ୍ୟକ୍ତି, ସଂସ୍କୃତି ଓ ସାଂପ୍ରତିକୀ' ପୂର୍ବରୁ ପ୍ରକାଶିତ ହୋଇଛି। ଦୁଇଟିଯାକର ପ୍ରକାଶକ ମୋତେ ବହୁବାର କହିଛନ୍ତି ଯେ ଆପଣଙ୍କ ପ୍ରବନ୍ଧ ସଂକଳନଟି ଲୋକାଦୃତ ହେବାରୁ ପୁନଃମୁଦ୍ରିତ ହୋଇଛି ଏବଂ ଅନୁରୋଧ କରିଛନ୍ତି ଅନ୍ୟ ପ୍ରବନ୍ଧଗୁଡ଼ିକୁ ଏକତ୍ରିତ କରି ଆଉ ଗୋଟିଏ ପୁସ୍ତକ ପ୍ରକାଶ କରିବା ପାଇଁ। ମୋର ହୃଦ୍‌ବୋଧ ହୋଇଛି, ସମ୍ବାଦପତ୍ରର ପାଠକମାନେ ଦୈନନ୍ଦିନ ଘଟଣାବଳୀ ସମ୍ବନ୍ଧରେ ପଢ଼ିବା ପାଇଁ ଯେ କେବଳ ଆଗ୍ରହୀ ତାହା ଭାବିବା ଠିକ୍ ହେବନାହିଁ। ସେମାନେ ସଂପାଦକୀୟ, ରାଜ୍ୟର ଓ ଦେଶର ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ବିଷୟମାନଙ୍କ ସଂପର୍କରେ ପ୍ରକାଶିତ ପ୍ରବନ୍ଧମାନ ପଢ଼ିବାକୁ ଆଗ୍ରହ ପ୍ରକାଶ କରନ୍ତି। ପ୍ରମାଣସ୍ୱରୂପ ମୋ ଲିଖିତ ପ୍ରବନ୍ଧମାନ ପ୍ରକାଶ ପାଇବା ପରେ କେତେକ ପରିଚିତ ବ୍ୟକ୍ତି, ଯେଉଁମାନଙ୍କ ସହିତ ବର୍ଷ ବର୍ଷ ଧରି ସାକ୍ଷାତ ହୋଇପାରୁନାହିଁ, ସେମାନେ ଦୂରଭାଷ ଦ୍ୱାରା ସଂପର୍କ ସ୍ଥାପନ କରି ପ୍ରବନ୍ଧ ସମ୍ପର୍କରେ ସେମାନଙ୍କର ମତାମତ ଦେଇଥାନ୍ତି। ପ୍ରବନ୍ଧଗୁଡ଼ିକ ପଢ଼ି ଅପରିଚିତ ବ୍ୟକ୍ତି ମଧ୍ୟ ବନ୍ଧୁତା ବନ୍ଧନରେ ଆବଦ୍ଧ ହୋଇଥାନ୍ତି। ଏହା ଯେ କେତେ ଆନନ୍ଦଦାୟକ ତାହା ପ୍ରକାଶ କରିବା ସମ୍ଭବପର ନୁହେଁ। ସେହିଭଳି ବାର୍ତ୍ତାମାନ ପାଇବାପରେ ପରିଣତ ବୟସରେ ମଧ୍ୟ ଲେଖିବାକୁ ଝୁଙ୍କ ଆସେ।

ବିଭିନ୍ନ ସମୟରେ ରଚିତ ଓ ଓଡ଼ିଶାର ବିଶିଷ୍ଟ ପତ୍ରପତ୍ରିକାରେ ପ୍ରକାଶିତ ୪୨ଟି ପ୍ରବନ୍ଧକୁ ଚୟନ କରି ଏହି ସଂକଳନଟି ପ୍ରସ୍ତୁତ କରାଯାଇଛି। ପ୍ରତ୍ୟେକ ପ୍ରବନ୍ଧ ନିର୍ଦ୍ଦିଷ୍ଟ ଏକ ସମୟର ସମ୍ବାଦ ଓ ସମସ୍ୟାକୁ ନେଇ ଲିଖିତ। ଏଣୁ ଏହାର ତାତ୍‌କାଳିକ ମୂଲ୍ୟ ସଂରକ୍ଷିତ ରହିଛି। ସଂକଳନସ୍ଥ ପ୍ରତ୍ୟେକ ପ୍ରବନ୍ଧ ସେହି ସମୟର ସମସ୍ୟା ଉପରେ ଲେଖାଯାଇଥିବାରୁ ଏ ସଂକଳନର ନାମ **'ସମୟର୍ ସ୍ୱରଲିପି'** ରଖାଯାଇଅଛି। ପ୍ରତ୍ୟେକ ପ୍ରବନ୍ଧରେ ତଥ୍ୟ ରହିଛି, ପରିସଂଖ୍ୟାନ ରହିଛି, ସମସ୍ୟା ରହିଛି ଓ ତା'ର ନିରାକରଣର ଉପାୟ ମଧ୍ୟ ସୂଚିତ ହୋଇଛି। କେତୋଟି ପ୍ରବନ୍ଧ ମହନୀୟ ବ୍ୟକ୍ତିବିଶେଷଙ୍କ ଜୀବନବ୍ୟାପୀ ସାଧନାକୁ ନେଇ ଲେଖାଯାଇଛି। ଏହି

ସଂକଳନରେ ପ୍ରବନ୍ଧଗୁଡ଼ିକୁ କାଳାନୁକ୍ରମରେ ସଜାଇ ପରିବେଷଣ କରିବାକୁ ଚେଷ୍ଟା କରାଯାଇଛି ।

ପ୍ରବନ୍ଧଗୁଡ଼ିକୁ ସାଇତି ରଖି ଠିକ୍ ସମୟରେ ଯୋଗାଇଦେଇ ମୋତେ ମାନସିକ ଚାପରୁ ମୁକ୍ତ ରଖିଥିବାରୁ ମୋର ସହଧର୍ମିଣୀ ପ୍ରଫେସର ବେଦବତୀ ମହାନ୍ତିଙ୍କ ଭୂମିକାକୁ ମୁଁ ପ୍ରଶଂସା କରୁଛି । ମୋ ପୁଅ ଡାକ୍ତର ସୁଶାନ୍ତ ମହାନ୍ତି ଓ ସାନଭାଇ ପ୍ରିୟବ୍ରତ ମହାନ୍ତି ନିର୍ଭୀକ ଭାବରେ ଲେଖନୀ ଚଳାଇ ରଖିବାକୁ ପରାମର୍ଶ ଦେଇ ମୋତେ ସବୁବେଳେ ଉତ୍ସାହିତ କରିଥିବାରୁ ମୁଁ ସେମାନଙ୍କୁ ଧନ୍ୟବାଦ ଜଣାଉଛି । ପ୍ରବନ୍ଧ ରଚନା କରିବାରେ ଭୁବନେଶ୍ୱରର ଯୁବ ଆଇନଜୀବୀ ସରୋଜ କୁମାର ମିଶ୍ର ମୋତେ ସାହାଯ୍ୟ କରିଥିବାରୁ ତାଙ୍କୁ ମୁଁ ଶୁଭେଚ୍ଛା ଜଣାଉଛି ।

ପ୍ରବନ୍ଧଗୁଡ଼ିକର ରଚନା ନିମନ୍ତେ ସମୟୋପଯୋଗୀ ପ୍ରେରଣା ପ୍ରଦାନ କରିଥିବାରୁ ପ୍ରଫେସର ଦେବୀପ୍ରସନ୍ନ ପଟ୍ଟନାୟକ (ପଦ୍ମଶ୍ରୀ), ଶ୍ରୀ ସାତକଡ଼ି ହୋତା, ଡକ୍ଟର ବିଭୁତି ପଟ୍ଟନାୟକ, ପ୍ରଫେସର ଜିତେନ୍ଦ୍ର ନାରାୟଣ ଦାସ, ପ୍ରଫେସର ରାଜକିଶୋର ମିଶ୍ର, ଡକ୍ଟର ସୁରେନ୍ଦ୍ରକୁମାର ମହାରଣା, ବିଶିଷ୍ଟ ସ୍ତମ୍ଭକାର ବରେନ୍ଦ୍ରକୃଷ୍ଣ ଧଳ, ବସନ୍ତ ଦାସ, ପ୍ରଦୋଷ ପଟ୍ଟନାୟକ, ପ୍ରଦ୍ୟୁମ୍ନ ଶତପଥୀ, ଦିଲ୍ଲୀପ ହାଲି ଓ ତୁଷାରକାନ୍ତଙ୍କୁ ମୁଁ କୃତଜ୍ଞତା ଜ୍ଞାପନ କରୁଛି ।

ପ୍ରବନ୍ଧଗୁଡ଼ିକ ପଢ଼ି ଶିକ୍ଷା ଓ ସମାଜସେବା କ୍ଷେତ୍ରରେ ବିଶ୍ୱରେ ସର୍ବତ୍ର ପ୍ରଶଂସିତ ହେଉଥିବା ଏବଂ ଓଡ଼ିଶାକୁ ଗୌରବାନ୍ୱିତ କରୁଥିବା ଡକ୍ଟର ଅଚ୍ୟୁତ ସାମନ୍ତ ଏହି ସଂକଳନର ମୁଖବନ୍ଧ ଲେଖି ମୋତେ ବାଧିତ କରିଛନ୍ତି । ସେଥିପାଇଁ ମୁଁ ତାଙ୍କୁ କୃତଜ୍ଞତା ଜ୍ଞାପନ କରୁଛି । ମୋର ଏହି ପ୍ରବନ୍ଧ ସଂକଳନଟିକୁ 'କାଦମ୍ବିନୀ ମିଡିଆ ପ୍ରାଇଭେଟ ଲିଃ' ପ୍ରକାଶ କରିଥିବାରୁ ମୁଁ ଏହି ଅନୁଷ୍ଠାନର ପ୍ରତିଷ୍ଠାତା ଡ. ଅଚ୍ୟୁତ ସାମନ୍ତଙ୍କୁ ଏବଂ କାଦମ୍ବିନୀର ସମ୍ପାଦିକା ଡ. ଇତି ସାମନ୍ତଙ୍କୁ କୃତଜ୍ଞତା ଜ୍ଞାପନ କରୁଛୁ । ପୁସ୍ତକଟି ପାଠକମାନଙ୍କ ଦ୍ୱାରା ଆଦୃତ ହେଲେ ମୋର ଶ୍ରମ ସାର୍ଥକ ହେବ ।

- ବିମଳେନ୍ଦୁ ମହାନ୍ତି

# ସୂଚିପତ୍ର

# ମାଓବାଦୀ ଦମନ ନାମରେ ପୋଲିସ ସନ୍ତ୍ରାସ

ଏପ୍ରିଲ ୨, ୨୦୧୦ ମସିହାରେ କେନ୍ଦ୍ର ସ୍ୱରାଷ୍ଟ୍ର ମନ୍ତ୍ରୀ ପି. ଚିଦାମ୍ବରମ୍ ପଶ୍ଚିମବଙ୍ଗର ଲାଲଗଡ ପରିଦର୍ଶନ ବେଳେ ମାଓବାଦୀମାନଙ୍କୁ ୨୦୧୩ ମସିହା ସୁଦ୍ଧା ସମୂଳେ ନିପାତ କରାଯିବ ବୋଲି ଆସ୍ଫାଳନ କରିଥିଲେ। ତା'ର କିଛିଦିନ ପରେ ମାଓବାଦୀମାନେ ଜିହାଦିମାନଙ୍କ ଅପେକ୍ଷା ଅଧିକ ବିପଦଜନକ ବୋଲି ସେ କହିଥିଲେ। ସେ ଓଡିଶା, ଛତିଶଗଡ, ଝାଡଖଣ୍ଡ ପ୍ରଭୃତି ରାଜ୍ୟର ଖଣିଜ ସମ୍ପଦ ଭରପୁର ଜଂଗଲ ଅଞ୍ଚଳରୁ ଆଦିବାସୀମାନଙ୍କୁ ବିସ୍ଥାପିତ କରି ଶିଳ୍ପପତିମାନଙ୍କ ଖଣିଜ ସାମ୍ରାଜ୍ୟର ସୁରକ୍ଷା ପାଇଁ ଯେ ବଦ୍ଧପରିକର ଏହା ତାଙ୍କର ଘୋଷଣାରୁ ସ୍ପଷ୍ଟ ଜଣାପଡିଲା। ବିଖ୍ୟାତ ସାମ୍ବାଦିକ ଶାମ୍ ରାଜାପ୍ପା କହିଛନ୍ତି ଚିଦାମ୍ବରମ୍ଙ୍କ ଭଳି ଲୋକ କେନ୍ଦ୍ରରେ ମନ୍ତ୍ରୀ ରହିବା ଦେଶ ପାଇଁ ବିପଦଜନକ। ତାଙ୍କ ଘୋଷଣା ସମଗ୍ର ଦେଶକୁ ବିଶେଷକରି ଓଡିଶାର ଆଦିବାସୀମାନଙ୍କୁ ଘୋର ସଂକଟ ମଧ୍ୟକୁ ଠେଲି ଦେଇଛି। ତାଙ୍କ ଘୋଷଣା ପରଠାରୁ କେନ୍ଦ୍ର ସୁରକ୍ଷା ବାହିନୀ, ସେମାନେ ସି.ଆର.ପି.ଏଫ୍. ହୁଅନ୍ତୁ ବା ବି.ଏସ୍.ଏଫ୍. ହୁଅନ୍ତୁ, ମାଓବାଦୀଙ୍କୁ ଦମନ ଆଳରେ ନିରୀହ ଜନସାଧାରଣ ବିଶେଷକରି ଆଦିବାସୀମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର ଚଳାଇ ଆସୁଛନ୍ତି। ଓଡିଶାରେ କେନ୍ଦ୍ରୀୟ ସୁରକ୍ଷା ବାହିନୀ ନିୟୋଜିତ ହେବାପରେ ସେମାନଙ୍କ ଦ୍ୱାରା ହେଉଥିବା ଅତ୍ୟାଚାରର ଅନେକ ଘଟଣା ନଜରକୁ ଆସିଛି। ଯେଉଁମାନେ ହିଂସାକାଣ୍ଡରେ ଲିପ୍ତ ଅଛନ୍ତି ସେମାନଙ୍କୁ ଧରି ଦଣ୍ଡ ଦେବାକୁ ସମସ୍ତେ ସ୍ୱାଗତ କରିବେ; କିନ୍ତୁ ଯଦି ନିରୀହ ଲୋକ ବିଶେଷକରି ମହିଳାମାନଙ୍କୁ ମାଓବାଦୀର ମୋହର ଲଗାଇ ନିର୍ଯ୍ୟାତିତ କରାଯିବ ତାହା ଦେଶର ଗଣତନ୍ତ୍ର ପାଇଁ ବିପଦଜନକ ପରିସ୍ଥିତି ସୃଷ୍ଟି କରିବ। ଆମେ ଏକ ଜନମଙ୍ଗଳକାରୀ ରାଷ୍ଟ୍ରର ଅଧିବାସୀ, କିନ୍ତୁ ଏହା କ୍ରମେ ପୋଲିସ୍ ରାଷ୍ଟ୍ର ଆଡକୁ ମୁହାଁଉଛି ବୋଲି ବୁଦ୍ଧିଜୀବୀମାନେ ଚର୍ଚ୍ଚା କରୁଛନ୍ତି। ଓଡିଶାରେ ସୁରକ୍ଷା ବାହିନୀ ଯବାନମାନଙ୍କ ଦ୍ୱାରା ନିର୍ଦ୍ଦୋଷ ମହିଳାମାନେ କିଭଳି ନିର୍ଯ୍ୟାତିତ ହେଉଛନ୍ତି ତାହା ନିମ୍ନରେ ପ୍ରଦତ୍ତ କେତୋଟି ଘଟଣାରୁ ସ୍ପଷ୍ଟ ହୋଇଯିବ।

ଓଡିଶା ହାଇକୋର୍ଟର ଓକିଲ ପ୍ରତିମା ଦାସଙ୍କର ଅଗଷ୍ଟ ୧୦, ୨୦୦୮ ମସିହାରେ ଜଣେ ବିଦେଶୀ ସାମ୍ବାଦିକଙ୍କ ସହିତ ଭୁବନେଶ୍ୱରର ଲୋହିଆ ଏକାଡେମୀଠାରେ ସାକ୍ଷାତ ହୋଇଥିଲା। ତାଙ୍କ ଅନୁରୋଧ ରକ୍ଷାକରି ଅଗଷ୍ଟ ୧୨ ତାରିଖ ଦିନ ଉଭୟ ଯାଜପୁର ଜିଲ୍ଲାର କଳିଙ୍ଗ ନଗରକୁ ଟ୍ୟାକ୍‌ସି ଯୋଗେ ଯାଇଥିଲେ। ମାନବାଧିକାର ସଂପର୍କିତ ମକଦ୍ଦମା ପରିଚାଳନା କରି ଖ୍ୟାତି ଅର୍ଜନ କରିଥିବା ଓଡିଶା ହାଇକୋର୍ଟର ବରିଷ୍ଠ ଆଡଭୋକେଟ୍ ପ୍ରଶାନ୍ତ ଜେନାଙ୍କ ଜୁନିଅର ଭାବେ କାମ କରନ୍ତି ପ୍ରତିମା ଦାସ। ସେହିଦନ କଳିଙ୍ଗ ନଗରରୁ ଫେରିଲାବେଳେ ବଡଚଣା ଛକଠାରେ ୩୦ ଜଣ ସଶସ୍ତ୍ର ପୋଲିସ୍ ଟ୍ୟାକ୍‌ସିକୁ ଅଟକାଇ ତାଙ୍କୁ ବଡଚଣା ଆଇ.ବି.କୁ ନେଇଗଲେ। ତା'ପରଠାରୁ ପ୍ରତିମାଙ୍କୁ ବିଭିନ୍ନ ଥାନାରେ ଜେରା କରାଯାଇ ଧମକଚମକ ଦିଆଯାଇ ମାଓବାଦୀର ମୋହର ଲଗାଇ ଜେଲ୍‌ରେ ରଖାଗଲା। ଅଗଷ୍ଟ ୨୯, ୨୦୦୮ ରେ ତାଙ୍କୁ କୁଚିଣ୍ଡା ଥାନାକୁ ନିଆଯାଇ କ୍ଲୋଜ୍ ହୋଇଥିବା ଏକ କେସ୍‌ରେ ସେ ସଂପୃକ୍ତ ଥିବା ଦର୍ଶାଇ କୁଚିଣ୍ଡା ସବ୍-ଜେଲ୍‌ରେ ୧୦ ମାସ ରଖାଗଲା। ସେଠାରୁ ପୁଣି ଜୁଲାଇ ୧୭, ୨୦୦୯ ରେ ଜଗତସିଂହପୁର ଜେଲକୁ ଅଣାଗଲା। ୬ ମାସ ପରେ ପୁନଶ୍ଚ କୁଚିଣ୍ଡା ସବ୍-ଜେଲ୍‌କୁ ପଠାଗଲା। ଜଗତସିଂହପୁର ଓ କୁଚିଣ୍ଡାରେ ତାଙ୍କ ବିରୁଦ୍ଧରେ ପୋଲିସ୍ ଦାୟର କରିଥିବା କେସ୍‌ର ବିଚାର ହୋଇ ସେ ସଂପୂର୍ଣ୍ଣ ନିର୍ଦ୍ଦୋଷ ବୋଲି ପ୍ରମାଣିତ ହେଲେ। ଦୁଇ ବର୍ଷ ତିନି ମାସ କାଳ ଶାରୀରିକ ଓ ମାନସିକ ଯନ୍ତ୍ରଣା ଭୋଗି ଶେଷରେ ସେ ଖଲାସ ହେଲେ।

ଅନ୍ୟ ଏକ ଘଟଣାରେ ଫେବୃୟାରୀ ୧୨, ୨୦୧୦ରେ ଗଜପତି ଜିଲ୍ଲାର ଅଡବା ଥାନା ଢାଡିଙ୍ଗି ଗ୍ରାମର ଡାକ୍‌ସା ମାଝୀଙ୍କ ଝିଅ ଆରତୀ ମାଝୀଙ୍କୁ ସି.ଆର୍.ପି.ଏଫ୍. ଯବାନମାନେ ଘର ଭିତରୁ ଜବରଦସ୍ତ ଉଠାଇଆଣି ପୋଲିସ ଗାଡିରେ ବସାଇ ନେଇଗଲେ। ବାଟରେ ଜଂଗଲ ରାସ୍ତାରେ ଗାଡି ଅଟକାଇ ଆରତୀ ମୁହଁରେ କଳାକନା ଢାଙ୍କି ଜଣକ ପରେ ଜଣେ ପାଞ୍ଚ ଜଣ ଧର୍ଷଣ କଲେ। ଯନ୍ତ୍ରଣାରେ ଛଟପଟ ହୋଇ ଆରତୀ ଚିତ୍କାର କଲେ ମଧ୍ୟ କେହି ଶୁଣିଲେ ନାହିଁ। ଆରତୀକୁ କୋର୍ଟରେ ହାଜର କରାଗଲାଏବଂ ସେ ମାଜଷ୍ଟ୍ରେଟ୍‌ଙ୍କୁ ସବୁକଥା କହିଲା; କିନ୍ତୁ ତା' କଥା କେହି ଶୁଣିଲେ ନାହିଁ। ମାଓବାଦୀର ମୋହର ଦେଇ ତାକୁ ଜେଲ୍‌ରେ ରଖାଗଲା। ଆରତୀର ବାପା ଡାକ୍‌ସା ମାଝୀ କୋର୍ଟରେ ଉପସ୍ଥିତ ହୋଇ ନିଜ ଝିଅ ନିର୍ଦ୍ଦୋଷ ଓ ତାକୁ ଧର୍ଷଣ କରାଯାଇଛି ବୋଲି ମାଜିଷ୍ଟ୍ରେଟ୍‌ଙ୍କୁ କହିଲେ, କିନ୍ତୁ ଡାକ୍‌ସା ମାଝୀ ଓ ଆରତୀର

ଭାଇକୁ ପୋଲିସ୍ ଧମକଚମକ ଓ ମାଡଦେଇ ସେମାନଙ୍କଠାରୁ ସାଦା କାଗଜରେ ଦସ୍ତଖତ କରିନେଲେ। ପୋଲିସ ଦ୍ୱାରା ତାଙ୍କ ବିରୋଧରେ ରୁଜୁ ହୋଇଥିବା ସମସ୍ତ ମାମଲାରୁ ସେ ନିର୍ଦ୍ଦୋଷରେ ଖଲାସ ହୋଇସାରିଛନ୍ତି। ବିଳମ୍ବିତ ନ୍ୟାୟ, ଆଦୌ ନ୍ୟାୟ ନ ମିଳିବା ସହିତ ସମାନ ବୋଲି କୁହାଯାଇଥାଏ। ତେଣୁ ଆମର ବିଚାର ବ୍ୟବସ୍ଥା ତୁରନ୍ତ ବିଚାର କରି ନିର୍ଦ୍ଦୋଷମାନଙ୍କୁ ନ୍ୟାୟ ପ୍ରଦାନ କରିବା ଉଚିତ ହେବ।

ମାର୍ଚ୍ଚ ୮, ୨୦୧୧ରେ କେଉଁଝର ଜିଲ୍ଲାର ହରିଚନ୍ଦନପୁର ଥାନା ଅନ୍ତର୍ଗତ ଗରଡବାହାଳ ଗ୍ରାମର ଅଠର ବର୍ଷ ବୟସ୍କା ଯୁବତୀ ଝୁମୁରୀ ମୁଣ୍ଡାକୁ କେତେଜଣ ଗୁର୍ଖା ପୋଲିସ ସକାଳ ପ୍ରାୟ ୯ଟା ବେଳେ ତା' ଘର ଭିତରେ କେହି ନଥିବାବେଳେ ଜବରଦସ୍ତ କବାଟ ଭାଂଗି ଘରେ ପଶି ଧର୍ଷଣ କରିବାରେ ଅସଫଳ ହୋଇ ତା' ଉପରକୁ ଗୁଳି ଚଳାଇଥିଲେ। ସୌଭାଗ୍ୟବଶତଃ ଗୁଳି ଗୋଡରେ ବାଜିଲା। ରକ୍ତାକ୍ତ ଅବସ୍ଥାରେ ତାକୁ ମାଓବାଦୀର ଆଖ୍ୟା ଦେଇ ଗାଁରୁ ଟାଣିଟାଣି ନେଇଗଲେ ହରିଚନ୍ଦନପୁର ଥାନାକୁ। କ୍ଷତ ସ୍ଥାନରେ ବ୍ୟାଣ୍ଡେଜ ଭିଡି ଛାଡି ଦେଇଥିଲେ। କ୍ଷତ ସ୍ଥାନ ଶୁଖୁ ନଥିବାରୁ ଏବଂ ପୋଲିସ୍ ଦ୍ୱାରା ଅତ୍ୟାଚାରିତ ହୋଇଥିବାରୁ ମାନବାଧିକାର କର୍ମୀ ବିଶ୍ୱନାଥ ପାତ୍ରଙ୍କ ସାହାଯ୍ୟରେ ମାନବାଧିକାର କମିଶନଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ଭୁବନେଶ୍ୱର ଆସୁଥିଲାବେଳେ କ୍ୟାପିଟାଲ ଥାନା ପୋଲିସ୍ ଅଧିକାରୀଙ୍କ ଦ୍ୱାରା ନିର୍ଯ୍ୟାତିତ ହୋଇଥିବା ଖବର ଆଡଭୋକେଟ୍ ବିଶ୍ୱପ୍ରିୟ କାନୁନଗୋଙ୍କ ସହାୟତାରେ କୋର୍ଟରେ ଦାଖଲ କରିବାକୁ ସେ ସକ୍ଷମ ହୋଇଛନ୍ତି।

ଅଗଷ୍ଟ ୨୩, ୨୦୧୧ରେ କୋରାପୁଟ ଜିଲ୍ଲାର ନାରାୟଣପାଟଣା ଥାନା ଅନ୍ତର୍ଗତ ତଳଡେକାପାଡୁ ଗ୍ରାମର ଦୁଇଜଣ ଯୁବତୀ ଜମ୍ଭୁ ନାଚିକା ଓ ରାଇତା ମାଣ୍ଡାଙ୍ଗୀ ଅନ୍ୟ ମହିଳାମାନଙ୍କ ସାଙ୍ଗରେ ବିଲରେ ଧାନ ରୋଉଥିଲେ। ଅଚାନକ ସ୍ଥାନୀୟ ପୋଲିସ୍ ଓ କେତେଜଣ ବି.ଏସ୍.ଏଫ୍. ଯବାନ ସେଠାରେ ପହଞ୍ଚି ଏହି ଦୁଇଜଣ ନିରୀହ ଯୁବତୀଙ୍କୁ ଉଠାଇ ନେଇଥିଲେ। ବିନା ଦୋଷରେ ସେମାନଙ୍କୁ ସାତ ଦିନ କାଳ କୋରାପୁଟରେ ଅଟକ ରଖି ଅଗଷ୍ଟ ୩୦ ତାରିଖ ଦିନ ନୂଆ ପୋଷାକ ପିନ୍ଧାଇ ସୁନାବେଡା ଡି.ଆଇ.ଜି. ଓ କୋରାପୁଟ ଏସ୍.ପି. ଏହି ଦୁଇଜଣ ଦୁର୍ଦ୍ଦାନ୍ତ ମାଓବାଦୀ ଏବଂ ସେମାନଙ୍କୁ ମାଓ କ୍ୟାମ୍ପରେ ଯୌନ ନିର୍ଯ୍ୟାତନା ଦିଆଯାଉଥିବାରୁ ଡି.ଆଇ.ଜି.ଙ୍କ ନିକଟରେ ଆତ୍ମସମର୍ପଣ କରିଛନ୍ତି ବୋଲି ଏକ ସାମ୍ବାଦିକ ସମ୍ମିଳନୀରେ କହିଥିଲେ। କିନ୍ତୁ କୋରାପୁଟର ଓକିଲ ନିହାର ପଟ୍ଟନାୟକ ଓ କେତେକ ସାମ୍ବାଦିକ ଏହି ଯୁବତୀ

ଦୁଇଜଣ ଯେ ନିର୍ଦ୍ଦୋଷ ଏକଥା ଭଲଭାବରେ ଜାଣିଥିଲେ। ପୋଲିସ୍‌ର ଏହି ମିଥ୍ୟା ଆତ୍ମସମର୍ପଣ ନାଟକ କୋରାପୁଟବାସୀଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରିଛି। ଉଭୟ ଜମ୍ମୁ ଓ ରାଇତା ଏ ଯାଏ ଘରକୁ ଫେରି ନାହାନ୍ତି। ତାଙ୍କ ଘରଲୋକେ ବାରମ୍ବାର କୋରାପୁଟ ଏସ.ପି. ଓ ଜିଲାପାଳଙ୍କ ଅଫିସକୁ ଦଉଡ଼ି ଦଉଡ଼ି ନିରାଶ ହେବାପରେ ହାଇକୋର୍ଟର ଦ୍ୱାରସ୍ଥ ହୋଇଛନ୍ତି। ମାତ୍ର ହାଇକୋର୍ଟରେ ବିଚାର ହେବାକୁ ଉକ୍ତ ମାମଲା ଲିଷ୍ଟରେ ଉଠୁନାହିଁ। ଏହିଭଳି ଅନେକ ଦରିଦ୍ର ଶ୍ରେଣୀର ମହିଳା ମାଓବାଦୀ ରୂପେ ବର୍ଣ୍ଣିତ ହୋଇ ସୁରକ୍ଷା କର୍ମୀମାନଙ୍କ ଦ୍ୱାରା ଶାରୀରିକ, ପାଶବିକ ଓ ମାନସିକ ଅତ୍ୟାଚାରର ଶିକାର ହେଉଛନ୍ତି। କିନ୍ତୁ ଏହି ଘଟଣାକୁ ସାଧାରଣ ଲୋକେ ଜାଣିପାରୁ ନାହାନ୍ତି।

ପୋଲିସ୍‌ର ପ୍ରତିହିଂସାମୂଳକ କାର୍ଯ୍ୟର ଏକ ସଦ୍ୟତମ ଦୃଷ୍ଟାନ୍ତ ହେଉଛନ୍ତି ଶୁଭଶ୍ରୀ ପଣ୍ଡା (ମିଲି ପଣ୍ଡା)। ଓଡିଶା ହାଇକୋର୍ଟର ମାନ୍ୟବର ବିଚାରପତି ଜଷ୍ଟିସ୍ ଇନ୍ଦ୍ରଜିତ୍ ମହାନ୍ତି ଅକ୍ଟୋବର ୧୯ ତାରିଖ ଦିନ ଶୁଭଶ୍ରୀ ପଣ୍ଡାଙ୍କ ବିରୁଦ୍ଧରେ ଚାଲୁଥିବା ସମସ୍ତ ମୋକଦ୍ଦମା ଖାରଜ କରିଦେବା ପରେ ମଧ୍ୟ ତାଙ୍କୁ ଜେଲ୍‌ରୁ ଖଲାସ ନକରି ପୋଲିସ୍ ଆକ୍ରୋଶମୂଳକ ଭାବେ ଗୁଣୁପୁରରେ ୨୦୦୩ ମସିହାରେ ଘଟିଥିବା ଏକ ପୁରୁଣା କେସ୍ ରି-ଓପନ୍ କରି ତାଙ୍କୁ ଭୁବନେଶ୍ୱରରୁ ଗୁଣୁପୁର ନେଇ ସେଠାରେ ଜେଲ୍‌ରେ ରଖିଛନ୍ତି। ପୋଲିସ୍ କହିଛି ଯେ ଜାନୁୟାରୀ ୧୫, ୨୦୦୩ରେ ଗୁଡାରୀ ଥାନା ଅନ୍ତର୍ଗତ କୁଟିଙ୍ଗଗୁଡାଠାରେ ପୋଲିସ୍ ଓ ମାଓବାଦୀଙ୍କ ମଧ୍ୟରେ ଗୁଳିବିନିମୟ ହୋଇଥିଲା ଏବଂ ଏହି ଘଟଣାରେ ଶୁଭଶ୍ରୀ ପଣ୍ଡା ସଂପୃକ୍ତ ଥିଲେ, କିନ୍ତୁ ଫେରାର ଥିବା କାରଣରୁ ଶୁଭଶ୍ରୀଙ୍କୁ ଗିରଫ କରାଯାଇ ପାରିନଥିଲା। ପୋଲିସ୍ ରେକର୍ଡରେ ଫେରାର ଥିବା ସୀମା ନାମଧେୟ ବ୍ୟକ୍ତି ପୁରୁଷ କି ମହିଳା ଲେଖା ନାହିଁ; ପିତା, ମାତା କିମ୍ବା ସ୍ୱାମୀଙ୍କ ନାଁ ବା ଠିକଣା ଜଣା ନାହିଁ। ସେହି ଫେରାର 'ସୀମା' ଶୁଭଶ୍ରୀ ବୋଲି ପୋଲିସ୍ କହୁଛି। ଶୁଭଶ୍ରୀ ଏହି ଘଟଣାକୁ ସଂପୂର୍ଣ୍ଣ ଅସ୍ୱୀକାର କରିବା ସଂଗେ ସଂଗେ ପୋଲିସ୍ ଅଯଥାରେ ତାଙ୍କୁ ମିଥ୍ୟା ମୋକଦ୍ଦମାରେ ଛନ୍ଦି ଦେଇଛନ୍ତି ବୋଲି କହିଛନ୍ତି। ଶୁଭଶ୍ରୀଙ୍କ ଓକିଲ ବ୍ରହ୍ମାନନ୍ଦ ପଟ୍ଟନାୟକ କହିଛନ୍ତି ଯେ କ୍ଲୋଜ୍ କେସ୍‌ରେ ଶୁଭଶ୍ରୀଙ୍କୁ ଜଡିତ କରିବା ପୋଲିସ୍‌ର ଏକ ଚକ୍ରାନ୍ତ। ସେହି କେସ୍‌ରେ ଆଗରୁ ଗିରଫ ହୋଇ ୧୬ ଜଣ ବ୍ୟକ୍ତି ବିଚାରର ସମ୍ମୁଖୀନ ହୋଇ ନିର୍ଦ୍ଦୋଷରେ ଖଲାସ ହୋଇସାରିଛନ୍ତି। ଶୁଭଶ୍ରୀ କିଭଳି ଜେଲ୍‌ରୁ ବାହାରି ନ ପାରିବେ ସେଥିପାଇଁ ପୋଲିସ୍ ସୁଚିନ୍ତିତ ଯୋଜନା ପ୍ରସ୍ତୁତ କରିଛି।

ଶୁଭଶ୍ରୀ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଇଂରାଜୀରେ ସ୍ନାତକୋତ୍ତର ଶିକ୍ଷା ସମାପ୍ତ କରି ବିବାହ କରିଥିଲେ ବର୍ତ୍ତମାନର ମାଓବାଦୀ ନେତା ସବ୍ୟସାଚୀ ପଣ୍ଡାଙ୍କୁ। ଶୁଭଶ୍ରୀଙ୍କ ଦ୍ୱାରା କିଛି ମାଓବାଦୀ ସଂପର୍କିତ ପୁସ୍ତକ ନୟାପଲ୍ଲୀ ଗ୍ରାମର ଜୟକୃଷ୍ଣ ଚମ୍ପତିଙ୍କ ପ୍ରେସ୍‌ରେ ଛପାଯାଇଥିଲା ବୋଲି କିଶୋର ଜେନାଙ୍କ ବୟାନକୁ ଭିତ୍ତିକରି ଜାନୁୟାରୀ ୧୪, ୨୦୧୦ ରାତି ୧୦.୩୦ ମିନିଟ୍‌ରେ ଶୁଭଶ୍ରୀଙ୍କୁ ଭୁବନେଶ୍ୱର ନିକଟସ୍ଥ ହଂସପାଳ ଗ୍ରାମର ଭଡାଘରୁ ପୋଲିସ୍ ଗିରଫ କରି ନେଇଯାଇଥିଲେ। ପୋଲିସ୍ ପ୍ରଥମେ ତାଙ୍କୁ ବାଣପୁର କୋର୍ଟରେ ହାଜର କରାଇଥିଲା ଏବଂ ସେଠାରୁ ତାଙ୍କୁ ରିମାଣ୍ଡରେ ଆଣି ୭ ଦିନ କାଳ ଏସ.ଓ.ଜି. କ୍ୟାମ୍ପ୍‌ରେ ରଖି ଜେରା କରିଥିଲା। ମାତ୍ର କୋର୍ଟରୁ ସମସ୍ତ କେସ୍‌ରେ ସେ ନିର୍ଦ୍ଦୋଷରେ ଖଲାସ ହେବାପରେ ପୁନଶ୍ଚ ତାଙ୍କୁ ନୟାଗଡ଼ ଆଶ୍ରମରେ ମାମଲାରେ ଛନ୍ଦିବାକୁ ପୋଲିସର ଉଦ୍ୟମ ଜାରି ରହିଛି। ତଥାପି ସ୍ୱାମୀ ସବ୍ୟସାଚୀ ପଣ୍ଡା ଜଙ୍ଗଲ ଛାଡ଼ି ଖୋଲା ରାଜନୀତି କରିବାକୁ ରାଜ୍ୟର ଗାନ୍ଧିବାଦୀ ସମାଜସେବୀମାନଙ୍କ ଉଦ୍ୟମରେ ସବୁମତେ ସାହାଯ୍ୟ ସହଯୋଗ କରୁଥିଲେ ଏବଂ ଏହି ଉଦ୍ୟମ ଚାଲୁ ରହିଥିବା ବେଳେ ହଠାତ୍ ଗଜପତି ଜିଲ୍ଲା ମୋହନାର ଭଲିଆଗୁଡ଼ାରେ ପୋଲିସ୍ ଗୁଳିରେ ୫ ଜଣ ନିରୀହ ଲୋକ ମୃତ୍ୟୁବରଣ କରିଥିଲେ ଏବଂ ପୋଲିସ ଏହାକୁ ଏକ ଏନ୍‌କାଉଣ୍ଟର ଦର୍ଶାଇ ସବ୍ୟସାଚୀ ପଣ୍ଡା ମଧ୍ୟ ଏହି ଏନ୍‌କାଉଣ୍ଟରରେ ଗୁରୁତର ଆହତ ହୋଇଛନ୍ତି ଏବଂ ପୋଲିସ ତାଙ୍କୁ ଘେର ଭିତରେ ରଖିଛି। ଏଥରକ ସେ ଆଉ ଖସି ଯାଇପାରିବେନି ବୋଲି ଦୀର୍ଘଦିନ ଧରି ପ୍ରଚାର ଚଳାଇଥିଲା।

ଅବଶ୍ୟ ସେହି ଘଟଣାର ପ୍ରାୟ ୩ ବର୍ଷ ପରେ ସବ୍ୟସାଚୀ ଚିକିତ୍ସିତ ହେବାକୁ ଆସି ବ୍ରହ୍ମପୁରରେ ଏକ ଭଡ଼ାଘରେ ଥିବାବେଳେ ଗିରଫ ହୋଇଛନ୍ତି। ତାଙ୍କ ବିରୋଧରେ ରୁଜୁ ହୋଇଥିବା ଶତାଧିକ ମାମଲା ଏବେ ରାଜ୍ୟର ବିଭିନ୍ନ କୋର୍ଟରେ ବିଚାରାଧୀନ ରହିଛି। ସ୍ୱାମୀଙ୍କୁ ଦୋଷମୁକ୍ତ କରିବାକୁ ଏବଂ ଖୋଲା ମଇଦାନରେ ରାଜନୀତି କରିବାପାଇଁ କ୍ଷେତ୍ର ପ୍ରସ୍ତୁତିରେ ଲାଗିଛନ୍ତି ମିଳି।

*ସମ୍ବାଦ, ୨୫.୧୧.୨୦୧୧*

# ଅସହିଷ୍ଣୁତା ହିଁ ଓଡିଶାର ବିକାଶରେ ବାଧକ

ଚଳିତ ମାସ ୧୫ ରୁ ୧୭ ତାରିଖ ପର୍ଯ୍ୟନ୍ତ ଟ୍ରାନ୍ସପାରେନ୍ସି ଇଣ୍ଟରନେସନାଲ ଇଣ୍ଡିଆର ବୋର୍ଡ ଅଫ୍ ମ୍ୟାନେଜମେଣ୍ଟ ମିଟିଙ୍ଗରେ ଯୋଗ ଦେବାପାଇଁ ମୁଁ ଦିଲ୍ଲୀ ଯାଇଥିଲି। ୧୬ ତାରିଖ ଦିନ ଦିଲ୍ଲୀ ବିଶ୍ୱବିଦ୍ୟାଳୟରୁ ଅବସର ଗ୍ରହଣ କରିଥିବା ଦୁଇଜଣ ପ୍ରଫେସର ମୋତେ ସାକ୍ଷାତ କରିବାକୁ ଓଡିଶା ନିବାସକୁ ଆସିଥିଲେ। କଥା ପ୍ରସଙ୍ଗରେ ସେମାନେ କହିଲେ ଯେ ୨୦୧୨ ଜାନୁଆରୀ ୩ ରୁ ୭ ତାରିଖ ପର୍ଯ୍ୟନ୍ତ କିଟ୍ ବିଶ୍ୱବିଦ୍ୟାଳୟରେ ଅନୁଷ୍ଠିତ ହେଉଥିବା ୯୯ତମ ଭାରତୀୟ ବିଜ୍ଞାନ କଂଗ୍ରେସରେ ଯୋଗଦେବାକୁ ସେମାନେ ସସ୍ତ୍ରୀକ ଭୁବନେଶ୍ୱର ଆସୁଛନ୍ତି। କଥାବାର୍ତ୍ତା ସମୟରେ ସେମାନେ ଅଚିହ୍ନା ବ୍ୟକ୍ତିଙ୍କଠାରୁ ଏହି ବିଜ୍ଞାନ କଂଗ୍ରେସର ଆୟୋଜକ କିଟ୍ ବିଶ୍ୱବିଦ୍ୟାଳୟ ସମ୍ବନ୍ଧରେ ଏସ୍.ଏମ୍.ଏସ୍. ଜରିଆରେ ନକାରାତ୍ମକ ମତାମତ ପାଇଥିବା ମୋତେ କହିଲେ। ମୁଁ ଏହି ଏସ୍.ଏମ୍.ଏସ୍.କୁ ଆଦୌ ଗୁରୁତ୍ୱ ନ ଦେବାକୁ ସେମାନଙ୍କୁ ଅନୁରୋଧ କଲି। କିନ୍ତୁ ମନ ମୋର ବିଷାଦରେ ଭରିଗଲା। କାହିଁକି ଆମ ଓଡିଶାର କିଛି ଲୋକ ଓଡ଼ିଶାରେ ଭଲ କାର୍ଯ୍ୟଟିଏ ହେଉଥିଲାବେଳେ ତାର ବିରୁଦ୍ଧାଚରଣ କରନ୍ତି ଏବଂ ରାଜ୍ୟର ମର୍ଯ୍ୟାଦା ହାନୀ କରନ୍ତି ତାହା ମୁଁ ଭାବିପାରୁ ନଥିଲି। ୧୮ ତାରିଖ ଦିନ ଭୁବନେଶ୍ୱରକୁ ପ୍ରତ୍ୟାବର୍ତ୍ତନ କଲାପରେ ଲକ୍ଷ୍ୟକରୁଛି କିଛି ଗଣମାଧ୍ୟମ କିଟ୍ ବିଶ୍ୱବିଦ୍ୟାଳୟ ବିରୁଦ୍ଧରେ ବିଷୋଦ୍‌ଗାର କରୁଛନ୍ତି। ୨୧ ଡିସେମ୍ବର ଦିନ ବିଧାନସଭାରେ ମଧ୍ୟ ଭାରତୀୟ ବିଜ୍ଞାନ କଂଗ୍ରେସ କାର୍ଯ୍ୟକ୍ରମ ପାଇଁ ପ୍ରସ୍ତୁତ ହେଉଥିବା ମଂଚ ଏକ ନିଷିଦ୍ଧାଂଚଳ ମଧ୍ୟରେ ହୋଇଥିବାରୁ ତାହା ପରିବର୍ତ୍ତନ କରିବାକୁ ଆଲୋଚନା ହୋଇଥିବା ସମ୍ବାଦ ପତ୍ରରେ ମଧ୍ୟ ପଢ଼ିଲି।

ଭାରତୀୟ ବିଜ୍ଞାନ କଂଗ୍ରେସକୁ ନିଜ ନିଜ ବିଶ୍ୱବିଦ୍ୟାଳୟରେ ଅନୁଷ୍ଠିତ କରାଇବାକୁ ପ୍ରତିବର୍ଷ ବିଶ୍ୱବିଦ୍ୟାଳୟମାନଙ୍କ ମଧ୍ୟରେ ତୀବ୍ର ପ୍ରତିଯୋଗିତା ହୋଇଥାଏ। ଏହାକୁ ବିଶ୍ୱର ବିଭିନ୍ନ ଦେଶ ନିଜ ଦେଶରେ ଅଲମ୍ପିକ କ୍ରୀଡା ଆୟୋଜନ କରାଇବାକୁ ଯେଉଁଭଳି ପ୍ରତିଯୋଗିତା କରିଥାନ୍ତି ତାହା ସହିତ ତୁଳନା କରାଯାଇପାରେ। ଭାରତର ବିଭିନ୍ନ ରାଜ୍ୟର ବହୁ ପୁରାତନ ବିଶ୍ୱବିଦ୍ୟାଳୟମାନେ ତାଙ୍କ ରାଜ୍ୟରେ ୯୯ ତମ

ଭାରତୀୟ ବିଜ୍ଞାନ କଂଗ୍ରେସ ଆୟୋଜନ କରିବା ପାଇଁ ଦୃଢ଼ ଦାବି କରୁଥିଲେ। କିନ୍ତୁ ଗର୍ବର କଥା କିଟ୍ ବିଶ୍ୱବିଦ୍ୟାଳୟ ବିଗତ ୧୪ ବର୍ଷ ମଧ୍ୟରେ ନିଜର ସୁପରିଚାଳନା ଓ ସୁଖ୍ୟାତିକୁ ପୁଂଜିକରି ଓଡିଶାରେ ୯୯ତମ ଭାରତୀୟ ବିଜ୍ଞାନ କଂଗ୍ରେସର ଅଧିବେଶନ କରାଇବାକୁ ସକ୍ଷମ ହୋଇପାରିଥିଲା। କିଟ୍‌ର ପ୍ରତିଷ୍ଠାତା ଡକ୍ଟର ଅଚ୍ୟୁତ ସାମନ୍ତଙ୍କ ଉଦ୍ୟମ ଯୋଗୁଁ ଏହା ସମ୍ଭବ ହୋଇଥିଲା। ଏଥିପାଇଁ ତାଙ୍କର ଯେତେ ପ୍ରଶଂସା କଲେ ମଧ୍ୟ ତାହା କମ୍ ହେବ।

କିଟ୍ ବିଶ୍ୱବିଦ୍ୟାଳୟ ଶିକ୍ଷା କ୍ଷେତ୍ରରେ ସ୍ୱଳ୍ପ ସମୟ ମଧ୍ୟରେ ବୈଷୟିକ ଶିକ୍ଷା ପ୍ରଦାନରେ ଭାରତରେ ଏକ ଶ୍ରେଷ୍ଠ ଅନୁଷ୍ଠାନ ଭାବେ ନିଜକୁ ପ୍ରତିପାଦିତ କରିପାରିଛି। ଏହା ୧୦ଟି ବିଶିଷ୍ଟ ଆନ୍ତର୍ଜାତୀୟ ସଂସ୍ଥାର ସଦସ୍ୟତା ଲାଭ କରି ଏକ କୀର୍ତ୍ତିମାନ ସ୍ଥାପନ କରିଛି। ଏହି ବିଶ୍ୱବିଦ୍ୟାଳୟରେ ୧୫ଟି ବିଭିନ୍ନ ବୈଷୟିକ ଶିକ୍ଷା ବିଭାଗରେ ସ୍ନାତକ ଓ ସ୍ନାତକୋତ୍ତର ପାଠ୍ୟକ୍ରମ ଉପଲବ୍ଧ ହେଉଛି।

୧୯୧୪ ମସିହାରେ କୋଲକତା ବିଶ୍ୱବିଦ୍ୟାଳୟରେ ପ୍ରଥମ ଭାରତୀୟ ବିଜ୍ଞାନ କଂଗ୍ରେସ ଅନୁଷ୍ଠିତ ହୋଇଥିଲା ଏବଂ ପଶ୍ଚିମବଂଗରେ ଅଦ୍ୟାବଧି ୧୪ ଥର ଭାରତୀୟ ବିଜ୍ଞାନ କଂଗ୍ରେସ ଅଧିବେଶନ ଅନୁଷ୍ଠିତ ହୋଇଯାଇଛି। ଆମ ଓଡିଶାରେ ପ୍ରଥମ ଥର ପାଇଁ୧୯୬୨ ମସିହାରେ କଟକଠାରେ ରେଭେନ୍ସା ମହାବିଦ୍ୟାଳୟ ପରିସରରେ ଭାରତୀୟ ବିଜ୍ଞାନ କଂଗ୍ରେସର ୪୯ ତମ ଅଧିବେଶନ ଏବଂ ଦ୍ୱିତୀୟ ଥର ପାଇଁ ୧୯୭୭ ମସିହାରେ ଭୁବନେଶ୍ୱରଠାରେ ଉତ୍କଳ ବିଶ୍ୱବିଦ୍ୟାଳୟ ପରିସରରେ ୬୪ ତମ ଭାରତୀୟ ବିଜ୍ଞାନ କଂଗ୍ରେସର ଅଧିବେଶନ ଅନୁଷ୍ଠିତ ହୋଇଥିଲା। ଦୀର୍ଘ ୩୫ ବର୍ଷର ବ୍ୟବଧାନ ପରେ ପୁଣି ଥରେ ଓଡିଶା ମାଟିରେ କିଟ୍ ବିଶ୍ୱବିଦ୍ୟାଳୟ ପରିସରରେ ଦେଶ ବିଦେଶର ପ୍ରଖ୍ୟାତ ବୈଜ୍ଞାନିକମାନଙ୍କର ସମାବେଶ ହେବ ଏହା ଦେଖିବାକୁ ସମସ୍ତେ ଉତ୍କଣ୍ଠାର ସହିତ ଅପେକ୍ଷା କରିଥିଲେ। ବର୍ତ୍ତମାନ ପର୍ଯ୍ୟନ୍ତ ଯାହା ଅନୁମାନ କରାଯାଉଛି ୨୦ ଜଣ ନୋବେଲ ପୁରସ୍କାର ବିଜେତା ଓ ୨୦ ହଜାରରୁ ଊର୍ଦ୍ଧ୍ୱ ବୈଜ୍ଞାନିକ, ଅଧ୍ୟାପକ, ଅଧ୍ୟାପିକା, ଶିକ୍ଷକ ଓ ଛାତ୍ରଛାତ୍ରୀ ଏହି ବିଜ୍ଞାନ କଂଗ୍ରେସରେ ଯୋଗ ଦେଇଥିଲେ। ଏହି ସଂଖ୍ୟାକୁ ବାଦ୍ ଦେଲେ କିଟ୍ ବିଶ୍ୱବିଦ୍ୟାଳୟର ୧୮ ହଜାର ଛାତ୍ରଛାତ୍ରୀ ଓ ବିଶ୍ୱରେ ସର୍ବବୃହତ୍ତ ଆଦିବାସୀ ଛାତ୍ରଛାତ୍ରୀଙ୍କର ଆବାସିକ ବିଦ୍ୟାଳୟ 'କିସ୍'ର ୧୫ ହଜାର ଛାତ୍ରଛାତ୍ରୀ, ଭୁବନେଶ୍ୱର ଓ ରାଜ୍ୟର ବିଭିନ୍ନ ଅଂଚଳରୁ ଅନ୍ୟୂନ ୩୦ ହଜାର ଶିକ୍ଷକ ଓ ଛାତ୍ରଛାତ୍ରୀ ଏହିଭଳି ପ୍ରାୟ ଲକ୍ଷାଧିକ

ଲୋକଙ୍କର ସମାବେଶ ହୋଇଥିଲା କିଟ୍ ବିଶ୍ୱବିଦ୍ୟାଳୟ ପରିସରରେ । ବିଶ୍ୱର ବିଭିନ୍ନ ଗଣମାଧମର ପ୍ରତିନିଧିମାନେ ମଧ୍ୟ ଏହି ବିଜ୍ଞାନ କଂଗ୍ରେସର ପ୍ରଚାର ଓ ପ୍ରସାର କରିବାକୁ ଭୁବନେଶ୍ୱରରେ ଏକତ୍ରିତ ହୋଇଥିଲେ । ଏହି ସମାବେଶକୁ ବୈଜ୍ଞାନିକମାନଙ୍କର କୁମ୍ଭମେଳା କହିଲେ ଅତ୍ୟୁକ୍ତି ହେବନାହିଁ ।

୯୯ତମ ଭାରତୀୟ ବିଜ୍ଞାନ କଂଗ୍ରେସର ଗୁରୁତ୍ୱ ବିଭିନ୍ନ ଦୃଷ୍ଟିକୋଣରୁ ବୃଦ୍ଧି ପାଇବାରେ ଲାଗିଛି । ପ୍ରଧାନମନ୍ତ୍ରୀ ଡକ୍ଟର ମନମୋହନ ସିଂହ ଏହି ଉତ୍ସବକୁ ଉଦ୍‌ଘାଟନ କରିଥିଲେ ଓ ଉଦ୍‌ଯାପନୀ ଉତ୍ସବରେ ମଧ୍ୟ ଯୋଗଦେଇଥିଲେ । କେନ୍ଦ୍ରର ବହୁ ମନ୍ତ୍ରୀ ଓ ବିଭିନ୍ନ ରାଜ୍ୟର ବହୁ ମନ୍ତ୍ରୀ ଓ ଗଣ୍ୟମାନ୍ୟ ବ୍ୟକ୍ତିମାନେ ଏହି ଅଧିବେଶନରେ ଯୋଗଦେବାକୁ ନିଜର ଇଚ୍ଛା ପ୍ରକାଶ କରିଛନ୍ତି । ପୂର୍ବତନ ରାଷ୍ଟ୍ରପତି ଏ. ପି. ଜେ. ଅବଦୁଲ୍ କଲାମ୍ 'ଶିଶୁ ବିଜ୍ଞାନ କଂଗ୍ରେସ'କୁ ଉଦ୍‌ଘାଟନ କରିଥିଲେ ଏବଂ ଉଦ୍‌ବୋଧନ ଦେଇଥିଲେ । ଶିଶୁ ବିଜ୍ଞାନ କଂଗ୍ରେସରେ ୯ ରୁ ୧୮ ବର୍ଷ ବୟସ ପର୍ଯ୍ୟନ୍ତ ବାଳକ ବାଳିକାମାନେ ଅଂଶଗ୍ରହଣ କରିଥାନ୍ତି । ସେମାନେ ନିଜର ସୃଜନୀ ଶକ୍ତିର ପରିସ୍ଫୁଟନ ପାଇଁ ଏହି ବିଜ୍ଞାନ କଂଗ୍ରସରେ ବହୁ ସୁଯୋଗ ଓ ପ୍ରଶସ୍ତ କ୍ଷେତ୍ର ପାଇଥିଲେ । ମହିଳାଙ୍କ ଉପରେ ଆଧାରିତ 'ମହିଳା ବିଜ୍ଞାନ କଂଗ୍ରେସ' ପ୍ରଥମଥର ପାଇଁ ଭାରତୀୟ ବିଜ୍ଞାନ କଂଗ୍ରେସର କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ ହୋଇଥିଲା । ବିଜ୍ଞାନ ଓ ପ୍ରଯୁକ୍ତି କ୍ଷେତ୍ରରେ ମହିଳାଙ୍କ ଯୋଗଦାନର ଗୁରୁତ୍ୱକୁ ସର୍ବସାଧାରଣରେ ପ୍ରକାଶ କରିବା ପାଇଁ ବହୁ ଖ୍ୟାତିସଂପନ୍ନ ମହିଳା ଏହି ମହିଳା ବିଜ୍ଞାନ କଂଗ୍ରେସରେ ଯୋଗଦେଇ ନିଜର ବକ୍ତବ୍ୟ ରଖିଥିଲେ । ୯୯ତମ ଭାରତୀୟ ବିଜ୍ଞାନ କଂଗ୍ରେସର ବିଷୟବସ୍ତୁ ରହିଛି 'ସାଇନ୍‌ସ ଆଣ୍ଡ ଟେକ୍ନୋଲୋଜି ଫର୍ ଇନ୍‌କ୍ଲୁସିଭ୍ ଇନୋଭେସନ୍-ରୋଲ୍ ଅଫ୍ ୱିମେନ୍' (ବିସ୍ତୃତ ଉଦ୍‌ଭାବନ ପାଇଁ ବିଜ୍ଞାନ ଓ ପ୍ରଯୁକ୍ତି କ୍ଷେତ୍ରରେ ମହିଳାଙ୍କ ଭୂମିକା) ।

'କଳିଙ୍ଗ ଆନ୍ତର୍ଜାତୀୟ ବିଜ୍ଞାନ ପୁରସ୍କାର' ପ୍ରଦାନର 'ଏହା ୬୦ତମ ବର୍ଷ ହୋଇଥିବାରୁ ପୂର୍ବରୁ ଏହି ପୁରସ୍କାର ପାଇଥିବା ସବୁ ବୈଜ୍ଞାନିକମାନଙ୍କୁ ଏହି ବିଜ୍ଞାନ କଂଗ୍ରେସରେ ଯୋଗଦେବାକୁ ଆମନ୍ତ୍ରଣ କରାଯାଇଥିଲା । ବିଜୁ ପଟ୍ଟନାୟକଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିବା କଳିଙ୍ଗ ପୁରସ୍କାର ନୋବେଲ ପୁରସ୍କାର ସହିତ ତୁଳନୀୟ । ଏହି ପୁରସ୍କାର ଦ୍ୱାରା ସମ୍ମାନିତ ବୈଜ୍ଞାନିକମାନଙ୍କର ଏକକାଳୀନ ୯୯ତମ ଭାରତୀୟ ବିଜ୍ଞାନ କଂଗ୍ରେସରେ ଯୋଗଦାନ ଏକ ଯୁଗାନ୍ତକାରୀ ଘଟଣା ।

ବିଜ୍ଞାନ କଂଗ୍ରେସର ଅଧିବେଶନ ସନ୍ନିକଟରେ କିଟ୍ ବିଶ୍ୱବିଦ୍ୟାଳୟ ତରଫରୁ ଏକ ଅଭିନବ ପରିକଳ୍ପନା 'ଓଡିଶା ମଣ୍ଡପ' ପ୍ରସ୍ତୁତ କରାଯାଇଥିଲା । ଏଥିରେ ଓଡିଶାର ଇତିହାସ, ଭୂଗୋଳ, ପରମ୍ପରା, ସଂସ୍କୃତି, ପ୍ରାକୃତିକ ସଂପଦ, ବୈଜ୍ଞାନିକ ଐତିହ୍ୟ, ବାଣିଜ୍ୟ, ମହାନ ଜଗନ୍ନାଥ ସଂସ୍କୃତି, ପଟ୍ଟଚିତ୍ର, ଶିଳ୍ପକଳା ଓ ନୈପୁଣ୍ୟ, ପର୍ଯ୍ୟଟନସ୍ଥଳ, ଆଧାତ୍ମିକ ପରିବେଶ, ସୁଦୀର୍ଘ ସାମୁଦ୍ରିକ ବେଳାଭୂମି, ଆଦିବାସୀ ସଂସ୍କୃତି, ଚିଲିକା ତଥା ଗହୀରମଥାର ସୌନ୍ଦର୍ଯ୍ୟ, କାବ୍ୟକଳା, କାରୁକାର୍ଯ୍ୟ ସମେତ ଓଡିଶାର ଖାଦ୍ୟ, ପିଠାପଣା ଆଦି ମଧ୍ୟ ପ୍ରଦର୍ଶିତ ହୋଇଥିଲା । ସେହିପରି ଉତ୍କଳର ଅନ୍ୟତମ ବରପୁତ୍ର ଚନ୍ଦ୍ରଶେଖର ସିଂହ ସାମନ୍ତ ହରିଚନ୍ଦନ ମହାପାତ୍ର (ସାମନ୍ତ ଚନ୍ଦ୍ରଶେଖର)ଙ୍କ ନାମରେ ମଧ୍ୟ ଏକ ମଣ୍ଡପ ଏଠାରେ ନିର୍ମାଣ କରାଯାଇଥିଲା । ଏହା ଆଗନ୍ତୁକମାନଙ୍କୁ ଓଡିଶାର ଗୌରବାନ୍ୱିତ ଐତିହ୍ୟ ଓ ପରମ୍ପରା ସମ୍ପର୍କରେ ସଚେତନ କରାଇ ଦେଇଥିଲା ।

ଡକ୍ଟର ଅଚ୍ୟୁତ ସାମନ୍ତ ବିଗତ ବର୍ଷମାନଙ୍କରେ କିଟ୍ ବିଶ୍ୱବିଦ୍ୟାଳୟକୁ ପୃଥିବୀର ଗଣ୍ୟମାନ୍ୟ ବ୍ୟକ୍ତିମାନଙ୍କୁ ନିମନ୍ତ୍ରଣ କରିଆଣି ସଭା, ସମିତି ଓ ଆଲୋଚନାଚକ୍ରମାନ ଅନୁଷ୍ଠିତ କରାଇ କେବଳ ଯେ କିଟ୍‌ର ମର୍ଯ୍ୟାଦା ବୃଦ୍ଧି କରିଛନ୍ତି ତାହା ନୁହେଁ, ସାରା ରାଜ୍ୟର ମର୍ଯ୍ୟାଦାକୁ ମଧ୍ୟ ବୃଦ୍ଧି କରାଇବାରେ ସହାୟକ ହୋଇଛନ୍ତି । କୌଣସି ଅନୁଷ୍ଠାନ ବା ବ୍ୟକ୍ତିବିଶେଷ ସଂପୂର୍ଣ୍ଣ ଦୋଷତ୍ରୁଟିଶୂନ୍ୟ ହୋଇଥିବ ଏହା କହିବା ଠିକ୍ ହେବନାହିଁ । କିନ୍ତୁ ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ତ୍ରୁଟି ଖୋଜିବା ଓ ତିଳକୁ ତାଳ କରି ପ୍ରଚାର କରିବା ଅସୂୟା ମନୋଭାବର ପରିଚାୟକ ଅଟେ । ଯେଉଁ ଜାତି ଉପରକୁ ଉଠିଛି ସେମାନେ ନିଜ ଲୋକଙ୍କର ଭଲଗୁଣକୁ ଶତଜିହ୍ୱାରେ ପ୍ରଶଂସା କରନ୍ତି । କିନ୍ତୁ ଓଡ଼ିଶାର ଦୁର୍ଭାଗ୍ୟ, ଏଠାରେ ଭଲ କାମର ପ୍ରଶଂସା ଅପେକ୍ଷା ନିନ୍ଦା କରିବା ଲୋକଙ୍କ ସଂଖ୍ୟା ଊଣା ନୁହେଁ । ଏହାସତ୍ତ୍ୱେ ଡକ୍ଟର ସାମନ୍ତଙ୍କ ଅବିଚଳିତ ନିଷ୍ଠା ଯୋଗୁଁ ଓଡ଼ିଶାରେ ୯୯ତମ ବିଜ୍ଞାନ କଂଗ୍ରେସ ଅଧିବେଶନ ସଫଳତାର ସହ ଅନୁଷ୍ଠିତ ହୋଇଥିଲା ।

*ସୁବାର୍ତ୍ତା, ୨୫-୩୧ ଡିସେମ୍ବର, ୨୦୧୧*

# ୯୯ତମ ବିଜ୍ଞାନ କଂଗ୍ରେସ ଓଡିଶାର ସମ୍ମାନକୁ ଦ୍ୱିଗୁଣିତ କରିଛି

୨୩ ଡିସେମ୍ବର, ୨୦୧୧ରେ ଓଡିଶା ବିଧାନସଭା ଅଧିବେଶନର ଶୂନ୍ୟକାଳରେ ଏକ ଉଲ୍ଲେଖଯୋଗ୍ୟ ଘଟଣା ଘଟିଥିଲା । ଏନ୍.ସି.ପି. ବିଧାୟକ ଦଳର ନେତା ଅମର ପ୍ରସାଦ ଶତପଥୀ ବିଧାନସଭାରେ ପ୍ରକାଶ କରିଥିଲେ ଯେ କିଟ୍‌ରେ ଭାରତୀୟ ବିଜ୍ଞାନ କଂଗ୍ରେସ ଆୟୋଜିତ ହେଉଛି ଓ ଦେଶବିଦେଶରୁ ବହୁ ବିଶିଷ୍ଟ ବୈଜ୍ଞାନିକ ଆସୁଛନ୍ତି; ତେଣୁ ଓଡିଶା ବିଧାନସଭା ପକ୍ଷରୁ ଏହି ବିଜ୍ଞାନ କଂଗ୍ରେସର ସଫଳତା କାମନା କରି ଏକ ପ୍ରସ୍ତାବ ଗ୍ରହଣ କରିବାକୁ ମାନ୍ୟବର ବାଚସ୍ପତିଙ୍କୁ ସେ ଅନୁରୋଧ କରିଥିଲେ। ଅତ୍ୟନ୍ତ ଆନନ୍ଦର ବିଷୟ ଦଳମତ ନିର୍ବିଶେଷରେ ବହୁ ବିଧାୟକ ଟେବୁଲ ବାଡେଇ ଏହି ପ୍ରସ୍ତାବକୁ ସମର୍ଥନ କରିଥିଲେ । ଅନ୍ୟ ଏକ ଘଟଣାରେ କିଟ୍ ବିଶ୍ୱବିଦ୍ୟାଳୟରେ ଆୟୋଜିତ ହେଉଥିବା ୯୯ତମ ଭାରତୀୟ ବିଜ୍ଞାନ କଂଗ୍ରେସକୁ ବନ୍ଦ କରି ଏହାକୁ ସ୍ଥାନାନ୍ତର କରିବାପାଇଁ ମନୋଜ ଦାସ ଓଡିଶା ହାଇକୋର୍ଟରେ କରିଥିବା ଜନସ୍ୱାର୍ଥ ମାମଲାଟି ଖାରଜ ହୋଇଗଲା ଏବଂ ଖାରଜ କରିବା ଅବସରରେ ମାନ୍ୟବର ବିଚାରପତି ଯେଉଁ ମନ୍ତବ୍ୟ ପ୍ରଦାନ କରିଥିଲେ ତାହା ଉଲ୍ଲେଖଯୋଗ୍ୟ । ବିଚାରପତି ଶ୍ରୀ ବିମଳ ପ୍ରସାଦ ଓ ବିଚାରପତି ଶ୍ରୀ ବି. କେ. ନାୟକଙ୍କୁ ନେଇ ଗଠିତ ଖଣ୍ଡପୀଠ ଏହି ଆବେଦନକୁ ଖାରଜ କରିବା ସହ ଏହାକୁ ଭିତ୍ତିହୀନ, କପୋଳକଳ୍ପିତ ଓ ଉଦ୍ଦେଶ୍ୟମୂଳକ ବୋଲି ଦର୍ଶାଇ ଏଭଳି ମୂଲ୍ୟହୀନ ତଥା ଜନବିରୋଧୀ ମାମଲା ଉଚ୍ଚନ୍ୟାୟାଳୟକୁ ଆଣୁଥିବା ମହକିଲଙ୍କୁ ବାରଣ କରିବା ଲାଗି ଆବେଦନକାରୀ ପକ୍ଷର ଓକିଲ ଅଶୋକ ମହାପାତ୍ରଙ୍କୁ ନିର୍ଦ୍ଦେଶ ଦେଇଥିଲେ । ଏହା ଏକ ଉଦ୍ଦେଶ୍ୟମୂଳକ ମାମଲା ହୋଇଥିବାରୁ ସରକାରୀ ଓକିଲ ଜେ. ପି. ପଟ୍ଟନାୟକ ଏହା ବିରୋଧରେ ଉପଯୁକ୍ତ ଜୋରିମାନା ଲାଗୁ କରିବା ଲାଗି ଅଦାଲତଙ୍କୁ ନିବେଦନ କରିଥିଲେ । ପରେ ଆବେଦନକାରୀ ପକ୍ଷର ଓକିଲଙ୍କ ଅନୁରୋଧକ୍ରମେ ଅଦାଲତ ଜୋରିମାନା ରାଶି ଛାଡ କରିଦେଇଥିଲେ। ଦୀର୍ଘ ୩୪ ବର୍ଷ ପରେ ଓଡିଶାରେ ଦେଶର ସର୍ବବୃହତ୍

ବିଜ୍ଞାନମେଳା ଭାରତୀୟ ବିଜ୍ଞାନ କଂଗ୍ରେସ ଆୟୋଜନ ପାଇଁ ସୁଯୋଗ ମିଳିଥିଲାବେଳେ କେତେକ ସ୍ୱାର୍ଥାନ୍ୱେଷୀ ବ୍ୟକ୍ତି ଏହାକୁ ବିରୋଧ କରିବା ଦୁଃଖଦାୟକ ଘଟଣା ବୋଲି ଅଦାଲତ କ୍ଷୋଭ ପ୍ରକାଶ କରିଥିବା ଜଣାପଡିଛି।

୧୯୧୪ ମସିହାରେ କୋଲକତାଠାରେ ନ୍ୟାୟମୂର୍ତ୍ତି ସାର୍ ଆଶୁତୋଷ ମୁଖାର୍ଜୀଙ୍କ ସଭାପତିତ୍ୱରେ ପ୍ରଥମଥର ପାଇଁ ଭାରତୀୟ ବିଜ୍ଞାନ କଂଗ୍ରେସ ଅନୁଷ୍ଠିତ ହୋଇଥିଲା ଏବଂ ପଶ୍ଚିମବଂଗରେ ଅଦ୍ୟାବଧି ୧୪ ଥର ଭାରତୀୟ ବିଜ୍ଞାନ କଂଗ୍ରେସ ଅଧିବେଶନ ଅନୁଷ୍ଠିତ ହୋଇଯାଇଛି। ଆମ ଓଡିଶାରେ ପ୍ରଥମ ଥର ପାଇଁ୧୯୬୨ ମସିହାରେ କଟକଠାରେ ରେଭେନ୍ସା ମହାବିଦ୍ୟାଳୟ ପରିସରରେ ଭାରତୀୟ ବିଜ୍ଞାନ କଂଗ୍ରେସର ୪୯ତମ ଅଧିବେଶନ ଆୟୋଜିତ ହୋଇଥିଲା ଯେଉଁଥିରେ ସଭାପତିତ୍ୱ କରିଥିଲେ ପ୍ରଫେସର ଡକ୍ଟର ବି. ମୁଖାର୍ଜୀ। ଦ୍ୱିତୀୟ ଥର ପାଇଁ ୧୯୭୭ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟଦ୍ୱାରା ବାଣୀବିହାରଠାରେ ୬୪ ତମ ଭାରତୀୟ ବିଜ୍ଞାନ କଂଗ୍ରେସର ଅଧିବେଶନ ଅନୁଷ୍ଠିତ ହୋଇଥିଲା, ଯାହର ସଭାପତି ଥିଲେ ଡକ୍ଟର ଏଚ. ଏନ୍. ସେଠନା। ଏହି ୯୯ତମ ଭାରତୀୟ ବିଜ୍ଞାନ କଂଗ୍ରେସରେ ସଭାପତିତ୍ୱ କରିବେ ପ୍ରଫେସର ଗୀଥା ବାଲି। ଏଠାରେ ଉଲ୍ଲେଖ କରିବା ସମୀଚୀନ ହେବ ଯେ ୧୯୬୦ ମସିହାରେ ବମ୍ବେଠାରେ ଅନୁଷ୍ଠିତ ହୋଇଥିବା ଭାରତୀୟ ବିଜ୍ଞାନ କଂଗ୍ରେସରେ ଆମ ଓଡିଶାର ବିଶ୍ୱବିଖ୍ୟାତ ବୈଜ୍ଞାନିକ ପ୍ରଫେସର ପ୍ରାଣକୃଷ୍ଣ ପରିଜା ସଭାପତିତ୍ୱ କରିଥିଲେ। ପ୍ରଫେସର ପରିଜା ମଧ ଏକମାତ୍ର ବୈଜ୍ଞାନିକ ଯିଏ କି କ୍ରମାଗତ ଭାବରେ ୧୯୩୯ ମସିହାଠାରୁ ୧୯୪୪ ମସିହା ପର୍ଯ୍ୟନ୍ତ ୬ ବର୍ଷ ଭାରତୀୟ ବିଜ୍ଞାନ କଂଗ୍ରେସର ସାଧାରଣ ସଂପାଦକ ଭାବେ ଦ୍ୱିତୀୟ ମହାଯୁଦ୍ଧ ସମୟରେ ଅନୁଷ୍ଠିତ ହୋଇଥିବା ଭାରତୀୟ ବିଜ୍ଞାନ କଂଗ୍ରେସଗୁଡିକୁ ସୁଚାରୁରୂପେ ପରିଚାଳିତ କରାଇ ନିଜକୁ ଓ ନିଜ ରାଜ୍ୟକୁ ଦେଶବିଦେଶର ବୈଜ୍ଞାନିକମାନଙ୍କ ମଧରେ ପରିଚିତ କରାଇପାରିଥିଲେ। ଡକ୍ଟର ପରିଜାଙ୍କ ବ୍ୟତୀତ ଡକ୍ଟର ପର୍ଶୁରାମ ମିଶ୍ର, ଡକ୍ଟର ବଂଶୀଧର ସାମନ୍ତରାୟ, ଡକ୍ଟର ଦୟାନିଧି ପଟ୍ଟନାୟକ, ଡକ୍ଟର ମହେନ୍ଦ୍ର କୁମାର ରାଉତ, ଡକ୍ଟର ବ୍ରହ୍ମାନନ୍ଦ ମିଶ୍ର ପ୍ରଭୃତି ବୈଜ୍ଞାନିକମାନେ ମଧ ଭାରତରେ ସୁପରିଚିତ ଥିଲେ।

୯୯ତମ 'ଭାରତୀୟ ବିଜ୍ଞାନ କଂଗ୍ରେସ' କିଟ୍ ବିଶ୍ୱବିଦ୍ୟାଳୟ ଓ ନାଇଜରର ମିଳିତ ସହଯୋଗରେ ୩୪ ବର୍ଷ ବ୍ୟବଧାନରେ କିଟ୍ ବିଶ୍ୱବିଦ୍ୟାଳୟ ପ୍ରାଙ୍ଗଣରେ

ଅନୁଷ୍ଠିତ ହେଉଥିବାରୁ ଏହାକୁ ସବୁମହଲରେ ସ୍ୱାଗତ କରାଯାଉଅଛି। ୨୦୧୨ ମସିହା ଜାନୁୟାରୀ ପ୍ରଥମ ସପ୍ତାହରେ ଏହା ଅନୁଷ୍ଠିତ ହେଉଥିବାରୁ ଏହା ଓଡିଶାବାସୀଙ୍କ ପାଇଁ କିଟ୍‌ର ନବବର୍ଷର ଉପହାର ବୋଲି ମଧ୍ୟ ବିବେଚନା କରାଯାଉଅଛି। କିଟ୍ ବିଶ୍ୱବିଦ୍ୟାଳୟ ସ୍ୱଳ୍ପ ସମୟ ମଧ୍ୟରେ ବୈଷୟିକ ଶିକ୍ଷା ପ୍ରଦାନରେ ଭାରତରେ ଏକ ଶ୍ରେଷ୍ଠ ଅନୁଷ୍ଠାନ ଭାବେ ନିଜକୁ ପ୍ରତିପାଦିତ କରିପାରିଛି। ଏହା ୧୦ଟି ଆନ୍ତର୍ଜାତୀୟ ସଂସ୍ଥାର ସଦସ୍ୟତା ଲାଭ କରି ଏକ କୀର୍ତ୍ତିମାନ ସ୍ଥାପନ କରିଛି। ଏହି ବିଶ୍ୱବିଦ୍ୟାଳୟରେ ୧୫ଟି ବିଭିନ୍ନ ବୈଷୟିକ ଶିକ୍ଷା ବିଭାଗରେ ସ୍ନାତକ ଓ ସ୍ନାତକୋତ୍ତର ପାଠ୍ୟକ୍ରମ ଉପଲବ୍ଧ ହେଉଛି ଏବଂ ଏହି ଅନୁଷ୍ଠାନର ସ୍ନାତକମାନେ ଭାରତରେ ଓ ବିଦେଶରେ ନିଯୁକ୍ତି ଲାଭ କରୁଛନ୍ତି। କିଟ୍ ବିଶ୍ୱବିଦ୍ୟାଳୟ ବ୍ୟତୀତ ଓଡିଶାର ଅନ୍ୟାନ୍ୟ ବିଶ୍ୱବିଦ୍ୟାଳୟଗୁଡିକ କିଭଳି ଅଗ୍ରଗତି କରିଛନ୍ତି ତାହା ମଧ୍ୟ ବାହାରୁ ଆସୁଥିବା ଶିକ୍ଷାବିତ୍‌ମାନେ ଅବଗତ ହେବେ।

୯୯ତମ ଭାରତୀୟ ବିଜ୍ଞାନ କଂଗ୍ରେସର ଗୁରୁତ୍ୱ ବିଭିନ୍ନ ଦୃଷ୍ଟିକୋଣରୁ ବୃଦ୍ଧି ପାଇବାରେ ଲାଗିଛି। ପ୍ରଧାନମନ୍ତ୍ରୀ ଡକ୍ଟର ମନମୋହନ ସିଂହ ଏହି ଉତ୍ସବକୁ ଉଦ୍‌ଘାଟନ କରିବେ ଓ ଉଦ୍‌ଯାପନୀ ଉତ୍ସବରେ ମଧ୍ୟ ଯୋଗଦେବେ। କେନ୍ଦ୍ରର ବହୁ ମନ୍ତ୍ରୀ ଓ ବିଭିନ୍ନ ରାଜ୍ୟର ବହୁ ମନ୍ତ୍ରୀ ଓ ଗଣ୍ୟମାନ୍ୟ ବ୍ୟକ୍ତିମାନେ ଏହି ଅଧିବେଶନରେ ଯୋଗଦେବାକୁ ନିଜର ଇଚ୍ଛା ପ୍ରକାଶ କରିଛନ୍ତି। ପୂର୍ବତନ ରାଷ୍ଟ୍ରପତି ଏ. ପି. ଜେ. ଅବଦୁଲ୍ କଲାମ୍ 'ଶିଶୁ ବିଜ୍ଞାନ କଂଗ୍ରେସ'କୁ ଉଦ୍‌ଘାଟନ କରିବେ ଏବଂ ଉଦ୍‌ବୋଧନ ଦେବେ। ଶିଶୁ ବିଜ୍ଞାନ କଂଗ୍ରେସରେ ୯ରୁ ୧୮ ବର୍ଷ ବୟସ ପର୍ଯ୍ୟନ୍ତ ବାଳକ ବାଳିକାମାନେ ଅଂଶଗ୍ରହଣ କରିଥାନ୍ତି। ସେମାନେ ନିଜର ସୃଜନୀ ଶକ୍ତିର ପରିସ୍ଫୁଟନ ପାଇଁ ଏହି ବିଜ୍ଞାନ କଂଗ୍ରସରେ ବହୁ ସୁଯୋଗ ଓ ପ୍ରଶସ୍ତ କ୍ଷେତ୍ର ପାଇବେ। ମହିଳାଙ୍କ ଉପରେ ଆଧାରିତ 'ମହିଳା ବିଜ୍ଞାନ କଂଗ୍ରେସ' ପ୍ରଥମଥର ପାଇଁ ଭାରତୀୟ ବିଜ୍ଞାନ କଂଗ୍ରେସର କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ ହୋଇଛି। ଏହାକୁ ଆମେରିକାରେ ଭାରତର ଅବସ୍ଥାପିତ ରାଷ୍ଟ୍ରଦୂତ ଶ୍ରୀମତୀ ନିରୁପମା ରାଓ ଉଦ୍‌ଘାଟନ କରିବେ। ବିଜ୍ଞାନ ଓ ପ୍ରଯୁକ୍ତି କ୍ଷେତ୍ରରେ ମହିଳାଙ୍କ ଯୋଗଦାନର ଗୁରୁତ୍ୱକୁ ସର୍ବସାଧାରଣରେ ଆଦୃତ କରିବା ପାଇଁ ବହୁ ଖ୍ୟାତିସଂପନ୍ନ ମହିଳା ଏହି ମହିଳା ବିଜ୍ଞାନ କଂଗ୍ରେସରେ ଯୋଗଦେବେ ଏବଂ ନିଜର ବକ୍ତବ୍ୟ ରଖିବେ।

'କଳିଙ୍ଗ ଆନ୍ତର୍ଜାତୀୟ ବିଜ୍ଞାନ ପୁରସ୍କାର' ପ୍ରଦାନର ଏହା ୬୦ତମ ବର୍ଷ ହୋଇଥିବାରୁ ପୂର୍ବରୁ ଏହି ପୁରସ୍କାର ପାଇଥିବା ସବୁ ବୈଜ୍ଞାନିକମାନଙ୍କୁ ଏହି ବିଜ୍ଞାନ କଂଗ୍ରେସରେ ଯୋଗଦେବାକୁ ଆମନ୍ତ୍ରଣ କରାଯାଇଛି । ବିଜୁ ପଟ୍ଟନାୟକଙ୍କଦ୍ୱାରା ପ୍ରତିଷ୍ଠିତ ହୋଇଥିବା କଳିଙ୍ଗ ପୁରସ୍କାର ନୋବେଲ ପୁରସ୍କାର ସହିତ ତୁଳନୀୟ । ଏହି ପୁରସ୍କାର ଦ୍ୱାରା ସମ୍ମାନିତ ବୈଜ୍ଞାନିକମାନଙ୍କର ଏକକାଳୀନ ୯୯ତମ ଭାରତୀୟ ବିଜ୍ଞାନ କଂଗ୍ରେସରେ ଯୋଗଦାନ ଏକ ଯୁଗାନ୍ତକାରୀ ଘଟଣା ।

ବିଜ୍ଞାନ କଂଗ୍ରେସର ଅଧିବେଶନ ସନ୍ନିକଟରେ କିଟ୍ ବିଶ୍ୱବିଦ୍ୟାଳୟ ତରଫରୁ ଏକ ଅଭିନବ ପରିକଳ୍ପନା 'ଓଡିଶା ମଣ୍ଡପ' ପ୍ରସ୍ତୁତ କରାଯାଇଛି । ଏଥିରେ ଓଡିଶାର ଇତିହାସ, ଭୂଗୋଳ, ପରମ୍ପରା, ସଂସ୍କୃତି, ପ୍ରାକୃତିକ ସଂପଦ, ବୈଜ୍ଞାନିକ ଐତିହ୍ୟ, ବାଣିଜ୍ୟ, ମହାନ ଜଗନ୍ନାଥ ସଂସ୍କୃତି, ପଟ୍ଟଚିତ୍ର, ଶିଳ୍ପକଳା ଓ ନୈପୁଣ୍ୟ, ପର୍ଯ୍ୟଟନସ୍ଥଳ, ଆଧ୍ୟାତ୍ମିକ ପରିବେଶ, ସୁଦୀର୍ଘ ସାମୁଦ୍ରିକ ବେଳାଭୂମି, ଆଦିବାସୀ ସଂସ୍କୃତି, ଚିଲିକା ତଥା ଗହୀରମଥାର ସୌନ୍ଦର୍ଯ୍ୟ, କାବ୍ୟକଳା, କାରୁକାର୍ଯ୍ୟ ସମେତ ଓଡିଶାର ଖାଦ୍ୟ, ପିଠାପଣା ଆଦି ମଧ୍ୟ ପ୍ରଦର୍ଶିତ ହେବ । ସେହିପରି ଉତ୍କଳର ଅନ୍ୟତମ ବରପୁତ୍ର ଚନ୍ଦ୍ରଶେଖର ସିଂହ ସାମନ୍ତ ହରିଚନ୍ଦନ ମହାପାତ୍ର (ସାମନ୍ତ ଚନ୍ଦ୍ରଶେଖର)ଙ୍କ ନାମରେ ମଧ୍ୟ ଏକ ମଣ୍ଡପ ଏଠାରେ ନିର୍ମାଣ କରାଯିବ । ଏହା ଆଗନ୍ତୁକମାନଙ୍କୁ ଓଡିଶାର ଗୌରବାନ୍ୱିତ ଐତିହ୍ୟ ଓ ପରମ୍ପରା ସମ୍ପର୍କରେ ସଚେତନ କରାଇବ ।

ଡକ୍ଟର ଅଚ୍ୟୁତ ସାମନ୍ତ ବିଗତ ବର୍ଷମାନଙ୍କରେ କିଟ୍ ବିଶ୍ୱବିଦ୍ୟାଳୟକୁ ପୃଥିବୀର ଗଣ୍ୟମାନ୍ୟ ବ୍ୟକ୍ତିମାନଙ୍କୁ ନିମନ୍ତ୍ରଣ କରିଆଣି ସଭା, ସମିତି ଓ ଆଲୋଚନାଚକ୍ରମାନ ଅନୁଷ୍ଠିତ କରାଇ କେବଳ ଯେ କିଟ୍ ଓ କିସ୍‌ର ମର୍ଯ୍ୟାଦା ବୃଦ୍ଧି କରିଛନ୍ତି ତାହା ନୁହେଁ, ସାରା ରାଜ୍ୟର ମର୍ଯ୍ୟାଦାକୁ ମଧ୍ୟ ବୃଦ୍ଧି କରାଇବାରେ ସହାୟକ ହୋଇଛନ୍ତି । କିଟ୍ ଓ କିସ୍‌ରେ ତାଙ୍କର ଅସାମାନ୍ୟ କାର୍ଯ୍ୟ ଯୋଗୁଁ ସେ ୪ଟି ଆନ୍ତର୍ଜାତୀୟ ଓ ୧୨ଟି ଜାତୀୟ ସ୍ତରର ଅନୁଷ୍ଠାନମାନଙ୍କର ସଭ୍ୟ ରୂପେ ମନୋନୀତ ହୋଇ ଦକ୍ଷତାର ସହିତ କାର୍ଯ୍ୟ କରି ଭାରତରେ ଜଣେ ଅଦ୍ୱିତୀୟ ସମାଜସେବୀ ଓ ସଂଗଠକ ଭାବେ ନିଜର ସ୍ୱତନ୍ତ୍ର ସ୍ଥାନ ସୃଷ୍ଟି କରିପାରିଛନ୍ତି । କିଟ୍ ସମ୍ବନ୍ଧରେ ଆଲୋଚନା କଲାବେଳେ 'କିସ୍'କୁ ଆଲୋଚନା ପରିସରକୁ ନ ଆଣି ରହିହେବ ନାହିଁ । ଏହି ଅନୁଷ୍ଠାନରେ ବର୍ତ୍ତମାନ ୧୫,୦୮୩ ଜଣ ଆଦିବାସୀ ଛାତ୍ରଛାତ୍ରୀ ଶିକ୍ଷାଲାଭ କରୁଛନ୍ତି । ଜାତୀୟ ପିତା ମହାତ୍ମାଗାନ୍ଧିଙ୍କ ସ୍ୱପ୍ନ ଏହିଠାରେ ରୂପାୟିତ ହେଉଛି । ୮ ସେପ୍‌ଟେମ୍ବର ୨୦୦୯ରେ

ମହାଶ୍ୱେତା ଦେବୀ ଏହି ଅନୁଷ୍ଠାନକୁ ପରିଦର୍ଶନ କଲାବେଳେ କହିଥିଲେ ଯେ ବିଶ୍ୱକବି ରବୀନ୍ଦ୍ର ନାଥ ଠାକୁର ଏକ ସ୍ୱପ୍ନ ଦେଖିଥିଲେ 'ଭାରତ ତୀର୍ଥ' ଗଠନ କରିବାକୁ। ଏହି ଭାରତ ତୀର୍ଥ ଓଡିଶାର ଭୁବନେଶ୍ୱରଠାରେ ଡକ୍ଟର ଅଚ୍ୟୁତ ସାମନ୍ତ ନିର୍ମାଣ କରିବାରେ ସକ୍ଷମ ହୋଇଛନ୍ତି ବୋଲି ସେ କହିଥିଲେ। ଓଡିଶା ଓ ପଡୋଶୀ ରାଜ୍ୟମାନଙ୍କରୁ ଜନଜାତି ବାଳକ-ବାଳିକାଙ୍କୁ ଆଣି କିସ୍‌ରେ ରହିବା, ଖାଇବା ଓ କେଜିଠାରୁ ପିଜି ପର୍ଯ୍ୟନ୍ତ ପାଠ ପଢାଇବାର ସମସ୍ତ ଦାୟିତ୍ୱ ବହନ କରି ସେମାନଙ୍କ ମଧ୍ୟରେ ଆତ୍ମବିଶ୍ୱାସ ଜାଗ୍ରତ କରାଇ ସମାଜର ମୁଖ୍ୟ ସ୍ରୋତରେ ସାମିଲ କରିବାର ସୁଯୋଗ ଦେଇଥିବାରୁ 'କିସ୍‌' ଆଜି ବିଶ୍ୱରେ ଏକ ଅତୁଳନୀୟ ଅନୁଷ୍ଠାନ ରୂପେ ପରିଗଣିତ ହୋଇପାରିଛି।

୨୦୧୨ ମସିହାରେ ୯୯ ତମ ଭାରତୀୟ ବିଜ୍ଞାନ କଂଗ୍ରେସର ଆୟୋଜନ କରିବାକୁ ଡକ୍ଟର ଅଚ୍ୟୁତ ସାମନ୍ତଙ୍କ ଉଦ୍ୟମ ଏବଂ ରାଜ୍ୟବାସୀଙ୍କ ଅତୁଟ ସମର୍ଥନ ଶିକ୍ଷାଜଗତରେ ଓଡିଶାର ସମ୍ମାନକୁ ଦ୍ୱିଗୁଣିତ କରିଛି ଏହା ନିଃସନ୍ଦେହ।

*ଓଡ଼ିଶା ଏକ୍ସପ୍ରେସ, ୩୧.୧୨.୨୦୧୧*

# ଭାରତୀୟ ବିଜ୍ଞାନ କଂଗ୍ରେସ ଦେଶର ସର୍ବଶ୍ରେଷ୍ଠ ବୌଦ୍ଧିକ ମହୋତ୍ସବ

୯୯ତମ 'ଭାରତୀୟ ବିଜ୍ଞାନ କଂଗ୍ରେସ' କିଟ୍ ବିଶ୍ୱବିଦ୍ୟାଳୟ ଓ ନାଇଜରର ମିଳିତ ସହଯୋଗରେ ଆଗାମୀ ଜାନୁଆରୀ ୩ ତାରିଖରୁ ୭ ତାରିଖ ପର୍ଯ୍ୟନ୍ତ ୫ ଦିନ ବ୍ୟାପୀ କିଟ୍ ବିଶ୍ୱବିଦ୍ୟାଳୟ ପ୍ରାଙ୍ଗଣରେ ଅନୁଷ୍ଠିତ ହେବାକୁ ଯାଉଛି। ଏହା ଦେଶ-ବିଦେଶର ବିଶିଷ୍ଟ ବୈଜ୍ଞାନିକମାନଙ୍କୁ ଏକତ୍ରିତ ହେବାର ଏକ ଅପୂର୍ବ ସୁଯୋଗ ଯୋଗାଇଦେବ। ଓଡିଶାରେ ତୃତୀୟଥର ପାଇଁ ଦୀର୍ଘ ୩୪ ବର୍ଷ ପରେ ଆୟୋଜିତ ହେବ ଭାରତୀୟ ବିଜ୍ଞାନ କଂଗ୍ରେସ।

୧୯୧୪ ମସିହାରେ କୋଲକତାଠାରେ ନ୍ୟାୟମୂର୍ତ୍ତି ସାର୍ ଆଶୁତୋଷ ମୁଖାର୍ଜୀଙ୍କ ସଭାପତିତ୍ୱରେ ପ୍ରଥମଥର ପାଇଁ ଭାରତୀୟ ବିଜ୍ଞାନ କଂଗ୍ରେସ ଅନୁଷ୍ଠିତ ହୋଇଥିଲା ଏବଂ ପଶ୍ଚିମବଂଗରେ ଅଦ୍ୟାବଧି ୧୪ ଥର ଭାରତୀୟ ବିଜ୍ଞାନ କଂଗ୍ରେସ ଅଧିବେଶନ ଅନୁଷ୍ଠିତ ହୋଇଯାଇଛି। ଆମ ଓଡିଶାରେ ପ୍ରଥମ ଥର ପାଇଁ୧୯୬୨ ମସିହାରେ କଟକଠାରେ ରେଭେନ୍ସା ମହାବିଦ୍ୟାଳୟ ପରିସରରେ ଭାରତୀୟ ବିଜ୍ଞାନ କଂଗ୍ରେସର ୪୯ତମ ଅଧିବେଶନ ଆୟୋଜିତ ହୋଇଥିଲା ଯେଉଁଥିରେ ସଭାପତିତ୍ୱ କରିଥିଲେ ପ୍ରଫେସର ଡକ୍ଟର ବି. ମୁଖାର୍ଜୀ। ଦ୍ୱିତୀୟ ଥର ପାଇଁ ୧୯୭୭ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟଦ୍ୱାରା ବାଣୀବିହାରଠାରେ ୬୪ତମ ଭାରତୀୟ ବିଜ୍ଞାନ କଂଗ୍ରେସର ଅଧିବେଶନ ଅନୁଷ୍ଠିତ ହୋଇଥିଲା, ଯାହର ସଭାପତି ଥିଲେ ଡକ୍ଟର ଏଚ. ଏନ୍. ସେଠନା। ଏହି ୯୯ତମ ଭାରତୀୟ ବିଜ୍ଞାନ କଂଗ୍ରେସରେ ସଭାପତିତ୍ୱ କରିବେ ପ୍ରଫେସର ଗୀଥା ବାଲି। ଏଠାରେ ଉଲ୍ଲେଖ କରିବା ସମୀଚୀନ ହେବ ଯେ ୧୯୬୦ ମସିହାରେ ବମ୍ବେଠାରେ ଅନୁଷ୍ଠିତ ହୋଇଥିବା ଭାରତୀୟ ବିଜ୍ଞାନ କଂଗ୍ରେସରେ ଆମ ଓଡିଶାର ବିଶ୍ୱବିଖ୍ୟାତ ବୈଜ୍ଞାନିକ ପ୍ରଫେସର ପ୍ରାଣକୃଷ୍ଣ ପରିଜା ସଭାପତିତ୍ୱ କରିଥିଲେ। ପ୍ରଫେସର ପରିଜା ମଧ୍ୟ ଏକମାତ୍ର ବୈଜ୍ଞାନିକ ଯିଏ କି କ୍ରମାଗତ ଭାବରେ ୧୯୩୯ ମସିହାଠାରୁ ୧୯୪୪ ମସିହା ପର୍ଯ୍ୟନ୍ତ ୬ ବର୍ଷ ଭାରତୀୟ ବିଜ୍ଞାନ କଂଗ୍ରେସର ସାଧାରଣ ସଂପାଦକ ଭାବେ ଦ୍ୱିତୀୟ ମହାଯୁଦ୍ଧ ସମୟରେ ଅନୁଷ୍ଠିତ ହୋଇଥିବା

ଭାରତୀୟ ବିଜ୍ଞାନ କଂଗ୍ରେସଗୁଡିକୁ ସୁଚାରୁରୂପେ ପରିଚାଳିତ କରାଇ ନିଜକୁ ଓ ନିଜ ରାଜ୍ୟକୁ ଦେଶବିଦେଶର ବୈଜ୍ଞାନିକମାନଙ୍କ ମଧ୍ୟରେ ପରିଚିତ କରାଇପାରିଥିଲେ।

୯୯ତମ ଭାରତୀୟ ବିଜ୍ଞାନ କଂଗ୍ରେସକୁ ନିଜ ରାଜ୍ୟରେ ଅନୁଷ୍ଠିତ କରାଇବାକୁ ଭାରତର ବହୁ ପୁରାତନ ବିଶ୍ୱବିଦ୍ୟାଳୟମାନେ ପ୍ରମୁଖ ଦାବିଦାର ଥିଲେ। କିନ୍ତୁ ଗର୍ବର କଥା, କିଟ୍ ବିଶ୍ୱବିଦ୍ୟାଳୟ ବିଗତ ୧୪ ବର୍ଷ ମଧ୍ୟରେ ନିଜର ସୁପରିଚାଳନା ଓ ସୁଖ୍ୟାତିକୁ ପୁଂଜିକରି ଓଡିଶାରେ ୯୯ତମ ଭାରତୀୟ ବିଜ୍ଞାନ କଂଗ୍ରେସର ଅଧିବେଶନ କରାଇବାକୁ ସକ୍ଷମ ହୋଇପାରିଛି। କିଟ୍‌ର ପ୍ରତିଷ୍ଠାତା ଡକ୍ଟର ଅଚ୍ୟୁତ ସାମନ୍ତଙ୍କ ଉଦ୍ୟମ ଯୋଗୁଁ ଏହା ସମ୍ଭବ ହୋଇଛି। ଏଥିପାଇଁ ତାଙ୍କର ଯେତେ ପ୍ରଶଂସା କଲେ ମଧ୍ୟ ତାହା କମ୍ ହେବ।

କିଟ୍ ବିଶ୍ୱବିଦ୍ୟାଳୟ ସ୍ୱଳ୍ପ ସମୟ ମଧ୍ୟରେ ବୈଷୟିକ ଶିକ୍ଷା ପ୍ରଦାନରେ ଭାରତରେ ଏକ ଶ୍ରେଷ୍ଠ ଅନୁଷ୍ଠାନ ଭାବେ ନିଜକୁ ପ୍ରତିପାଦିତ କରିପାରିଛି। ଏହା ୧୦ଟି ଆନ୍ତର୍ଜାତୀୟ ସଂସ୍ଥାର ସଦସ୍ୟତା ଲାଭ କରି ଏକ କୀର୍ତ୍ତିମାନ ସ୍ଥାପନ କରିଛି। ଏହି ବିଶ୍ୱବିଦ୍ୟାଳୟରେ ୧୫ଟି ବିଭିନ୍ନ ବୈଷୟିକ ଶିକ୍ଷା ବିଭାଗରେ ସ୍ନାତକ ଓ ସ୍ନାତକୋତ୍ତର ପାଠ୍ୟକ୍ରମ ଉପଲବ୍ଧ ହେଉଛି। ତୀବ୍ର ପ୍ରତିଯୋଗିତା ଓ ପ୍ରତିବନ୍ଧକକୁ ଅତିକ୍ରମ କରି ଡକ୍ଟର ଅଚ୍ୟୁତ ସାମନ୍ତ ଭାରତୀୟ ବିଜ୍ଞାନ କଂଗ୍ରେସକୁ ରାଜ୍ୟର ସମ୍ମାନ ବୃଦ୍ଧି ପାଇଁ କିଟ୍ ବିଶ୍ୱବିଦ୍ୟାଳୟ ପରିସରରେ ଆୟୋଜନର ଉଦ୍ୟମ କରୁଥିଲାବେଳେ ସ୍ୱଳ୍ପ କେତେକ ବ୍ୟକ୍ତି ଈର୍ଷା ପ୍ରଣୋଦିତ ହୋଇ ଭାରତୀୟ ବିଜ୍ଞାନ କଂଗ୍ରେସ କିଭଳି ନ ହେବ ସେଥିପାଇଁ କୁତ୍ସାରଟନାରେ ମାତିଛନ୍ତି। ଏପରିକି ଓଡିଶା ହାଇକୋର୍ଟରେ ୯୯ତମ ଭାରତୀୟ ବିଜ୍ଞାନ କଂଗ୍ରେସକୁ ବନ୍ଦ କରି ଏହା କିଟ୍ ବିଶ୍ୱବିଦ୍ୟାଳୟରୁ ସ୍ଥାନାନ୍ତରିତ କରିବାପାଇଁ ଏକ ଜନସ୍ୱାର୍ଥ ମାମଲା ଦାୟର ହୋଇଥିଲା। ଏହି ଜନସ୍ୱାର୍ଥ ମାମଲାକୁ ମାନ୍ୟବର ବିଚାରପତି ନ୍ୟାୟମୂର୍ତ୍ତି ବିମଳ ପ୍ରସାଦ ଦାସ ଓ ବିଚାରପତି ବି. କେ. ନାୟକଙ୍କୁ ନେଇ ଗଠିତ ଖଣ୍ଡପୀଠ ବିଚାର କରି ଖାରଜ କରିବା ସହ ଏହାକୁ ଭିତ୍ତିହୀନ, କପୋଳକଳ୍ପିତ ଓ ଉଦ୍ଦେଶ୍ୟମୂଳକ ବୋଲି ଦର୍ଶାଇ ଏଭଳି ମୂଲ୍ୟହୀନ ତଥା ଜନବିରୋଧି ମାମଲା ଉଚ୍ଚ ନ୍ୟାୟାଳୟକୁ ଆଣୁଥିବା ମହକିଲଙ୍କୁ ବାରଣ କରିବା ଲାଗି ଆବେଦନକାରୀ ପକ୍ଷର ଓକିଲ ଅଶୋକ ମହାପାତ୍ରଙ୍କୁ ମଧ୍ୟ ନିର୍ଦ୍ଦେଶ ଦେଇଛନ୍ତି। ଏହା ଏକ ଉଦ୍ଦେଶ୍ୟମୂଳକ ମାମଲା ହୋଇଥିବାରୁ ସରକାରୀ ଓକିଲ ଜେ. ପି. ପଟ୍ଟନାୟକ ଏହା ବିରୁଦ୍ଧରେ ଉପଯୁକ୍ତ ଜୋରିମାନା ଲାଗୁ କରିବାକୁ ଅଦାଲତଙ୍କୁ ନିବେଦନ

କରିଥିଲେ। କିନ୍ତୁ ପରେ ଆବେଦନକାରୀ ଓକିଲଙ୍କ ଅନୁରୋଧକ୍ରମେ ଅଦାଲତ ଜୋରିମାନା ରାଶି ଛାଡ କରିଥିବା ଜଣାପଡିଛି। ଦୀର୍ଘ ୩୪ ବର୍ଷ ପରେ ଓଡିଶାରେ ଦେଶର ସର୍ବବୃହତ୍ ବିଜ୍ଞାନ ମେଳା ଭାରତୀୟ ବିଜ୍ଞାନ କଂଗ୍ରେସ ଆୟୋଜନ ପାଇଁ ସୁଯୋଗ ମିଳିଥିବାବେଳେ କେତେକ ସ୍ୱାର୍ଥନ୍ୱେଷୀ ବ୍ୟକ୍ତି ଏହାକୁ ବିରୋଧ କରିବା ଦୁଃଖଦାୟକ ଘଟଣା ବୋଲି ଅଦାଲତ କ୍ଷୋଭ ପ୍ରକାଶ କରିଥିବା ଜଣାପଡିଛି। ମାନ୍ୟବର ହାଇକୋର୍ଟଙ୍କର ଏହି ନିଷ୍ପତ୍ତି ବୁଦ୍ଧିଜୀବୀ ଓ ଛାତ୍ରଛାତ୍ରୀଙ୍କ ମଧ୍ୟରେ ଆନନ୍ଦର ଲହରୀ ଖେଳାଇଦେଇଛି। ଏଠାରେ ଉଲ୍ଲେଖଯୋଗ୍ୟ ଯେ ବହୁ ମାମଲାରେ ଓଡିଶା ହାଇକୋର୍ଟଙ୍କର ଯୁଗାନ୍ତକାରୀ ନିଷ୍ପତ୍ତି ଫଳରେ ଓଡିଶାର ଉନ୍ନତି ସମ୍ଭବ ହେଉଛି ଓ ସାଧାରଣ ଲୋକ ଅନ୍ୟାୟ-ଅନୀତିରୁ ନିସ୍ତାର ପାଉଛନ୍ତି ବୋଲି ରାଜ୍ୟବାସୀ ହୃଦ୍‌ବୋଧ କରୁଛନ୍ତି।

୯୯ତମ ଭାରତୀୟ ବିଜ୍ଞାନ କଂଗ୍ରେସର ଗୁରୁତ୍ୱ ବିଭିନ୍ନ ଦୃଷ୍ଟିକୋଣରୁ ବୃଦ୍ଧି ପାଇବାରେ ଲାଗିଛି। ପ୍ରଧାନମନ୍ତ୍ରୀ ଡକ୍ଟର ମନମୋହନ ସିଂହ ଏହି ଉତ୍ସବକୁ ଉଦ୍‌ଘାଟନ କରିବେ ଓ ଉଦ୍‌ଯାପନୀ ଉତ୍ସବରେ ମଧ୍ୟ ଯୋଗଦେବେ। କେନ୍ଦ୍ରର ବହୁ ମନ୍ତ୍ରୀ ଓ ବିଭିନ୍ନ ରାଜ୍ୟର ବହୁ ମନ୍ତ୍ରୀ ଓ ଗଣ୍ୟମାନ୍ୟ ବ୍ୟକ୍ତିମାନେ ଏହି ଅଧିବେଶନରେ ଯୋଗଦେବାକୁ ନିଜର ଇଚ୍ଛା ପ୍ରକାଶ କରିଛନ୍ତି। ପୂର୍ବତନ ରାଷ୍ଟ୍ରପତି ଏ. ପି. ଜେ. ଅବଦୁଲ୍ କଲାମ୍ 'ଶିଶୁ ବିଜ୍ଞାନ କଂଗ୍ରେସ'କୁ ଉଦ୍‌ଘାଟନ କରିବେ ଏବଂ ଉଦ୍‌ବୋଧନ ଦେବେ। ଶିଶୁ ବିଜ୍ଞାନ କଂଗ୍ରେସରେ ୯ରୁ ୧୮ ବର୍ଷ ବୟସ ପର୍ଯ୍ୟନ୍ତ ବାଳକ ବାଳିକାମାନେ ଅଂଶଗ୍ରହଣ କରିଥାନ୍ତି। ସେମାନେ ନିଜର ସୃଜନୀ ଶକ୍ତିର ପରିସ୍ଫୁଟନ ପାଇଁ ଏହି ବିଜ୍ଞାନ କଂଗ୍ରସରେ ବହୁ ସୁଯୋଗ ଓ ପ୍ରଶସ୍ତ କ୍ଷେତ୍ର ପାଇବେ। ମହିଳାଙ୍କ ଉପରେ ଆଧାରିତ 'ମହିଳା ବିଜ୍ଞାନ କଂଗ୍ରେସ' ପ୍ରଥମଥର ପାଇଁ ଭାରତୀୟ ବିଜ୍ଞାନ କଂଗ୍ରେସର କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ ହୋଇଛି। ବିଜ୍ଞାନ ଓ ପ୍ରଯୁକ୍ତି କ୍ଷେତ୍ରରେ ମହିଳାଙ୍କ ଯୋଗଦାନର ଗୁରୁତ୍ୱକୁ ସର୍ବସାଧାରଣରେ ଆଦୃତ କରିବା ପାଇଁ ବହୁ ଖ୍ୟାତିସଂପନ୍ନ ମହିଳା ଏହି ମହିଳା ବିଜ୍ଞାନ କଂଗ୍ରେସରେ ଯୋଗଦେବେ ଏବଂ ନିଜର ବକ୍ତବ୍ୟ ରଖିବେ।

୯୯ତମ ଭାରତୀୟ ବିଜ୍ଞାନ କଂଗ୍ରେସର ବିଷୟବସ୍ତୁ ରହିଛି 'ସାଇନ୍‌ସ ଆଣ୍ଡ ଟେକ୍ନୋଲୋଜି ଫର୍ ଇନ୍‌କ୍ଲୁସିଭ୍ ଇନୋଭେସନ୍-ରୋଲ୍ ଅଫ୍ ୱିମେନ୍' (ବିସ୍ତୃତ ଉଦ୍‌ଭାବନ ପାଇଁ ବିଜ୍ଞାନ ଓ ପ୍ରଯୁକ୍ତି କ୍ଷେତ୍ରରେ ମହିଳାଙ୍କ ଭୂମିକା)। ବର୍ତ୍ତମାନ

ପର୍ଯ୍ୟନ୍ତ ଯାହା ଅନୁମାନ କରାଯାଉଛି ୨୦ ଜଣ ନୋବେଲ ପୁରସ୍କାର ବିଜେତା ଓ ୨୦ ହଜାରରୁ ଊର୍ଦ୍ଧ୍ୱ ବୈଜ୍ଞାନିକ, ଅଧ୍ୟାପକ, ଅଧ୍ୟାପିକା ଓ ଛାତ୍ରଛାତ୍ରୀ ୯୯ ତମ ଭାରତୀୟ ବିଜ୍ଞାନ କଂଗ୍ରେସରେ ଯୋଗଦେବେ। ଏହି ସଂଖ୍ୟାକୁ ବାଦ୍ ଦେଲେ କିଟ୍ ବିଶ୍ୱବିଦ୍ୟାଳୟର ୧୮ ହଜାର ଛାତ୍ରଛାତ୍ରୀ ଓ ବିଶ୍ୱରେ ସର୍ବବୃହତ୍ତ ଆଦିବାସୀ ଛାତ୍ରଛାତ୍ରୀଙ୍କର ଆବାସିକ ବିଦ୍ୟାଳୟ 'କିସ୍'ର ୧୫ ହଜାର ଛାତ୍ରଛାତ୍ରୀ, ଭୁବନେଶ୍ୱର ଓ ରାଜ୍ୟର ବିଭିନ୍ନ ଅଂଚଳରୁ ଅନ୍ୟୁନ ୩୦ ହଜାର ଶିକ୍ଷକ ଓ ଛାତ୍ରଛାତ୍ରୀ ଏହିଭଳି ପ୍ରାୟ ଲକ୍ଷାଧିକ ଲୋକଙ୍କର ସମାବେଶ ହେବ କିଟ୍ ବିଶ୍ୱବିଦ୍ୟାଳୟ ପରିସରରେ। ବିଶ୍ୱର ବିଭିନ୍ନ ଗଣମାଧ୍ୟମର ପ୍ରତିନିଧିମାନେ ମଧ୍ୟ ଏହି ବିଜ୍ଞାନ କଂଗ୍ରେସରେ ହେବାକୁଥିବା ଆଲୋଚନାଗୁଡ଼ିକୁ ପ୍ରଚାର କରିବାକୁ ଭୁବନେଶ୍ୱରରେ ଏକତ୍ରିତ ହେବେ। ଏହି ସମାବେଶ ହେଉଛି ବୈଜ୍ଞାନିକମାନଙ୍କର କୁମ୍ଭମେଳା।

'କଳିଙ୍ଗ ଆନ୍ତର୍ଜାତୀୟ ବିଜ୍ଞାନ ପୁରସ୍କାର' ପ୍ରଦାନର ଏହା ୬୦ ତମ ବର୍ଷ ହୋଇଥିବାରୁ ପୂର୍ବରୁ ଏହି ପୁରସ୍କାର ପାଇଥିବା ସବୁ ବୈଜ୍ଞାନିକମାନଙ୍କୁ ଏହି ବିଜ୍ଞାନ କଂଗ୍ରେସରେ ଯୋଗଦେବାକୁ ଆମନ୍ତ୍ରଣ କରାଯାଇଛି। ବିଜୁ ପଟ୍ଟନାୟକଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିବା କଳିଙ୍ଗ ପୁରସ୍କାର ନୋବେଲ ପୁରସ୍କାର ସହିତ ତୁଳନୀୟ। ଏହି ପୁରସ୍କାର ଦ୍ୱାରା ସମ୍ମାନିତ ବୈଜ୍ଞାନିକମାନଙ୍କର ଏକକାଳୀନ ୯୯ ତମ ଭାରତୀୟ ବିଜ୍ଞାନ କଂଗ୍ରେସରେ ଯୋଗଦାନ ଏକ ଯୁଗାନ୍ତକାରୀ ଘଟଣା।

ବିଜ୍ଞାନ କଂଗ୍ରେସର ଅଧିବେଶନ ସନ୍ନିକଟରେ କିଟ୍ ବିଶ୍ୱବିଦ୍ୟାଳୟ ତରଫରୁ ଏକ ଅଭିନବ ପରିକଳ୍ପନା 'ଓଡ଼ିଶା ମଣ୍ଡପ' ପ୍ରସ୍ତୁତ କରାଯାଇଛି। ଏଥିରେ ଓଡ଼ିଶାର ଇତିହାସ, ଭୂଗୋଳ, ପରମ୍ପରା, ସଂସ୍କୃତି, ପ୍ରାକୃତିକ ସଂପଦ, ବୈଜ୍ଞାନିକ ଐତିହ୍ୟ, ବାଣିଜ୍ୟ, ମହାନ ଜଗନ୍ନାଥ ସଂସ୍କୃତି, ପଟ୍ଟଚିତ୍ର, ଶିଳ୍ପକଳା ଓ ନୈପୁଣ୍ୟ, ପର୍ଯ୍ୟଟନସ୍ଥଳ, ଆଧ୍ୟାତ୍ମିକ ପରିବେଶ, ସୁଦୀର୍ଘ ସାମୁଦ୍ରିକ ବେଳାଭୂମି, ଆଦିବାସୀ ସଂସ୍କୃତି, ଚିଲିକା ତଥା ଗହୀରମଥାର ସୌନ୍ଦର୍ଯ୍ୟ, କାବ୍ୟକଳା, କାରୁକାର୍ଯ୍ୟ ସମେତ ଓଡ଼ିଶାର ଖାଦ୍ୟ, ପିଠାପଣା ଆଦି ମଧ୍ୟ ପ୍ରଦର୍ଶିତ ହେବ। ସେହିପରି ଉତ୍କଳର ଅନ୍ୟତମ ବରପୁତ୍ର ଚନ୍ଦ୍ରଶେଖର ସିଂହ ସାମନ୍ତ ହରିଚନ୍ଦନ ମହାପାତ୍ର (ସାମନ୍ତ ଚନ୍ଦ୍ରଶେଖର)ଙ୍କ ନାମରେ ମଧ୍ୟ ଏକ ମଣ୍ଡପ ଏଠାରେ ନିର୍ମାଣ କରାଯିବ। ଏହା ଆଗନ୍ତୁକମାନଙ୍କୁ ଓଡ଼ିଶାର ଗୌରବାନ୍ୱିତ ଐତିହ୍ୟ ଓ ପରମ୍ପରା ସମ୍ପର୍କରେ ସଚେତନ କରାଇବ।

ଡକ୍ଟର ଅଚ୍ୟୁତ ସାମନ୍ତ ବିଗତ ବର୍ଷମାନଙ୍କରେ କିଟ୍ ବିଶ୍ୱବିଦ୍ୟାଳୟକୁ ପୃଥିବୀର ଗଣ୍ୟମାନ୍ୟ ବ୍ୟକ୍ତିମାନଙ୍କୁ ନିମନ୍ତ୍ରଣ କରିଆଣି ସଭା, ସମିତି ଓ ଆଲୋଚନାଚକ୍ରମାନ ଅନୁଷ୍ଠିତ କରାଇ କେବଳ ଯେ କିଟ୍ ଓ କିସ୍‌ର ମର୍ଯ୍ୟାଦା ବୃଦ୍ଧି କରିଛନ୍ତି ତାହା ନୁହେଁ, ସାରା ରାଜ୍ୟର ମର୍ଯ୍ୟାଦାକୁ ମଧ୍ୟ ବୃଦ୍ଧି କରାଇବାରେ ସହାୟକ ହୋଇଛନ୍ତି । ଓଡିଶା ଓ ପଡୋଶୀ ରାଜ୍ୟମାନଙ୍କରୁ ୧୫ ହଜାର ଦରିଦ୍ର ଜନଜାତି ବାଳକ-ବାଳିକାଙ୍କୁ ଆଣି କିସ୍‌ରେ ରହିବା, ଖାଇବା ଓ କେଜିଠାରୁ ପିଜି ପର୍ଯ୍ୟନ୍ତ ପାଠ ପଢାଇବାର ସମସ୍ତ ଦାୟିତ୍ୱ ବହନ କରି ସେମାନଙ୍କ ମଧ୍ୟରେ ଆତ୍ମବିଶ୍ୱାସ ଜାଗ୍ରତ କରାଇ ସମାଜର ମୁଖ୍ୟ ସ୍ରୋତରେ ସାମିଲ କରିବାର ସୁଯୋଗ ଦେଇଥିବାରୁ 'କିସ୍' ଆଜି ବିଶ୍ୱରେ ଏକ ଅତୁଳନୀୟ ଅନୁଷ୍ଠାନ ରୂପେ ପରିଗଣିତ ହୋଇପାରିଛି । କୌଣସି ଅନୁଷ୍ଠାନ ବା ବ୍ୟକ୍ତିବିଶେଷ ସଂପୂର୍ଣ୍ଣ ଦୋଷତ୍ରୁଟିଶୂନ୍ୟ ହୋଇଥିବ ଏହା କହିବା ଠିକ୍ ହେବନାହିଁ । କିନ୍ତୁ ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ତ୍ରୁଟି ଖୋଜିବା ଓ ତିଳକୁ ତାଳ କରି ପ୍ରଚାର କରିବା ଅସୂୟା ମନୋଭାବର ପରିଚାୟକ ଅଟେ । ଯେଉଁ ଜାତି ଉପରକୁ ଉଠିଛି ସେମାନେ ନିଜ ଲୋକଙ୍କର ଭଲଗୁଣକୁ ସତଜିହ୍ୱାରେ ପ୍ରଶଂସା କରନ୍ତି । ଚାଲନ୍ତୁ ଆମେ ମଧ୍ୟ ସେମାନଙ୍କ ଗୁଣକୁ ଆପଣେଇନେବା । ଆମେ ସମସ୍ତେ ଏକଜୁଟ ହୋଇ ଏହି ୯୯ତମ ଭାରତୀୟ ବିଜ୍ଞାନ କଂଗ୍ରେସ ଅବସରରେ କିଟ୍ କର୍ତ୍ତୃପକ୍ଷଙ୍କୁ ସହଯୋଗ କରିବା ଏବଂ ଦେଶର ଏହି ସର୍ବଶ୍ରେଷ୍ଠ ଓ ସର୍ବବୃହତ୍ ବୌଦ୍ଧିକ ମହୋତ୍ସବ କିଭଳି ସବୁଦିଗରୁ ସଫଳତା ହାସଲ କରିବ ସେଥିପାଇଁ ଯତ୍ନବାନ ହୋଇ ନିଜ ରାଜ୍ୟର ଗୌରବ ବୃଦ୍ଧି କରିବାରେ ସହାୟକ ହେବା ।

*ପ୍ରଗତିବାଦୀ, ୩୧.୧୨.୨୦୧୧*

# ଓଡିଶାରେ ଖଣି ଲୁଟ୍ ଓ ଶାହା କମିଶନ୍

୭ ଡିସେମ୍ବର ୨୦୧୧ରେ ସୁପ୍ରିମ୍ କୋର୍ଟଙ୍କ ଦ୍ୱାରା ଖଣି ଦୁର୍ନୀତି ସମ୍ପର୍କରେ ତଦନ୍ତ କରି ରିପୋର୍ଟ ଦେବାକୁ ଜଷ୍ଟିସ୍ ଏମ୍. ବି. ଶାହାଙ୍କ ନେତୃତ୍ୱରେ ନିଯୁକ୍ତ ୮ ଜଣିଆ କମିଶନ ଓଡିଶାରେ ତଦନ୍ତ ପାଇଁ ପହଞ୍ଚିଲା ପରେ ସାଧାରଣ ଜନତା ଏହି କମିଶନ୍‌ର ତଦନ୍ତର ଫଳାଫଳ ଜାଣିବାକୁ ବ୍ୟଗ୍ରତାର ସହ ଅପେକ୍ଷା କରିଛନ୍ତି । ଶାହା କମିଶନ୍ ଓଡିଶା ଆସିବା ପୂର୍ବରୁ ରାଜ୍ୟର ୧୮୮ଟି ଖଣି ସମ୍ପର୍କରେ ରାଜ୍ୟ ସରକାରଙ୍କୁ ସବିଶେଷ ତଥ୍ୟ ମାଗିଥିଲେ । କମିଶନ୍ ୬୦ଟି ପ୍ରଶ୍ନ ଉତ୍‌ଥାପନ କରି ଖଣିମାଲିକମାନଙ୍କର ଏକ ପୂର୍ଣ୍ଣାଙ୍ଗ ତାଲିକା ଏବଂ ବେଆଇନ୍ ଖଣି କାରବାର ରୋକିବାକୁ ରାଜ୍ୟ ସରକାର କି ପଦକ୍ଷେପ ନେଇଛନ୍ତି ଇତ୍ୟାଦି ଉପରେ ରିପୋର୍ଟ ମାଗିଥିଲେ । ରାଜ୍ୟ ସରକାର ତିନୋଟି ପର୍ଯ୍ୟାୟରେ ମେ' ୧୩ ତାରିଖ, ଜୁନ୍ ୧ ତାରିଖ ଓ ଅଗଷ୍ଟ ୧୦ ତାରିଖରେ ଶାହା କମିଶନ୍‌ଙ୍କୁ ତଥ୍ୟ ପ୍ରଦାନ କରିଥିଲେ ।

ଗତବର୍ଷ ୮, ୯, ୧୦ ଡିସେମ୍ବରରେ ଶାହା କମିଶନ୍‌ରେ ଆସିଥିବା ୮ ଜଣ ସଦସ୍ୟ ଦୁଇ ଭାଗରେ ବିଭକ୍ତ ହୋଇ କେନ୍ଦୁଝର ଜିଲ୍ଲାର ଯୋଡା, ବଡବିଲ ଓ ସୁନ୍ଦରଗଡର କୋଇଡା ଖଣି ଅଞ୍ଚଳକୁ ଯାଇ ଦୁଇ ଜିଲ୍ଲାର ଜିଲ୍ଲାପାଳ, ଏସ୍.ପି., ଖଣି ବିଭାଗର ବରିଷ୍ଠ ଅଧିକାରୀଙ୍କ ସହ ଆଲୋଚନା କରିବା ସହିତ କେତେକ ଖଣି ନିକଟକୁ ଯାଇ ସେଠାରେ ସରଜମିନ୍ ତଦନ୍ତ କରିଛନ୍ତି । ୧୧ ଡିସେମ୍ବର ଦିନ ଖଣି ଅଞ୍ଚଳରେ କାର୍ଯ୍ୟ କରୁଥିବା ଏନ୍.ଜି.ଓ., ବିଭିନ୍ନ ଲୋକପ୍ରତିନିଧି ଓ ସାଧାରଣ ଲୋକମାନଙ୍କ ସହିତ ମଧ୍ୟ ଆଲୋଚନା କରିଛନ୍ତି । ୧୨ ଡିସେମ୍ବରରେ ଜଷ୍ଟିସ୍ ଶାହା କମିଟିର ସଦସ୍ୟମାନେ ରାଜନୈତିକ ଦଳଗୁଡିକର ପ୍ରତିନିଧି ଓ ସାଧାରଣ ଲୋକଙ୍କର ଅଭିଯୋଗ ଶୁଣିଛନ୍ତି ଓ ରାଜ୍ୟ ସରକାରଙ୍କ ସହ ଆଲୋଚନା କରି ଫେରି ଯାଇଛନ୍ତି ।

ଶାହା କମିଶନ୍ ଇତି ମଧ୍ୟରେ ଏକ ମଧ୍ୟବର୍ତ୍ତୀକାଳୀନ ରିପୋର୍ଟ କେନ୍ଦ୍ର ସରକାରଙ୍କୁ ପ୍ରଦାନ କରିଛନ୍ତି ଏବଂ ଓଡିଶାରୁ ଯେ ଖଣିଜ ସଂପଦ ଅବିଚାରିତ ଭାବରେ ଖଣି ମାଫିଆଙ୍କ ଦ୍ୱାରା ଲୁଟ୍ ହୋଇଛି ତାହା ଦର୍ଶାଇଛନ୍ତି । ଜଷ୍ଟିସ୍ ଶାହା ଏହି ଖଣି ଦୁର୍ନୀତି ସଂପର୍କରେ ପୁଙ୍ଖାନୁପୁଙ୍ଖ ତଦନ୍ତ କରିବାର ଆବଶ୍ୟକତା ରହିଛି ବୋଲି କେନ୍ଦ୍ର

ସରକାରଙ୍କୁ ଜଣାଇଛନ୍ତି । ଖଣିଜ ପଦାର୍ଥ ଉତ୍ତୋଳନ ବେଳେ ପରିବେଶ ଆଇନ୍‌କୁ ଖୋଲାଖୋଲି ଉଲଙ୍ଘନ, ମାଇନିଂ ପ୍ଲାନ୍‌ରେ ଅନୁମୋଦିତ ହାରଠାରୁ ଅତ୍ୟଧିକ ଉତ୍ତୋଳନ ଭଳି ବେଆଇନ୍ କାର୍ଯ୍ୟ ଏବଂ ଲିଜଧାରୀ ଓ ଖଣିଜ ଉତ୍ତୋଳନ କରୁଥିବା ଠିକାଦାରଙ୍କ ମଧ୍ୟରେ ଅସାଧୁ ମେଣ୍ଟ ଭଳି ଅନେକ ସଂଗୀନ ବେଆଇନ୍ କାର୍ଯ୍ୟ ଶାହା କମିଶନଙ୍କ ନଜରକୁ ଆସିଛି ।

ଆମ ରାଜ୍ୟର କେତେକ ମୁଷ୍ଟିମେୟ ରାଜନେତା ଓ ଖଣି ମାଫିଆମାନେ ଦୁର୍ନୀତିଗ୍ରସ୍ତ ସରକାରୀ କର୍ମଚାରୀ ବିଶେଷକରି ଖଣି ବିଭାଗ, ରାଜସ୍ୱ ବିଭାଗ, ପୋଲିସ୍ ବିଭାଗ, ଜଙ୍ଗଲ ବିଭାଗ, ପରିବହନ ବିଭାଗ, ଅର୍ଥ ବିଭାଗରେ କାର୍ଯ୍ୟରତ କର୍ମଚାରୀଙ୍କ ସହାୟତାରେ ବର୍ଷ ବର୍ଷ ଧରି ଖଣି ଲୁଟ୍ କରିଚାଲିଛନ୍ତି । କେତେକ ବିଶେଷଜ୍ଞଙ୍କ ଆକଳନ ଅନୁଯାୟୀ ଗତ ୧୦ ବର୍ଷ ମଧ୍ୟରେ ଓଡିଶାରୁ ଅନ୍ୟୁନ ୩ ଲକ୍ଷ କୋଟି ଟଙ୍କାର ଖଣିଜ ସଂପଦ ଲୁଟ୍ ହୋଇଛି । ଖଣି ଦୁର୍ନୀତିର ବ୍ୟାପକତା ସମ୍ପର୍କରେ ବି.ଜେ.ପି. ବିଧାୟକ ଦଳର ନେତା କନକବର୍ଦ୍ଧନ ସିଂହଦେଓ ବିଧାନସଭାରେ ବକ୍ତବ୍ୟ ଦେଇ ରାମବାହାଦୁର ଠାକୁର, ଅର୍ଜୁନ ଲାଧା, ବି.ସି. ଦେବ ଓ ଶକ୍ତିରଂଜନ ଦାସଙ୍କ ବେଆଇନ ଖଣି କାରବାରର ଟିକିନିଖି ବିବରଣୀ ଦେଲାପରେ ଦଳମତ ନିର୍ବିଶେଷରେ ଓଡିଶା ବିଧାନସଭାରେ ସଦସ୍ୟମାନେ ଖଣି ଲୁଟ୍‌ର ଭାଗୀଦାରମାନଙ୍କୁ ଚିହ୍ନଟ କରି ଆଇନ୍ ଅନୁଯାୟୀ କଠୋର ଦଣ୍ଡ ଦେବାକୁ ଦାବୀ ଜଣାଇଆସୁଛନ୍ତି । ବିରୋଧୀ ଦଳର ସଦସ୍ୟମାନେ ଏହି ତଦନ୍ତ ସି.ବି.ଆଇ. (କେନ୍ଦ୍ରୀୟ ତଦନ୍ତ ବ୍ୟୁରୋ) ଦ୍ୱାରା କରାଇବାକୁ ବାରମ୍ବାର କହୁଥିଲେ ମଧ୍ୟ ଏହା କରାଇବାର ଆବଶ୍ୟକତା ନାହିଁ ବୋଲି ଖଣି ମନ୍ତ୍ରୀ ରଘୁନାଥ ମହାନ୍ତି ଉତ୍ତର ରଖିଆସୁଛନ୍ତି ।

୨୦୦୨-୨୦୦୩ ମସିହାରୁ ଟ୍ରେନ୍, ଟ୍ରକ୍ ଓ ଜାହାଜ ଜରିଆରେ ଖଣିଜ ପଦାର୍ଥ ଦେଶର ବିଭିନ୍ନ ପ୍ରଦେଶକୁ ଓ ବିଦେଶକୁ ଚୋରାରେ ଚାଲାଣ ହେଉଛି ଏବଂ ସରକାର ଏହା ଜାଣି ମଧ୍ୟ ଏହା ବନ୍ଦ କରିବାକୁ ଠୋସ୍ ପଦକ୍ଷେପ ଗ୍ରହଣ କରିନାହାନ୍ତି । ଗତ ୧୦ ବର୍ଷ ମଧ୍ୟରେ ରାଜ୍ୟରୁ ୪୨୦ ନିୟୁତ ଟନ୍ ଲୁହାପଥର ଉତ୍ତୋଳନ କରାଯାଇଛି ଯାହାର ଆନୁମାନିକ ମୂଲ୍ୟ ପାଖାପାଖି ୮୪ ହଜାର କୋଟି ଟଙ୍କା । ଅତି କ୍ଷୋଭର କଥା ରାଜ୍ୟର ଶିଳ୍ପ ଓ ଖଣି ବିଭାଗ ସ୍ୱୀକାର କରୁଛନ୍ତି ଯେ ସମପରିମାଣର ଅର୍ଥାତ୍ ୪୨୦ ନିୟୁତ ଟନ୍‌ର ଲୁହାପଥର ବେଆଇନ୍ ଭାବେ ଏହି ୧୦ ବର୍ଷ ମଧ୍ୟରେ ମଧ୍ୟ ଉତ୍ତୋଳନ କରାଯାଇଅଛି । ଆମ ରାଜ୍ୟ ଏହି ଚୋରା ଖଣି କାରବାରରେ ଗତ

୧୦ ବର୍ଷରେ ୧.୫ ଲକ୍ଷ କୋଟି ଟଙ୍କାର ରାଜସ୍ୱ ହରାଇଥିବା ଏକ ଆକଳନରୁ ଜଣାପଡିଛି ।

୨୦୦୯ ମସିହା ଜୁଲାଇ ମାସରେ ମୁଖ୍ୟମନ୍ତ୍ରୀ ଖଣି ଦୁର୍ନୀତିର ତଦନ୍ତ ଭିଜିଲାନ୍ସ ଦ୍ୱାରା କରାଇବାକୁ ନିର୍ଦ୍ଦେଶ ଦେଇଛନ୍ତି । କିନ୍ତୁ ଭିଜିଲାନ୍ସ ତଦନ୍ତର ବିଶ୍ୱାସନୀୟତା ଉପରେ ପ୍ରଶ୍ନବାଚୀ ସୃଷ୍ଟି ହୋଇଛି । ଏଠାରେ ମନେପକାଇଦେବା ସମୀଚୀନ ହେବ ଯେ ଓଡିଶା ଖଣି ଦୁର୍ନୀତି ସଂପର୍କରେ ଅବସରପ୍ରାପ୍ତ ବରିଷ୍ଠ ପ୍ରଶାସକ ପି. ଭି. ଜୟକୃଷ୍ଣନଙ୍କ ଅଧକ୍ଷତାରେ ସୁପ୍ରିମ୍ କୋର୍ଟ ଦ୍ୱାରା ଗଠିତ ଏକ ଛଅଜଣିଆ କେନ୍ଦ୍ରୀୟ କ୍ଷମତାସମ୍ପନ୍ନ କମିଟି (ସେଣ୍ଟ୍ରାଲ୍ ଏମ୍ପାୱାରଡ କମିଟି) ଡିସେମ୍ବର ୨୦୦୯ ମସିହାରେ ରାଜ୍ୟରେ ଥିବା ସମସ୍ତ ୬୦୨ଟି ଖଣି ସମ୍ପର୍କରେ ଷ୍ଟାଟସ୍ ରିପୋର୍ଟ ମାଗିଥିଲେ । ସେତେବେଳେ ସରକାର ରାଜ୍ୟରେ ୨୭୪ଟି ଖଣି କାର୍ଯ୍ୟକ୍ଷମ ଅଛି, ୧୩୯ଟି ଖଣି ବନ୍ଦ ଅଛି ଓ ୧୮୯ଟି ଖଣି ପୁନଃ ଅନୁମୋଦନ ପାଇଁ ଆବେଦନ କରିଛନ୍ତି ବୋଲି ସୂଚାଇଥିଲେ । ସେତେବେଳର ଖଣି ବିଭାଗ ସଚିବ ଅଶୋକ ଦଲୱାଇ ୧୦ଟି ଖଣିର ମାଲିକମାନେ ବେନିୟମ କାର୍ଯ୍ୟ କରିଛନ୍ତି ବୋଲି କେନ୍ଦ୍ରୀୟ କ୍ଷମତାସମ୍ପନ୍ନ କମିଟି ସମ୍ମୁଖରେ ସ୍ୱୀକାର କରିଥିଲେ । ବଡ ଆଶ୍ଚର୍ଯ୍ୟର କଥା ଯେଉଁ ୧୮୯ଟି ଖଣି ମାଲିକ ନିଜ ଖଣି ଲିଜ୍ ଅବଧି ପୂରିଯାଇଥିବାରୁ ସରକାରଙ୍କ ପାଖରେ ଲିଜ୍‌ର ନବୀକରଣ ପାଇଁ ଆବେଦନ କରିଥିଲେ ସେମାନଙ୍କ ମଧ୍ୟରୁ ୧୬୦ଟି ଖଣି ମାଲିକ ସରକାରଙ୍କର କୌଣସି ଅନୁମୋଦନ ବିନା ଖଣିଜ ପଦାର୍ଥ ଉତ୍ତୋଳନ କରି ବିଦେଶକୁ ରପ୍ତାନୀ କରୁଥିଲେ ଏବଂ ସରକାର ସେମାନଙ୍କ ବିରୁଦ୍ଧରେ କୌଣସି ଆଇନଗତ ପଦକ୍ଷେପ ଗ୍ରହଣ କରିନଥିଲେ ।

ଓଡିଶା ଭଳି ପଡୋଶୀ ରାଜ୍ୟ ଝାଡଖଣ୍ଡରେ ମଧ ଖଣିଜ ସମ୍ପଦର ବ୍ୟାପକ ହରିଲୁଟ୍ ହୋଇଥିବାର ଅଭିଯୋଗ ହେଲାପରେ ସେଠାକାର ସରକାର ରାଜ୍ୟ ଭିଜିଲାନ୍ସ ଦ୍ୱାରା ତଦନ୍ତ କରାଇଥିଲେ । ପରେ କେତେଜଣ ଦୃଢମନା ସମାଜସେବୀ ଝାଡଖଣ୍ଡର ହାଇକୋର୍ଟରେ ଭିଜିଲାନ୍ସ ବଦଳରେ ସି.ବି.ଆଇ. ତଦନ୍ତ ପାଇଁ ନିର୍ଦ୍ଦେଶ ଦେବାକୁ ଆବେଦନ କରିଥିଲେ ଏବଂ ଝାଡଖଣ୍ଡ ହାଇକୋର୍ଟ ଏହି ଆବେଦନକୁ ବିଚାରକୁ ନେଇ ସି.ବି.ଆଇ. ତଦନ୍ତ ପାଇଁ ନିର୍ଦ୍ଦେଶ ଦେବାଦ୍ୱାରା ସି.ବି.ଆଇ. ୨୦୧୦ ଅଗଷ୍ଟ ମାସରୁ ତଦନ୍ତ ଆରମ୍ଭ କରି ରାଜ୍ୟର ମୁଖ୍ୟମନ୍ତ୍ରୀ ମଧୁ କୋଡା, ମନ୍ତ୍ରୀ ବିନୋଦ ସିହ୍ନା ଓ ସଂଜୟ ଚୌଧରୀଙ୍କୁ ଗିରଫ କରି ରାଞ୍ଚିର ଜେଲ୍‌ରେ ରଖିଛି । ଓଡିଶା ହାଇକୋର୍ଟରେ

ମଧ୍ୟ ଭବାନୀ ଶଙ୍କର ପରିଡା ନାମକ ଜଣେ ବିଶିଷ୍ଟ ସମାଜସେବୀ ଓଡିଶା ଖଣି ଦୁର୍ନୀତିର ତଦନ୍ତ ସି.ବି.ଆଇ. ଦ୍ୱାରା କରାଇବାକୁ ପ୍ରାର୍ଥନା କରିଛନ୍ତି। ଶୁଣାଣି ସମାପ୍ତ ହେବାର ପାଖାପାଖି ୧୦ ମାସ ହେଲାଣି, କିନ୍ତୁ ରାୟ ସଂରକ୍ଷିତ ରହିଛି। ଏହି ମାମଲାରେ ରାଜ୍ୟର ବୃହତ୍ତର ସ୍ୱାର୍ଥ ଜଡିତ ଏବଂ ରାଜ୍ୟ ସରକାରଙ୍କୁ ରାୟ ପ୍ରକାଶ ଡେରି ହେବା ସୁହାଉଛି। ଆମ ରାଜ୍ୟର ହାଇକୋର୍ଟ ନିଜର ନିରପେକ୍ଷତା ଓ ଦୃଢତା ପାଇଁ ଲୋକାଦୃତ, କିନ୍ତୁ କେତେକ କ୍ଷେତ୍ରରେ ବେଳେବେଳେ କାର୍ଯ୍ୟର ଅତ୍ୟଧିକ ଚାପ ଦୃଷ୍ଟିରୁ ଅତ୍ୟନ୍ତ ଜରୁରୀ ମାମଲାର ମଧ୍ୟ ରାୟ ପ୍ରକାଶରେ ବିଳମ୍ବ ଘଟୁଛି। ଏହା ସାଧାରଣ ଲୋକଙ୍କୁ ବ୍ୟଥିତ କରୁଛି। ଆମ ରାଜ୍ୟର ଏହି ଘଡିସନ୍ଧି ମୁହୂର୍ତ୍ତରେ ନ୍ୟାୟପାଳିକା ହିଁ ଭରସା, କାରଣ ସାଧାରଣ ଜନତାଙ୍କର ବିଚାରପତିମାନଙ୍କ ଉପରେ ଅତୁଟ ବିଶ୍ୱାସ ରହିଛି।

ଗତବର୍ଷ ଅଗଷ୍ଟ ମାସରେ ବି.ଜେ.ଡି. ଦଳର ଚାରିଜଣ ବିଧାୟକ ଅନନ୍ତ ଦାସ, ରମାକାନ୍ତ ସେଠ, ରାଜେନ୍ଦ୍ର ଢୋଲକିଆ ଓ ରଘୁରାମ ପଡାଲ୍ କେନ୍ଦୁଝର ଜିଲ୍ଲାରେ ଖଣି ମାଫିଆମାନେ ବେଆଇନ୍ ଭାବେ ଅନେକ ଖଣି ନିଜ ନିୟନ୍ତ୍ରଣକୁ ନେଇ ସରକାରୀ ଆଇନ୍ କାନୁନ୍‌କୁ ଭୃକ୍ଷେପ ନକରି ହଜାର ହଜାର କୋଟି ଟଙ୍କାର ଖଣିଜ ସଂପଦ ଚୋରାଚାଲାଣ କରୁଛନ୍ତି ବୋଲି ଅଭିଯୋଗ କରି ଏହାର ବିଧିବଦ୍ଧ ତଦନ୍ତ ପାଇଁ ମୁଖ୍ୟମନ୍ତ୍ରୀଙ୍କୁ ଚିଠି ଲେଖି ଅନୁରୋଧ କରିଛନ୍ତି। କଂଗ୍ରେସ ଦଳରୁ ବିଧାନସଭା ଆସନ ପାଇଁ ଲଢି ପରାଜିତ ହୋଇଥିବା ସନାତନ ମହାକୁଡ ନାମକ ଜଣେ ବ୍ୟକ୍ତି ତାଙ୍କର ଜଣେ ଦକ୍ଷିଣ ଭାରତୀୟ ବ୍ୟବସାୟୀଙ୍କ ସହାୟତାରେ କେନ୍ଦୁଝରର ୧୦ଟିରୁ ଉର୍ଦ୍ଧ୍ୱ ଖଣି ନିଜ କବ୍‌ଜାରେ ରଖି ଅନ୍ଧାଧୁନ୍ ଲୁଟ୍‌ରେ ଲିପ୍ତ ରହିଛନ୍ତି। କଂଗ୍ରେସ ଦଳର ଦୁଇଜଣ ବିଧାୟକ ନିହାର ରଂଜନ ମହାନନ୍ଦ ଓ ଯୋଗେଶ କୁମାର ସିଂହ ମଧ୍ୟ କେନ୍ଦୁଝର ଜିଲ୍ଲାରେ ଖଣି ଲୁଟ୍ ପଛରେ ଶାସକ ଦଳର କିଛି ରାଜନେତାଙ୍କ ଛତ୍ରଛାୟାତଳେ ସନାତନ ମହାକୁଡ ଓ ତ୍ରିବେଣୀ ଆର୍ଥ ମୁଭର୍ସ୍ ନିଜର ଘରୋଇ ସେନା ଗଠନ କରି ଯୋଡା ଅଞ୍ଚଳକୁ ନିଜ ନିୟନ୍ତ୍ରଣରେ ରଖିଥିବା ଅଭିଯୋଗ ଆଣିଛନ୍ତି। ସନାତନ ମହାକୁଡ ରେଡି ବ୍ରଦର୍ସ୍ ନାମକ ଏକ କମ୍ପାନୀ ଗଠନ କରି ଯେଉଁ ଖଣି ମାଲିକମାନେ ତାଙ୍କ କଥାରେ ରାଜି ହେଉନାହାନ୍ତି ବଳ ପ୍ରୟୋଗ କରି ସେମାନଙ୍କ ଖଣି ବନ୍ଦ କରିଦେଉଛନ୍ତି। ଏହି ଖଣିମାଲିକମାନଙ୍କ ମଧ୍ୟରେ ଓଡିଶା ସରକାରଙ୍କର ଓଡିଶା ମାଇନିଂ କର୍ପୋରେସନର ଯୋଡା ଅଞ୍ଚଳର ବାମେବାରି ନିକଟବର୍ତ୍ତୀ ଦୁଇଟି

ଖଣି ଅନ୍ତର୍ଭୁକ୍ତ। ଷ୍ଟିଲ୍ ଅଥରିଟି ଅଫ୍ ଇଣ୍ଡିଆ ଲିମିଟେଡ୍ (ସେଲ୍) ମଧ୍ୟ ସେ ଅଞ୍ଚଳରେ ନିଜ ଖଣି କାରବାର ବନ୍ଦ ରଖିବାକୁ ବାଧ୍ୟ ହୋଇଛନ୍ତି। ଜିଲ୍ଲା ପ୍ରଶାସନ ରେଡି ବ୍ରଦର୍ସ୍ ଓ ତ୍ରିବେଣୀ ଆର୍ଥ ମୁଭର୍ସ୍‌ର ବେନିୟମ କାର୍ଯ୍ୟାବଳୀ ସମ୍ପର୍କରେ ଅବଗତ ଥିଲେ ମଧ୍ୟ ଭୟଭୀତ ହୋଇ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିପାରୁ ନାହାନ୍ତି। ଜୁଲାଇ ୨୦୧୧ ଶେଷ ସପ୍ତାହରେ ଶାସକ ଓ ବିରୋଧି ଦଳର ୧୫ ଜଣରୁ ଉର୍ଦ୍ଧ୍ୱ ବିଧାୟକ ସନାତନ ମହାକୁଡଙ୍କ ବେଆଇନ୍ ଖଣି କାରବାର ସଂପର୍କରେ ଲିଖିତ ଅଭିଯୋଗ ଆଣିଥିଲେ ମଧ୍ୟ ରାଜ୍ୟର ମୁଖ୍ୟମନ୍ତ୍ରୀ ଅଦ୍ୟାବଧି ରେଡି ବ୍ରଦର୍ସ୍ ବିରୁଦ୍ଧରେ କୌଣସି ଠୋସ୍ ପଦକ୍ଷେପ ଗ୍ରହଣ କରିନାହାନ୍ତି। (ନ୍ୟାସନାଲ ନ୍ୟୁଜ୍ ସର୍ଭିସ୍ ସୂତ୍ରରୁ ପ୍ରାପ୍ତ) ବିଭିନ୍ନ ଦଳର ୮ ଜଣ ବିଧାୟକ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କୁ ଅଗଷ୍ଟ ୨୦୧୧ରେ ଏକ ପତ୍ର ଲେଖି ତ୍ରିବେଣୀ ଆର୍ଥ ମୁଭର୍ସ୍‌ର ପରିଚାଳନା ନିର୍ଦ୍ଦେଶକ ବି. ପ୍ରଭାକରନଙ୍କ ବିରୁଦ୍ଧରେ ରାଜ୍ୟ ଓ କେନ୍ଦ୍ରର ସମସ୍ତ ଆଇନ ଉଲଘଂନ କରିଥିବାରୁ ଦୃଢ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ଅନୁରୋଧ ଜଣାଇଥିଲେ। ଓଡିଶା ଭିଜିଲାନ୍ସ ବିଭାଗ ପ୍ରଭାକରନଙ୍କୁ ଗିରଫ କରିବାକୁ ଚେଷ୍ଟା କରୁଥିଲାବେଳେ ପ୍ରଭାକରନ ଓଡିଶା ହାଇକୋର୍ଟରୁ ଆଗୁଆ ଜାମିନ ନେବାକୁ ସକ୍ଷମ ହୋଇଛନ୍ତି।

ଚଳିତ ମାସ ୩ ତାରିଖ ଦିନ ପ୍ରଧାନମନ୍ତ୍ରୀ ଡକ୍ଟର ମନମୋହନ ସିଂହଙ୍କ ଓଡିଶା ଗସ୍ତ ଅବସରରେ ପ୍ରଦେଶ କଂଗ୍ରେସ୍ କମିଟି ତରଫରୁ ଏକ ନଅ ଦଫା ଦାବୀ ସମ୍ବଳିତ ସ୍ମାରକପତ୍ର ପ୍ରଦାନ କରାଯାଇଅଛି। ଏହି ସ୍ମାରକପତ୍ରରେ ଖଣି ଦୁର୍ନୀତିର ସି.ବି.ଆଇ. ଦ୍ୱାରା ତଦନ୍ତ କରାଇବାକୁ ଦାବୀ ରହିଛି। ପି.ସି.ସି. ମିଡିଆ ଶାଖାର ଅଧ୍ୟକ୍ଷ ପୂର୍ବତନ ମନ୍ତ୍ରୀ ନରସିଂହ ମିଶ୍ର ସୂଚନା ଦେଇଛନ୍ତି ଯେ ପ୍ରଧାନମନ୍ତ୍ରୀ ତାଙ୍କ ବକ୍ତବ୍ୟରେ ସ୍ପଷ୍ଟ ଭାବରେ କହିଛନ୍ତି ଯେ ଯିଏ ବି ଦୁର୍ନୀତିରେ ଲିପ୍ତ ଥିବ ତାକୁ ଦଣ୍ଡିତ କରାଯିବ। ଶାହା କମିଶନ୍ ୮୮ ଜଣିଆ ଏକ ଟିମ୍ ନେଇ ଫେବୃୟାରୀ ମାସରେ ଦ୍ୱିତୀୟଥର ଓଡିଶାକୁ ଆସିବାର ସୂଚନା ମିଳେ। ଏହି କମିଶନ୍‌ର ତଦନ୍ତ ଫଳାଫଳକୁ ରାଜ୍ୟବାସୀ ଉତ୍ସୁକତାର ସହିତ ଅପେକ୍ଷା କରିଛନ୍ତି।

*ସମୟ, ୯.୧.୨୦୧୨*

# ଓଡିଶାକୁ ସ୍ୱତନ୍ତ୍ର ରାଜ୍ୟ ପାହ୍ୟା ପ୍ରସଙ୍ଗ

ଜାନୁଆରୀ ୬ ତାରିଖରେ ଭୁବନେଶ୍ୱରଠାରେ ଯୋଜନା କମିଶନର ଉପାଧ୍ୟକ୍ଷ ମଣ୍ଟେକ୍ ସିଂହ ଆଲୁଓ୍ୱାଲିଆ ସାମ୍ବାଦିକମାନଙ୍କ ପ୍ରଶ୍ନର ଉତ୍ତରରେ ଓଡିଶାକୁ ସ୍ୱତନ୍ତ୍ର ରାଜ୍ୟ ପାହ୍ୟା ମାନ୍ୟତା ଦେବା ନେଇ ଏବେ କେନ୍ଦ୍ର ସରକାରଙ୍କର କୌଣସି ପ୍ରସ୍ତାବ ନାହିଁ ବୋଲି କହି ଓଡିଶାବାସୀଙ୍କୁ ଶକ୍ତ ଆଘାତ ପହଞ୍ଚାଇଛନ୍ତି। ପୂର୍ବରୁ ଡିସେମ୍ବର ମାସରେ ବିହାର ରାଜ୍ୟକୁ ସ୍ୱତନ୍ତ୍ର ରାଜ୍ୟ ପାହ୍ୟା ମାନ୍ୟତା ଦେବାକୁ କେନ୍ଦ୍ର ସରକାର ବିଚାର କରୁଛନ୍ତି ବୋଲି ଖବର ଓଡିଶାବାସୀଙ୍କୁ କ୍ଷୁବ୍ଧ କରିଥିଲା। ଅଦ୍ୟାବଧି ଭାରତର ୨୯ଟି ରାଜ୍ୟ ମଧ୍ୟରୁ ୧୧ଟି ରାଜ୍ୟ ସ୍ୱତନ୍ତ୍ର ରାଜ୍ୟ ପାହ୍ୟା ମାନ୍ୟତା ପାଇସାରିଛନ୍ତି। ସେହି ରାଜ୍ୟଗୁଡିକ ହେଲା- ଆସାମ, ଅରୁଣାଚଳ ପ୍ରଦେଶ, ମଣିପୁର, ମେଘାଳୟ, ତ୍ରିପୁରା, ମିଜୋରାମ, ନାଗାଲାଣ୍ଡ, ସିକିମ, ଉତ୍ତରାଖଣ୍ଡ, ଜାମ୍ମୁ-କାଶ୍ମୀର ଓ ହିମାଚଳ ପ୍ରଦେଶ। ସ୍ୱତନ୍ତ୍ର ରାଜ୍ୟ ପାହ୍ୟା ମାନ୍ୟତା ପାଇବାପାଇଁ କେତେକ ରାଜ୍ୟ ଯଥା- ରାଜସ୍ଥାନ, ମଧ୍ୟପ୍ରଦେଶ, ଗୋଆ, ପଣ୍ଡିଚେରୀ, ଝାଡଖଣ୍ଡ, ଛତିଶଗଡ ମଧ୍ୟ ଦାବିଦାର ଅଛନ୍ତି।

୧୯୬୯ ମସିହାରେ କେନ୍ଦ୍ର ସରକାର 'ଗାଡଗିଲ ଫର୍ମୁଲା' ଅନୁସରଣ କରିବା ପରଠାରୁ ବିଭିନ୍ନ ରାଜ୍ୟ ସ୍ୱତନ୍ତ୍ର ରାଜ୍ୟ ପାହ୍ୟା ମାନ୍ୟତା ପାଇବାକୁ ଦାବି କରୁଛନ୍ତି । ୧୯୭୯ ମସିହାରେ ଓଡିଶାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ନୀଳମଣି ରାଉତରାୟ ପ୍ରଥମେ କେନ୍ଦ୍ର ସରକାରଙ୍କ ନିକଟରେ ଓଡିଶାକୁ ସ୍ୱତନ୍ତ୍ର ରାଜ୍ୟ ପାହ୍ୟା ଦେବାକୁ ଦାବି କରିଥିଲେ। ତାହାପରଠାରୁ ଓଡିଶା ସରକାର ବହୁଥର ସ୍ୱତନ୍ତ୍ର ରାଜ୍ୟ ପାହ୍ୟା ମାନ୍ୟତା ପାଇବା ପାଇଁ କେନ୍ଦ୍ରକୁ ଅନୁରୋଧ ଜଣାଇ ଆସୁଛନ୍ତି। ୨୦୦୧ ମସିହାରେ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ପ୍ରଧାନମନ୍ତ୍ରୀ ଅଟଳବିହାରୀ ବାଜପେୟୀଙ୍କୁ ବ୍ୟକ୍ତିଗତ ଭାବରେ ଓଡିଶାକୁ ସ୍ୱତନ୍ତ୍ର ରାଜ୍ୟ ପାହ୍ୟା ମାନ୍ୟତା ପ୍ରଦାନ କରିବାକୁ ଅନୁରୋଧ କରିଥିଲେ। ସେତେବେଳେ ଯଦି ସେ ଦୃଢତାର ସହିତ ଏହି ପ୍ରସଙ୍ଗ ଉପରେ ଗୁରୁତ୍ୱ ଦେଇଥାନ୍ତେ ବୋଧହୁଏ ଆମ ରାଜ୍ୟ ସ୍ୱତନ୍ତ୍ର ରାଜ୍ୟ ପାହ୍ୟା ମାନ୍ୟତା ପାଇବାରେ ସକ୍ଷମ ହୋଇଥାନ୍ତା। ୨୦୦୧ ମସିହା ପରଠାରୁ ନବୀନ ସରକାରଙ୍କ ତରଫରୁ

କେନ୍ଦ୍ରର ଏନ୍.ଡି.ଏ. ଓ ୟୁ.ପି.ଏ. ସରକାରଙ୍କ ନିକଟରେ ଏ ସଂକ୍ରାନ୍ତରେ ବାରମ୍ବାର ଦାବୀ କରାଯାଉଛି। ମୁଖ୍ୟମନ୍ତ୍ରୀ ବିଭିନ୍ନ ସମୟରେ ଜାତୀୟ ଯୋଜନା କମିଶନଙ୍କ ବାର୍ଷିକ ଯୋଜନା ଆଲୋଚନାରେ ଏବଂ ଜାତୀୟ ବିକାଶ ପରିଷଦ ବୈଠକମାନଙ୍କରେ ମଧ୍ୟ ଏହି ପ୍ରସଙ୍ଗ ଉଠାଇଛନ୍ତି। ୨୨ ଅକ୍ଟୋବର ୨୦୧୧ରେ ନୂଆଦିଲ୍ଲୀଠାରେ ପ୍ରଧାନମନ୍ତ୍ରୀ ମନମୋହନ ସିଂହଙ୍କ ଅଧ୍ୟକ୍ଷତାରେ ୫୬ ତମ ଜାତୀୟ ବିକାଶ ପରିଷଦ ବୈଠକ ଅନୁଷ୍ଠିତ ହେଉଥିବାବେଳେ ଆମ ମୁଖ୍ୟମନ୍ତ୍ରୀ ଓଡିଶାକୁ ସ୍ୱତନ୍ତ୍ର ରାଜ୍ୟ ପାହ୍ୟା ମାନ୍ୟତା ଦେବାପାଇଁ ଦାବି ଉପସ୍ଥାପନ କରିଥିଲେ। ୨୪ ନଭେମ୍ବର ୨୦୧୧ରେ ମୁଖ୍ୟମନ୍ତ୍ରୀ ପ୍ରଧାନମନ୍ତ୍ରୀଙ୍କୁ ଏକ ପତ୍ର ଲେଖି ଓଡିଶାକୁ ସ୍ୱତନ୍ତ୍ର ରାଜ୍ୟ ପାହ୍ୟା ମାନ୍ୟତା ଦେବାକୁ ଅନୁରୋଧ କରିଛନ୍ତି। ଚଳିତମାସ ୩ ତାରିଖରେ କିଟ୍ ବିଶ୍ୱବିଦ୍ୟାଳୟ ପରିସରରେ ଅନୁଷ୍ଠିତ ହୋଇଥିବା ଭାରତୀୟ ବିଜ୍ଞାନ କଂଗ୍ରେସର ଉଦ୍‌ଘାଟନୀ ଉତ୍ସବ ଅବସରରେ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ପ୍ରଧାନମନ୍ତ୍ରୀଙ୍କୁ ଏକ ସ୍ମାରକପତ୍ର ଦେଇ ଓଡିଶାକୁ ସ୍ୱତନ୍ତ୍ର ରାଜ୍ୟ ପାହ୍ୟା ମାନ୍ୟତା ଦେବାକୁ ପୁନର୍ବାର ଅନୁରୋଧ ଜଣାଇଛନ୍ତି। ପୂର୍ବରୁ ଆମ ରାଜ୍ୟର ସାଂସଦମାନେ ଲୋକସଭାରେ ଏହି ପ୍ରସଙ୍ଗରେ ଦାବୀ ଉଠାଇଛନ୍ତି। ରାଜ୍ୟ ବିଧାନସଭାରେ ମଧ୍ୟ ଓଡିଶା ସ୍ୱତନ୍ତ୍ର ରାଜ୍ୟ ପାହ୍ୟା ମାନ୍ୟତା ଦାବି ପାରିତ ହୋଇ କେନ୍ଦ୍ରକୁ ଜଣାଇ ଦିଆଯାଇଛି। କିନ୍ତୁ ଏତେସବୁ ଅନୁନୟ, ବିନୟ ଓ ଦାବୀ ପରେ କେନ୍ଦ୍ର ସରକାର ରାଜ୍ୟର ନ୍ୟାଯ୍ୟ ଦାବି ପ୍ରତି କର୍ଣ୍ଣପାତ ନ କରିବା ଦୁର୍ଭାଗ୍ୟଜନକ।

ଆମ ରାଜ୍ୟ ସରକାରଙ୍କ ଦୁର୍ବଳତା ହେଲା ବିହାରର ମୁଖ୍ୟମନ୍ତ୍ରୀ ନୀତିଶ କୁମାର ଯେଉଁଳି ଆନ୍ତରିକତାର ସହିତ ପରିଶ୍ରମ କରି କେନ୍ଦ୍ର ସରକାରଙ୍କ ନିକଟରେ ତଥ୍ୟ ସମ୍ବଳିତ ଦସ୍ତାବିଜମାନ ପେଶ୍ କରୁଛନ୍ତି ଏବଂ ଦୃଢ ଯୁକ୍ତିମାନ ଦର୍ଶାଇ ନିଜ ରାଜ୍ୟର ଦାବିକୁ ବୁଝାଇବାକୁ ସମର୍ଥ ହେଉଛନ୍ତି ତାହା ଆମ ରାଜ୍ୟ ସରକାର କରିପାରୁ ନାହାନ୍ତି। ଏଠାରେ ଗୋଟିଏ ଉଦାହରଣ ଦେଲେ ଯଥେଷ୍ଟ ହେବ। ମୁଖ୍ୟମନ୍ତ୍ରୀ ନୀତିଶ କୁମାର 'ସ୍ପେସିଆଲ କାଟେଗୋରି ଷ୍ଟାଟସ୍: ଏ କେସ୍ ଫର୍ ବିହାର' ନାମକ ଏକ ପୁସ୍ତକ ରଚନା କରିଛନ୍ତି। ଏହି ପୁସ୍ତକଟିକୁ ୧୫ ମେ' ୨୦୦୯ ଦିନ ବିଶ୍ୱର ଖ୍ୟାତନାମା ଅର୍ଥନୀତିଜ୍ଞ ଲର୍ଡ ମେଘନାଦ ଦେଶାଇ ଲୋକାର୍ପିତ କରିଥିଲେ। ଏହି ପୁସ୍ତକଟି ଦିଲ୍ଲୀରେ ଅନେକଙ୍କୁ ବିଶେଷ କରି ପ୍ରଧାନମନ୍ତ୍ରୀଙ୍କୁ ପ୍ରଭାବିତ କରିଥିଲା ଏବଂ ତା'ପରଠାରୁ ବିହାରକୁ ସ୍ୱତନ୍ତ୍ର ରାଜ୍ୟ ପାହ୍ୟା ମାନ୍ୟତା ଦେବାକୁ କେନ୍ଦ୍ର ସରକାର ମାନସିକ ସ୍ତରରେ ପ୍ରାୟତଃ ସ୍ଥିର କରିଛନ୍ତି। ଆମ ରାଜ୍ୟ ସରକାର କେନ୍ଦ୍ର

ସରକାର ଆମ ପ୍ରତି ବୈମାତୃକ ମନୋଭାବ ପୋଷଣ କରୁଛନ୍ତି ବୋଲି ବାରମ୍ବାର କହିବା ଦ୍ୱାରା କୌଣସି ସୁଫଳ ମିଳିବ ନାହିଁ। ଆମ ରାଜ୍ୟର ଯୋଜନା ବୋର୍ଡ ଏକ ସ୍ଥାଣୁ ସଂସ୍ଥାରେ ପରିଣତ ହୋଇଛି। ଏବେ ମଧ୍ୟ ବେଳ ଅଛି ସରକାର ଖ୍ୟାତନାମା ଅର୍ଥନୀତିଜ୍ଞ ଓ ବୁଦ୍ଧିଜୀବୀମାନଙ୍କୁ ନେଇ ଏକ କମିଟି ଗଠନ କରି ବିହାର ମୁଖ୍ୟମନ୍ତ୍ରୀଙ୍କ ପରି ଏକ ଦସ୍ତାବିଜ ପ୍ରସ୍ତୁତ କରନ୍ତୁ, ଯେଉଁଥିରେ କି ଆମ ରାଜ୍ୟ ସ୍ୱତନ୍ତ୍ର ରାଜ୍ୟ ପାହ୍ୟା ମାନ୍ୟତା ପାଇବା ପାଇଁ ଅକାଟ୍ୟ ଯୁକ୍ତିମାନ ଦର୍ଶାଯାଇପାରିବ।

ସ୍ୱତନ୍ତ୍ର ରାଜ୍ୟ ପାହ୍ୟା ମାନ୍ୟତା ପାଇଲେ ରାଜ୍ୟ ବହୁ ଆର୍ଥିକ ସୁବିଧା ଉପଭୋଗ କରିବ ଏଥିରେ ସନ୍ଦେହ ନାହିଁ। ସମସ୍ତେ ଜାଣନ୍ତି ଯେ କେନ୍ଦ୍ର ଆୟର ୪୫ ଭାଗ ଅର୍ଥ ରାଜ୍ୟମାନଙ୍କୁ ବଣ୍ଟାଯାଇଥାଏ ଏବଂ ଏହି ୪୫ ଭାଗ ଅର୍ଥରୁ ୩୦ ପ୍ରତିଶତ ସ୍ୱତନ୍ତ୍ର ରାଜ୍ୟ ପାହ୍ୟା ମାନ୍ୟତା ପାଇଥିବା ରାଜ୍ୟମାନଙ୍କୁ ଦିଆଯାଏ। ଅନ୍ୟ ଗୋଟିଏ ବଡ ଲାଭ ହେଉଛି କେନ୍ଦ୍ରରୁ ଯୋଜନା ବାବଦରେ ମିଳୁଥିବା ଆର୍ଥିକ ସାହାଯ୍ୟର ଋଣ ଓ ଅନୁଦାନର ଅନୁପାତରେ ସାଧାରଣ ରାଜ୍ୟଗୁଡିକ ତୁଳନାରେ ସ୍ୱତନ୍ତ୍ର ରାଜ୍ୟ ପାହ୍ୟା ମାନ୍ୟତା ପାଇଥିବା ରାଜ୍ୟଗୁଡିକର ତାରତମ୍ୟ ଆଖିଦୃଶିଆ। ସାଧାରଣ ରାଜ୍ୟଗୁଡିକରେ ଏହି ଅନୁପାତ ୭୦:୩୦ ଥିଲାବେଳେ ସ୍ୱତନ୍ତ୍ର ରାଜ୍ୟ ପାହ୍ୟା ମାନ୍ୟତା ପାଇଥିବା ରାଜ୍ୟଗୁଡିକରେ ଏହି ଅନୁପାତ ୯୦:୧୦। ଅର୍ଥାତ୍ ବିଭିନ୍ନ ନୂତନ ଯୋଜନା ଗୁଡିକ ପାଇଁ କେନ୍ଦ୍ରରୁ ଯେଉଁ ଅନୁଦାନ ଆସେ ସେଥିରେ ପ୍ରତି ୧୦୦ ଟଙ୍କାରେ ରାଜ୍ୟର ମ୍ୟାଚିଙ୍ଗ୍ ସେୟାର ୩୦ ଟଙ୍କା ଥିଲାବେଳେ କେନ୍ଦ୍ର ଦେଇଥାଏ ୭୦ ଟଙ୍କା, କିନ୍ତୁ ସ୍ୱତନ୍ତ୍ର ରାଜ୍ୟ ପାହ୍ୟା ମାନ୍ୟତା ପାଇଥିବା ରାଜ୍ୟମାନଙ୍କ କ୍ଷେତ୍ରରେ ରାଜ୍ୟ ମାତ୍ର ୧୦ ଟଙ୍କା ଦେଉଥିବା ସ୍ଥଳେ କେନ୍ଦ୍ର ଦେଇଥାଏ ୯୦ ଟଙ୍କା ସହାୟତା। ଆହୁରି ଅନେକ ଯୋଜନା ରହିଛି ଯେଉଁଥିରେ କି କେନ୍ଦ୍ର ଶତକଡା ୧୦୦ ଭାଗ ଅନୁଦାନ ଦେଇଥାଏ। ସ୍ୱତନ୍ତ୍ର ରାଜ୍ୟ ପାହ୍ୟା ମାନ୍ୟତା ପାଇଥିବା ରାଜ୍ୟର ଚାଷୀମାନଙ୍କୁ ସବୁ କ୍ଷେତ୍ରରେ ଅଧିକ ସବ୍‌ସିଡି ମିଳିଥାଏ ଓ ଚାଷ କାର୍ଯ୍ୟ ପାଇଁ ଋଣ ନେଲେ ଖୁବ୍ କମ୍ ହାରରେ ସୁଧ ଦେବାକୁ ପଡେ। ସେହି ରାଜ୍ୟଗୁଡିକର ବରିଷ୍ଠ ନାଗରିକ, ଦରିଦ୍ର ମହିଳା ଓ ଭିନ୍ନକ୍ଷମମାନେ କେନ୍ଦ୍ରର ବିଭିନ୍ନ ମନ୍ତ୍ରଣାଳୟରୁ ସ୍ୱତନ୍ତ୍ର ସୁବିଧା ପାଇଥାନ୍ତି ଏବଂ ଯୁବଦ୍ୟୋଗୀମାନେ ଉଦ୍ୟୋଗ ପ୍ରତିଷ୍ଠା କରିବାକୁ କେନ୍ଦ୍ରରୁ ନାମମାତ୍ର ସୁଧରେ ଋଣ ପାଇବାକୁ ସକ୍ଷମ ହୋଇଥାନ୍ତି। ସ୍ୱତନ୍ତ୍ର ରାଜ୍ୟ ପାହ୍ୟା ମାନ୍ୟତା ପାଇଥିବା ରାଜ୍ୟଗୁଡିକରେ ଯେଉଁମାନେ ଶିଳ୍ପ ପ୍ରତିଷ୍ଠା କରନ୍ତି ସେମାନେ ଉତ୍ପାଦନ ଶୁଳ୍କ

(ଏକ୍‌ସାଇଜ୍ ଡ୍ୟୁଟି)ରେ ମଧ୍ୟ ରିହାତି ପାଇଥାନ୍ତି। ଆମ ରାଜ୍ୟ ଯଦି ସ୍ୱତନ୍ତ୍ର ରାଜ୍ୟ ପାହ୍ୟା ମାନ୍ୟତା ପାଏ ତେବେ ଅଧିକ ସଂଖ୍ୟକ ଶିଳ୍ପପତି ଏଠାରେ ଶିଳ୍ପ ପ୍ରତିଷ୍ଠା କରିବାକୁ ଆଗଭର ହେବେ, କିନ୍ତୁ କେନ୍ଦ୍ରର ସେଥିପ୍ରତି ନଜର ନାହିଁ। ସ୍ୱତନ୍ତ୍ର ରାଜ୍ୟ ପାହ୍ୟା ମାନ୍ୟତା ପାଇଥିବା ରାଜ୍ୟଗୁଡିକର ବିଭିନ୍ନ ସୁବିଧାସୁଯୋଗର ତାଲିକା ବହୁତ ଲମ୍ୱା ହେବ। ତେଣୁକରି ଅନେକ ରାଜ୍ୟ ଏବେ ସ୍ୱତନ୍ତ୍ର ରାଜ୍ୟ ପାହ୍ୟା ମାନ୍ୟତା ପାଇବାକୁ ଦାବୀ କରୁଛନ୍ତି। ଗୋଆର ଅଭିବୃଦ୍ଧି ଦେଶର ବହୁ ରାଜ୍ୟଙ୍କଠାରୁ ଅଧିକ ଥିଲେ ମଧ୍ୟ ସ୍ୱତନ୍ତ୍ର ରାଜ୍ୟ ପାହ୍ୟା ମାନ୍ୟତା ପାଇବାକୁ ସେମାନେ ଦାବି କରୁଛନ୍ତି।

ଓଡିଶା ଭାରତର ଦରିଦ୍ରତମ ରାଜ୍ୟ। ପ୍ରତ୍ୟେକ ବର୍ଷ ବନ୍ୟା, ବାତ୍ୟା ଓ ମରୁଡି ଦ୍ୱାରା ପ୍ରପୀଡିତ। ଓଡିଶାରେ ୪୮ ଲକ୍ଷ ପରିବାର ଦାରିଦ୍ର୍ୟ ସୀମାରେଖା ତଳେ ରହିଛନ୍ତି ବୋଲି ସରକାରୀ ହିସାବରୁ ଜଣାପଡେ। ଓଡିଶାରେ କୃଷି ଉତ୍ପାଦନ ପ୍ରାୟ ସ୍ଥାଣୁ ଅବସ୍ଥାରେ ଅଛି। କୃଷକମାନେ ଋଣଗ୍ରସ୍ତ ହୋଇ ଆତ୍ମହତ୍ୟା କରିବାକୁ ବାଧ୍ୟ ହେଉଛନ୍ତି। ଦେଶର ଜନସଂଖ୍ୟାର ୪ ପ୍ରତିଶତ ଲୋକ ଓଡିଶାରେ ରୁହନ୍ତି। କିନ୍ତୁ କେନ୍ଦ୍ରୀୟ ଅନୁଦାନ ପ୍ରାପ୍ତିରେ ଓଡିଶାର ଭାଗ ୧ ପ୍ରତିଶତରୁ କମ୍। ଆମ ରାଜ୍ୟରେ ବର୍ଷକୁ ପ୍ରାୟ ୨୦ ଲକ୍ଷ ଦରିଦ୍ର ଲୋକ ରାଜ୍ୟ ବାହାରକୁ ଦାଦନ ଖଟିବାକୁ ଯାଆନ୍ତି। ଯେଉଁ ରାଜ୍ୟଗୁଡିକ ସ୍ୱତନ୍ତ୍ର ରାଜ୍ୟ ପାହ୍ୟା ମାନ୍ୟତା ପାଇଛନ୍ତି ସେହି ରାଜ୍ୟର ଲୋକମାନଙ୍କର ଆର୍ଥିକ ସ୍ଥିତି ଓଡିଶା ଲୋକମାନଙ୍କଠାରୁ ଢେର ସ୍ୱଚ୍ଛଳ। ଏସବୁ ସତ୍ତ୍ୱେ ଓଡିଶାକୁ ସ୍ୱତନ୍ତ୍ର ରାଜ୍ୟ ପାହ୍ୟା ମାନ୍ୟତା ଦେବାକୁ କେନ୍ଦ୍ର ସରକାର କୁଣ୍ଠିତ। ଅଥଚ କେନ୍ଦ୍ର ସରକାର ମମତା ବାନାର୍ଜୀଙ୍କୁ ସନ୍ତୁଷ୍ଟ କରିବାକୁ 'ବେଙ୍ଗଲ ପ୍ୟାକେଜ' ନାମରେ ପଶ୍ଚିମବଙ୍ଗ ପାଇଁ ୮ ହଜାର ୬ ଶହ କୋଟି ଟଙ୍କାର ସ୍ୱତନ୍ତ୍ର ସହାୟତା ଘୋଷଣା କରିଛନ୍ତି।

କୁହାଯାଉଛି ଯେ, ଆମ ରାଜ୍ୟ ଅନ୍ତର୍ଜାତୀୟ ସୀମା ସହିତ ସଂଲଗ୍ନ ନ ଥିବାରୁ ସ୍ୱତନ୍ତ୍ର ରାଜ୍ୟ ପାହ୍ୟା ମାନ୍ୟତା ପାଇବା ପାଇଁ ଆମେ ହକ୍‌ଦାର ନୁହଁ। କିନ୍ତୁ ଜଳପଥ ଦ୍ୱାରା ଆମ ରାଜ୍ୟ ବଙ୍ଗଳାଦେଶ ସହିତ ସଂଲଗ୍ନ। କେନ୍ଦ୍ର ସରକାରଙ୍କର ସ୍ୱରାଷ୍ଟ୍ର ମନ୍ତ୍ରଣାଳୟ ସ୍ୱତନ୍ତ୍ର ରାଜ୍ୟ ପାହ୍ୟା ମାନ୍ୟତା ପାଇବା ଯୋଗ୍ୟତାର ମାନଦଣ୍ଡ ପ୍ରସ୍ତୁତ କରିଛନ୍ତି। ସେମାନେ ଭାରତରତ୍ନ କେଉଁ ଆଧାରରେ ପ୍ରଦାନ କରାଯିବ ତାହା ମଧ୍ୟ ସ୍ଥିର କରିଥିଲେ, କିନ୍ତୁ କିଛିଦିନ ତଳେ ଲୋକମତର ଚାପରେ କ୍ରୀଡାବିତମାନଙ୍କୁ

ଭାରତରତ୍ନ ଦେବାକୁ ସ୍ଥିର କଲେଣି। ବର୍ତ୍ତମାନ ସ୍ୱରାଷ୍ଟ୍ର ବିଭାଗ ସ୍ୱତନ୍ତ୍ର ରାଜ୍ୟ ପାହ୍ୟା ମାନ୍ୟତା ଦେବାପାଇଁ ପ୍ରସ୍ତୁତ କରିଥିବା ମାନଦଣ୍ଡକୁ ପରିବର୍ତ୍ତନ କରନ୍ତୁ।

ଓଡିଶାର ମୁଖ୍ୟମନ୍ତ୍ରୀ ବାରମ୍ବାର ପ୍ରଧାନମନ୍ତ୍ରୀଙ୍କୁ ଓଡିଶାକୁ ସ୍ୱତନ୍ତ୍ର ରାଜ୍ୟ ପାହ୍ୟା ମାନ୍ୟତା ଦେବାର କେବଳ ଦାବି ନରଖି ବିହାର ରାଜ୍ୟର ମୁଖ୍ୟମନ୍ତ୍ରୀ ନୀତିଶ କୁମାରଙ୍କ ଭଳି ଏକ ତଥ୍ୟପୂର୍ଣ୍ଣ ଦସ୍ତାବିଜ ପ୍ରସ୍ତୁତ କରନ୍ତୁ। ଏଥିପାଇଁ ସେ କେବଳ ରାଜ୍ୟର ପ୍ରଶାସନିକ ଅଧିକାରୀମାନଙ୍କ ଉପରେ ଦାୟିତ୍ୱ ନ୍ୟସ୍ତ ନକରି ଅର୍ଥନୀତିଜ୍ଞ, ଶିକ୍ଷାବିତ୍ ଓ ନାଗରିକ ସମାଜର ପ୍ରତିନିଧିମାନଙ୍କୁ ନେଇ ଏକ କମିଟି ଗଠନ କରନ୍ତୁ। ନଚେତ୍ 'ପ୍ରାଇସ୍ ୱାଟର ହାଉସ୍' କିମ୍ବା ଅନ୍ୟ ଯେକୌଣସି କନ୍‌ସଲଟାନ୍‌ସି ଏଜେନ୍ସିକୁ ଏହି ଦାୟିତ୍ୱ ଅର୍ପଣ କରନ୍ତୁ ଏବଂ ଓଡିଶା ସ୍ୱତନ୍ତ୍ର ରାଜ୍ୟ ପାହ୍ୟା ମାନ୍ୟତା ପାଇବାର ଜରୁରୀ ଆବଶ୍ୟକତା ସମ୍ପର୍କରେ ଭାରତ ସରକାରଙ୍କଠାରେ ଦାବୀ ରଖନ୍ତୁ। ସ୍ୱରାଷ୍ଟ୍ର ମନ୍ତ୍ରଣାଳୟ ସ୍ଥିର କରିଥିବା ମାନଦଣ୍ଡର ପରିବର୍ତ୍ତନ ପାଇଁ ଚାପ ସୃଷ୍ଟି କରାଯାଉ। ନଚେତ୍ ଓଡିଶା ଯେଉଁ ତିମିରରେ ଅଛି ସେହି ତିମିରରେ ରହିଯିବ।

*ଖବର, ୧୨.୧.୨୦୧୨*

# ପିପିଲି ଗଣଧର୍ଷଣ : ଏକ ଅନୁଚିନ୍ତା

ଓଡିଶାର ମୁଖ୍ୟମନ୍ତ୍ରୀ ଚଳିତ ମାସ ୧୯ ତାରିଖରେ ମନ୍ତ୍ରୀ ପ୍ରଦୀପ ମହାରଥୀଙ୍କ ଇସ୍ତଫା ଗ୍ରହଣ କରିନେଇଥିବାରୁ ସେ ନିଜର ଲୋକପ୍ରିୟତା ବଜାୟ ରଖିଛନ୍ତି ଏବଂ ଜନମତକୁ ଯେ ସମ୍ମାନ ଦିଅନ୍ତି ତାହା ପ୍ରମାଣିତ ହୋଇଛି । ୨୮ ନଭେମ୍ବର ୨୦୧୧ରେ ପିପିଲି ଥାନା ଅନ୍ତର୍ଗତ ଅର୍ଜୁନଗୋଦା ଗ୍ରାମର ବାବୁଲି ବେହେରାଙ୍କ ଝିଅ ବବିନା ବେହେରାଙ୍କ ପ୍ରତି ହୋଇଥିବା ଗଣବଳାତ୍କାର ଘଟଣାଟି ଓଡିଶାର ଜନମାନସକୁ ଶକ୍ତ ଧକ୍କା ପହଁଚାଇଛି । ପିପିଲି ଥାନାର ତତ୍କାଳୀନ ଆଇ.ଆଇ.ସି. ଅନିଲ ଚମ୍ପତିରାୟଙ୍କ କର୍ତ୍ତବ୍ୟରେ ଅବହେଳା ଓ ବେପରୁଆ ମନୋଭାବ ଯୋଗୁଁ କେବଳ ପୋଲିସ ପ୍ରଶାସନ ନୁହେଁ ରାଜ୍ୟ ସରକାର ମଧ୍ୟ ନିନ୍ଦିତ ହୋଇଛନ୍ତି । ଭାରତରେ ମହିଳାମାନଙ୍କ ପ୍ରତି ନିର୍ଯ୍ୟାତନା ଘଟଣା ବୃଦ୍ଧି ପାଇବାରେ ଲାଗିଛି । ଏକ ପ୍ରକାଶିତ ତଥ୍ୟରୁ ଜଣାଯାଇଛି ଯେ ଦେଶରେ ପ୍ରତି ଏକ ଘଣ୍ଟାରେ ୨ଟି ବଳାତ୍କାର, ଗୋଟିଏ ଯୌତୁକଜନିତ ମୃତ୍ୟୁ ଓ ୪ଟି ଉତ୍ପୀଡନ ବା ଅସଦାଚରଣ ଘଟଣା ଘଟୁଛି । ଦେଶରେ ସାମାଜିକ ମୂଲ୍ୟବୋଧ ଓ ନୈତିକତାର ଅବକ୍ଷୟ ଯେ ଦ୍ରୁତଗତିରେ ଘଟିବାରେ ଲାଗିଛି ଉପରୋକ୍ତ ତଥ୍ୟ ଏହା ସୁଚାଇଦିଏ ।

ନିକଟ ଅତୀତରେ କଂଗ୍ରେସ ଶାସିତ ରାଜ୍ୟ ରାଜସ୍ଥାନରେ ଭନୱାରୀ ଦେବୀ ଧର୍ଷଣ ଓ ହତ୍ୟାକାଣ୍ଡ ଯେଭଳି ରାଜସ୍ଥାନ ପୋଲିସର ଅପାରଗତାକୁ ପଦାରେ ପକାଇଥିଲା, ବର୍ତ୍ତମାନ ବବିନା ବେହେରା ଗଣଧର୍ଷଣ ସେହିଭଳି ଓଡିଶା ପୋଲିସ ପ୍ରଶାସନକୁ କାଠଗଡାରେ ଠିଆ କରାଇଛି । ରାଜସ୍ଥାନ ଘଟଣାରେ ମୁଖ୍ୟମନ୍ତ୍ରୀ ଅଶୋକ ଗେହଲଟ ଯେଭଳି ସେଠାକାର ମନ୍ତ୍ରୀ ମହୀପାଲ ମାଦରନାଙ୍କୁ ଗତବର୍ଷ ଅକ୍ଟୋବର ୧୬ ତାରିଖରେ ବହିଷ୍କାର କରିଥିଲେ ଓ ପରେ ଡିସେମ୍ବର ୨ ତାରିଖରେ ସି.ବି.ଆଇ. ମାଦରନାଙ୍କୁ ଗିରଫ କରିଥିଲା ଏବଂ କଂଗ୍ରେସ ବିଧାୟକ ମାଲକାନ ସିଂହ ଇସ୍ତଫା ଦେଇଛନ୍ତି ଓ ଡିସେମ୍ବର ୧୯ ତାରିଖରେ ସି.ବି.ଆଇ. ଦ୍ୱାରା ଗିରଫ ହୋଇ ତଦନ୍ତର ସମ୍ମୁଖୀନ ହୋଇଛନ୍ତି, ସେହିପରି ଆମ ରାଜ୍ୟର ପିପିଲି ଗଣଧର୍ଷଣ ଘଟଣାରେ ରାଜ୍ୟର କୃଷି ମନ୍ତ୍ରୀ ପ୍ରଦୀପ ମହାରଥୀ ମଧ୍ୟ ମନ୍ତ୍ରୀମଣ୍ଡଳରୁ ବିଦା ହୋଇଛନ୍ତି । ଭବିଷ୍ୟତରେ

ସି.ଆଇ.ଡି. ତଦନ୍ତର ମୋଡ କି ରୂପ ନେବ ସେଥିପାଇଁ ଜନସାଧାରଣଙ୍କର ଆଗ୍ରହ ବଢିଚାଲିଛି। ବିଭିନ୍ନ ରାଜନୈତିକ ଦଳ, ଯୁବ ସଂଗଠନ, ଛାତ୍ରସମାଜ ଓ ନାଗରିକ ସମାଜଗୁଡିକ ପିପିଲି ଘଟଣାର ସି.ବି.ଆଇ. ତଦନ୍ତ ହେଉ ବୋଲି ଅଡି ବସିଛନ୍ତି । ଏଠାରେ କୁହାଯାଇପାରେ ଯେ ଆମ ମୁଖ୍ୟମନ୍ତ୍ରୀ ଓଡିଶାରେ ଗତ ୩ ବର୍ଷ ମଧ୍ୟରେ ହୋଇଥିବା ବଳାତ୍କାର ମାମଲାଗୁଡିକର ସମୀକ୍ଷା କଲେ ପୋଲିସର ତ୍ରୁଟିବିଚ୍ୟୁତି ସମ୍ପର୍କରେ ଅବଗତ ହୋଇପାରିବେ ଏବଂ ତାକୁ ସୁଧାରିବାକୁ ସୁପ୍ରିମକୋର୍ଟ ଦେଇଥିବା ନିର୍ଦ୍ଦେଶାବଳୀ ଅନୁସାରେ କାର୍ଯ୍ୟ କରିବାକୁ ପଦକ୍ଷେପ ନେବେ।

ଏକ ପ୍ରକାଶିତ ତଥ୍ୟରୁ ଜଣାପଡେ ଯେ ଗତ ୨୦୦୮ ମସିହାରୁ ୨୦୧୦ ପର୍ଯ୍ୟନ୍ତ ତିନି ବର୍ଷ ମଧ୍ୟରେ ରାଜ୍ୟରେ ୩ ହଜାରରୁ ଅଧିକ ମହିଳା ଧର୍ଷଣର ଶିକାର ହୋଇଥିବା ପୋଲିସ ଥାନାମାନଙ୍କରେ ରିପୋର୍ଟ ଦରଜ ହୋଇଥିଲାବେଳେ ଏପର୍ଯ୍ୟନ୍ତ ମାତ୍ର ୧୮ଟି ଧର୍ଷଣ ଘଟଣାରେ ଅପରାଧୀମାନେ ଦୋଷୀ ସାବ୍ୟସ୍ତ ହୋଇଛନ୍ତି। ପୋଲିସ ଅପରାଧିମାନଙ୍କୁ ଗିରଫ କଲେ ମଧ ବିଭିନ୍ନ କାରଣରୁ ତଦନ୍ତ ଠିକ୍ ଭାବରେ ନକରି କୋହଳ ଦଫାରେ ମୋକଦ୍ଦମା ରୁଜୁ କରୁଥିବାରୁ ଅପରାଧୀମାନେ ଜାମିନ ପାଇବାରେ ସକ୍ଷମ ହେଉଛନ୍ତି ଏବଂ ସାମାନ୍ୟ ଦଣ୍ଡ କିମ୍ବା ବିନା ଦଣ୍ଡରେ ଖଲାସ ହେଉଥିବାରୁ ରାଜ୍ୟରେ ପୋଲିସ ପ୍ରତି ଜନସାଧାରଣଙ୍କର ବେଖାତିର ମନୋଭାବ ବଢିବାରେ ଲାଗିଛି। ତତ୍କାଳୀନ ତୁମୁଡିବନ୍ଧ ଥାନା ଆଇ.ଆଇ.ସି. ମଧୁସୂଦନ ଜେନାସାମନ୍ତ ୨୫ ଅଗଷ୍ଟ ୨୦୦୮ରେ କନ୍ଧମାଳ ଜିଲ୍ଲାର ନନ୍ ମୀନା ଲଳିତା ବାରୱାଙ୍କୁ ଗଣଧର୍ଷଣ ମାମଲାର ଠିକ୍ ଭାବରେ ତଦନ୍ତ କରିନାହାନ୍ତି ବୋଲି ସବୁଆଡେ ଚର୍ଚ୍ଚା ହୋଇଥିଲା।

ଏକ ପ୍ରକାଶିତ ତଥ୍ୟରୁ ଜଣାପଡେ ଓଡିଶାରେ ପ୍ରତ୍ୟେକ ଦିନ କେଉଁଠି ନା କେଉଁଠି ଅନ୍ତତଃ ୩ ଜଣ ମହିଳା ବଳାତ୍କାରର ଶିକାର ହେଉଛନ୍ତି ଏବଂ ସାରା ଦେଶରେ ଓଡିଶା ଧର୍ଷଣ କ୍ଷେତ୍ରରେ ଅଷ୍ଟମ ସ୍ଥାନରେ ରହିଛି। ଏଥିପାଇଁ କେବଳ ପୋଲିସକୁ ଅଙ୍ଗୁଳି ନିର୍ଦ୍ଦେଶ କରିବା ଠିକ୍ ହେବନାହିଁ । ଆମ ରାଜ୍ୟରେ ସାମାଜିକ ସଚେତନତାର ଘୋର ଅଭାବ ଦେଖାଦେଇଛି। ସାଧାରଣ ଲୋକେ ବ୍ୟକ୍ତିକୈନ୍ଦ୍ରିକ ହୋଇ ସମାଜ ପ୍ରତି ନିଜର ଦାୟିତ୍ୱବୋଧ ଓ କର୍ତ୍ତବ୍ୟ ସଂପର୍କରେ ଉଦାସୀନ ହୋଇପଡିଛନ୍ତି। ବଳାତ୍କାର, ହତ୍ୟା, ବିବାହ ପ୍ରତିଶ୍ରୁତି ଦେଇ ଦୈହିକ ସଂପର୍କ ସ୍ଥାପନ କରି ବିଶ୍ୱାସଘାତକତା କରିବା, ପ୍ରେମିକାର ନଗ୍ନ ଚିତ୍ର ଉତ୍ତୋଳନ କରି ସି.ଡି.

ମାଧ୍ୟମରେ ତାକୁ ବଜାରରେ ବିକ୍ରି କରିବା ପ୍ରଭୃତି ଘଟଣା ରାଜ୍ୟରେ ବଢ଼ିଚାଲିଛି। ଏବେ ଗାଁଗହଳିରେ ସଂଜ ନଇଁଗଲେ ଲୋକେ ଅଶ୍ଳୀଳ ଫିଲ୍ମ ମାଧ୍ୟମରେ ମରୋରଂଜନ କରୁଛନ୍ତି। ଗାଁ ଗହଳିର ଝିଅମାନେ ଜିନ୍ସ-ଟପ୍ସ ପିନ୍ଧି ଆଧୁନିକ ନୃତ୍ୟ ନାମରେ ଯେଭଳି ଶରୀରର ବିଭିନ୍ନ ଅଙ୍ଗ ଦେଖାଇ ଯୌନଉଦ୍ଦୀପକ ନୃତ୍ୟ କରୁଛନ୍ତି ତାହା ଦେଖିଲେ ଆମର ସଂସ୍କୃତି ଯେ ଦେବାଳିଆ ହେବାକୁ ମୁହାଁଉଛି ତାହା ହୃଦୟଙ୍ଗମ କରିହେବ। ମନୋରଂଜନର ଦ୍ୱାହିଦେଇ ରାଜ୍ୟର କେତେକ ସ୍ଥାନରେ ଯେକୌଣସି ପୂଜାପାର୍ବଣରେ ନିମ୍ନମାନର ସାଂସ୍କୃତିକ କାର୍ଯ୍ୟକ୍ରମମାନ ପରିବେଷିତ ହେଉଛି, ଯାହା ଯୁବମାନସକୁ ବିକାରଗ୍ରସ୍ତ କରିବାରେ ସହାୟକ ହେଉଛି। ୨୦୦୯ ମସିହାରେ ଗୋପାଳପୁର ମହୋତ୍ସବରେ ଘଟିଥିବା ଉଦ୍ଦଣ୍ଡ ନୃତ୍ୟ ଏହାର ଏକ ଉଦାହରଣ ଅଟେ। ସାମୟିକ ଆନନ୍ଦ ପାଇବା ଆଶାରେ ଏବଂ ଉପଭୋଗର ରୁଗ୍ଣ ମାନସିକତାର ବଶବର୍ତ୍ତୀ ହୋଇ ମହିଳାମାନଙ୍କୁ ଅଶ୍ଳୀଳ ଇଂଗିତ ଦେବା ଓ ଧର୍ଷଣ କରିବା ଯେ ଅତ୍ୟନ୍ତ ନିନ୍ଦନୀୟ ଏଥିରେ କାହାରି ଦ୍ୱିମତ ହେବାର ନାହିଁ।

ପିପିଲିରେ ଯେଉଁ ଘଟଣା ଘଟିଛି ସେଥିରେ ସଂପୃକ୍ତ ପୋଲିସ ଅଫିସର ଯେ ଅକ୍ଷମଣୀୟ ଅପରାଧ କରିଛନ୍ତି ଏହା ସୁସ୍ପଷ୍ଟ। ୨୮ ନଭେମ୍ବରରେ ବଳାତ୍କାରର ଶିକାର ହେବାପରେ ପୀଡ଼ିତା ଓ ତା' ପରିବାରର ଲୋକେ ୨୯ ତାରିଖ ଦିନ ପିପିଲି ଥାନାରେ ଏତଲା ଦେଲେ। ପୋଲିସ କିନ୍ତୁ କୌଣସି ମାମଲା ରୁଜୁ କଲାନାହିଁ। ଦୀର୍ଘ ୪୨ ଦିନ ପରେ ଚଳିତ ମାସ ୯ ତାରିଖ ଦିନ ପୀଡ଼ିତା କ୍ୟାପିଟାଲ ହସ୍‌ପିଟାଲକୁ ଚିକିତ୍ସା ପାଇଁ ଆସିବା ପରେ ଗଣମାଧ୍ୟମର କିଛି ପ୍ରତିନିଧି ଏହି ଅମାନୁଷିକ ଗଣବଳାତ୍କାର ଖବର ପ୍ରକାଶ କରିଦେବାରୁ ମାନ୍ୟବର ହାଇକୋର୍ଟ ଓ ମାନବାଧିକାର କମିଶନ୍‌ଙ୍କ ହସ୍ତକ୍ଷେପ ପରେ ସି.ଆଇ.ଡି. ୪ ଜଣ ଅଭିଯୁକ୍ତଙ୍କୁ ଗିରଫ କରିବାକୁ ସମର୍ଥ ହୋଇଛନ୍ତି। ପିପିଲିର ତତ୍କାଳୀନ ଆଇ.ଆଇ.ସି.ଙ୍କୁ କାର୍ଯ୍ୟରୁ ସରକାର ବଦଳି କରିବା ପରେ ନିଲମ୍ବିତ କରିଛନ୍ତି। କିନ୍ତୁ କେନ୍ଦ୍ର କୋଇଲା ମନ୍ତ୍ରଣାଳୟର ପୂର୍ବତନ ସଚିବ ବରିଷ୍ଠ ପ୍ରଶାସନିକ ଅଧିକାରୀ ପ୍ରସନ୍ନ ମିଶ୍ର ଏହି ଘଟଣାକୁ ଗଭୀର ଭାବେ ଅନୁଧ୍ୟାନ କଲାପରେ ମୁଖ୍ୟମନ୍ତ୍ରୀଙ୍କୁ ଏକ ପତ୍ର ଲେଖି ଜଣାଇଛନ୍ତି ଯେ ସେହି ପୋଲିସ ଅଧିକାରୀଙ୍କୁ ସମ୍ବିଧାନର ୩୧୧(୨)(ବି) ଧାରା ଅନୁସାରେ ସରକାର କାର୍ଯ୍ୟରୁ ତୁରନ୍ତ ବହିଷ୍କାର କରିବା ଉପଯୁକ୍ତ ଦଣ୍ଡ ହେବ। କିନ୍ତୁ ସରକାର ଏଭଳି ଦଣ୍ଡବିଧାନ କରିବାକୁ ସାହସ ଜୁଟେଇ ପାରିବେ ନାହିଁ। କାରଣ କୌଣସି ପୋଲିସ ଅଫିସରଙ୍କ ଉପରେ ଦଣ୍ଡବିଧାନ ହେଲେ

ପୋଲିସ ମହାସଂଘ ଏହାର ପ୍ରତିରୋଧ କରୁଛି ଏବଂ କାର୍ଯ୍ୟ ବନ୍ଦ ଆନ୍ଦୋଳନ କରିବାର ଧମକ ଦେଉଛି। ଏପ୍ରିଲ ୨୦୧୧ ପ୍ରଥମ ଭାଗରେ ରାଉରକେଲାରେ ମାଜିଷ୍ଟ୍ରେଟଙ୍କୁ ମାଡ ଦେଇଥିବା ଉଦିତ୍‌ନଗର ଥାନାର ପୋଲିସ ଇନିସ୍‌ପେକ୍ଟରଙ୍କୁ ସରକାର ନିଲମ୍ବିତ କଲାବେଳେ ଏହିଭଳି ପରିସ୍ଥିତି ଉପୁଜିଥିଲା। ପରେ ମାନ୍ୟବର ହାଇକୋର୍ଟଙ୍କ ହସ୍ତକ୍ଷେପ ପରେ ଉଭୟ ଓକିଲ ଓ ପୋଲିସଙ୍କର ଦୁଇଟି ସଙ୍ଘ ନୀରବ ରହିଛନ୍ତି।

ଅନ୍ୟ ଏକ ଘଟଣାରେ ଭୁବନେଶ୍ୱର ମହିଳା ଥାନା ପୋଲିସ ଦ୍ୱାରା ସୁରେନ୍ଦ୍ର କୁମାର ବେହେରାଙ୍କ ଝିଅର ଅପହରଣ ଓ ଧର୍ଷଣ ମାମଲାରେ ହୋଇଥିବା ଅବହେଳା ପ୍ରଣିଧାନଯୋଗ୍ୟ। ନଭେମ୍ବର ୧୮, ୨୦୧୧ ରାତିରେ ଭୁବନେଶ୍ୱରର ସାଲିଆସାହି ଅଞ୍ଚଳରୁ ନିଶା ଶୁଙ୍ଘାଇ ତାଙ୍କ ଝିଅକୁ ଅପହରଣ କରାଯାଇ ପୁରୁଣା ଭୁବନେଶ୍ୱର ଓ ପରବର୍ତ୍ତୀ ସମୟରେ ବିଜୟୱାଡାକୁ ଦୁର୍ବୃତ୍ତମାନେ ନେଇଯାଇ ବହୁବାର ଧର୍ଷଣ କରିଥିଲେ। ପୀଡିତାଙ୍କ ପରିବାର ପକ୍ଷରୁ ଭୁବନେଶ୍ୱର ମହିଳା ଥାନାରେ ଏ ସଂପର୍କରେ ଅଭିଯୋଗ କରି ଏତଲା ଦିଆହୋଇଥିଲେ ମଧ୍ୟ ମହିଳା ଥାନା ପୋଲିସ କୌଣସି ପଦକ୍ଷେପ ନ ନେଇ ସୁରେନ୍ଦ୍ର ବେହେରାଙ୍କ ପରିବାର ଲୋକଙ୍କୁ ଦୁର୍‌ଦୁର୍ ମାର୍‌ମାର୍ କରିଥିଲେ। କିନ୍ତୁ ଏହି ଖବରଟି ଗଣମାଧ୍ୟମରେ ଚଳିତ ମାସ ୧୬ ତାରିଖରେ ପ୍ରକାଶିତ ହେଲାପରେ ମହିଳା ଥାନା ପୋଲିସ ଘଟଣାର ଅନୁସନ୍ଧାନ କରିବାରେ ତତ୍ପର ହୋଇଉଠିଛି।

ସଂଖ୍ୟାଧିକ ଘଟଣାରେ ଥାନାବାବୁମାନଙ୍କର ତ୍ରୁଟି ଯୋଗୁଁ ପୋଲିସ ବିଭାଗର ବଦ୍‌ନାମ ହେଉଥିବାବେଳେ ଅନ୍ୟ କେତେକ ଘଟଣାରେ ପୋଲିସର ଉଚିତ ପଦକ୍ଷେପ ଯୋଗୁଁ ଆଜି ପର୍ଯ୍ୟନ୍ତ ସାଧାରଣ ଜନତାର ଭରସା ପୋଲିସ ଉପରେ ଅତୁଟ ରହିଛି। ପୋଲିସ ବିଭାଗର ପୂର୍ବତନ ଡାଇରେକ୍ଟର ଜେନେରାଲ ବିପିନ ବିହାରୀ ପଣ୍ଡା ଏକ ପ୍ରବନ୍ଧରେ ଲେଖିଛନ୍ତି-''ଏକଥା ବି ମନେରଖିବାକୁ ହେବ ଯେ ସବୁ ଥାନାବାବୁ ଖରାପ ନୁହନ୍ତି। ଅଳ୍ପ କେତେଜଣ କଳାମେଣ୍ଢା ଅଛନ୍ତି ଯାହାଙ୍କ ଲାଗି ପୋଲିସ ବଦନାମ ହେଉଛି। ଏହି କଳାମେଣ୍ଢାମାନେ ଗଣମାଧ୍ୟମ ଦ୍ୱାରା ପଦାରେ ପଡିଲେ ଅନ୍ୟମାନେ ସଚେତନ ହେବେ। ଜିଲ୍ଲାର ଏସ୍.ପି., ରେଞ୍ଜର୍, ଡି.ଆଇ.ଜି. ଓ ଡି.ଜି. ପୋଲିସ ଏହି କଳାମେଣ୍ଢାମାନଙ୍କ ଉପରେ ତୀକ୍ଷ୍ଣ ଦୃଷ୍ଟି ରଖନ୍ତୁ ଏବଂ ଏମାନଙ୍କ ବିରୋଧରେ ଦୃଢ କାର୍ଯ୍ୟାନୁଷ୍ଠାନ କରନ୍ତୁ।''

ସରକାର ପଥଭ୍ରଷ୍ଟ ପୋଲିସ ଅଫିସରମାନଙ୍କୁ ବାଟକୁ ଆଣିବାକୁ ପଦକ୍ଷେପ ନେବା ସହିତ ବଳାତ୍କାର, ଯୌତୁକଜନିତ ଅତ୍ୟାଚାର ଘଟଣାଗୁଡିକର ବିଚାର କରିବାକୁ ତୁରନ୍ତ ସ୍ୱତନ୍ତ୍ର ଅଦାଲତମାନ ପ୍ରତିଷ୍ଠା କରି ଦୋଷୀମାନଙ୍କୁ ଦୃଷ୍ଟାନ୍ତମୂଳକ ଦଣ୍ଡ ଦେଲେ ପିପିଲି ଭଳି ଅଭାବନୀୟ ଘଟଣା ଘଟିବ ନାହିଁ ବୋଲି ଆଶା କରାଯାଏ। ପୋଲିସ ବିଭାଗର ସବୁସ୍ତରର କର୍ମଚାରୀମାନେ କୌଣସି ରାଜନୈତିକ ଚାପ କିମ୍ୱା ଅର୍ଥ ଲୋଭରେ ପ୍ରଭାବିତ ନ ହୋଇ ନିର୍ଭୀକ ଭାବରେ ନିଜ କର୍ତ୍ତବ୍ୟ ସଂପାଦନ କଲେ ସେମାନେ ଯେ ସାଧାରଣ ଲୋକଙ୍କର ପ୍ରଶଂସାଭାଜନ ହେବେ, ଏହା ନିଃସନ୍ଦେହ।

ରାଜ୍ୟରେ ବିଭିନ୍ନ ଇଲାକାରେ ମହିଳାମାନଙ୍କ ପ୍ରତି ଅତ୍ୟାଚାର ଘଟଣା ଦିନକୁଦିନ ଦ୍ରୁତଗତିରେ ବଢ଼ିବାରେ ଲାଗିଛି। ଜନସାଧାରଣ ବିଶେଷକରି ଯୁବସଂପ୍ରଦାୟ ନାରୀମାନଙ୍କୁ ସୁରକ୍ଷା ଦେବାକୁ ଅଣ୍ଟାଭିଡି ଆଗକୁ ନ ବାହାରିଲେ କେବଳ ସରକାରଙ୍କ ଦ୍ୱାରା ବଳାତ୍କାର ବନ୍ଦ କରିବା ସମ୍ଭବ ହେବ ନାହିଁ। ସମାଜରେ ଉଚ୍ଛୃଙ୍ଖଳାକୁ କେବେହିଁ ବରଦାସ୍ତ କରାଯିବା ଉଚିତ ନୁହେଁ। ମହିଳା ଓ ଦୁର୍ବଳଶ୍ରେଣୀ ଉପରେ କ୍ରମବର୍ଦ୍ଧିଷ୍ଣୁ ଅତ୍ୟାଚାର ପାଇଁ କେବଳ ଅନ୍ୟ ଉପରେ ଦୋଷ ଲଦି ନ ଦେଇ ସମସ୍ତେ ଆତ୍ମସମୀକ୍ଷା କରିବା ଉଚିତ ଯେ ସଙ୍ଘବଦ୍ଧ ଭାବରେ କିଭଳି ଏହାର ନିରାକରଣ କରାଯାଇପାରିବ। ଓଡିଶା ହାଇକୋର୍ଟର ମାନ୍ୟବର ପ୍ରଧାନ ବିଚାରପତି ଓ ଅନ୍ୟ ବିଚାରପତିମାନେ ରାଜ୍ୟର ସାମାଜିକ-ଅର୍ଥନୈତିକ ସମସ୍ୟା ଉପରେ ତୀକ୍ଷ୍ଣ ଦୃଷ୍ଟି ରଖି ନିଜ ତରଫରୁ କଚେରିରେ ମୋକଦ୍ଦମା ଦାୟର କରି ଅନ୍ୟାୟ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ଆଗେଇ ଆସୁଥିବାରୁ ସେମାନେ ଅଭିନନ୍ଦନୀୟ।

*ସମୟ, ୨୧.୧.୨୦୧୨*

# ଅନନ୍ୟ ଦେଶପ୍ରେମୀ ନେତାଜୀ ସୁଭାଷ

ଭାରତର ସ୍ୱାଧୀନତା ସଂଗ୍ରାମରେ ମହାତ୍ମାଗାନ୍ଧୀଙ୍କ ଅବଦାନ ଓ ତ୍ୟାଗ ସହିତ ଯଦି ଅନ୍ୟ କୌଣସି ଦ୍ୱିତୀୟ ବ୍ୟକ୍ତିଙ୍କ ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହେବ ତେବେ ତାହା ହେବ ସୁଭାଷଚନ୍ଦ୍ର ବୋଷଙ୍କର। ଆମେ ଓଡିଶାବାସୀ ଗର୍ବିତ ଯେ ସୁଭାଷ ବୋଷ ହଜାର ବର୍ଷର ପୁରୁଣା କଟକ ସହରର ଓଡିଆ ବଜାରରେ ତାଙ୍କ ପିତାଙ୍କ ଦ୍ୱାରା ନିର୍ମିତ ହୋଇଥିବା ଏକ ସୁରମ୍ୟ ଅଟ୍ଟାଳିକାରେ ୧୮୯୭ ମସିହା ଜାନୁଆରୀ ମାସ ୨୩ ତାରିଖ, ଶନିବାର ମଧ୍ୟାହ୍ନରେ ଜନ୍ମଗ୍ରହଣ କରିଥିଲେ। ସୁଭାଷଙ୍କ ପିତାଙ୍କ ନାମ ଜାନକୀନାଥ ବୋଷ ଓ ମାତା ଥିଲେ ପ୍ରଭାବତୀ ଦେବୀ। ସୁଭାଷ ଥିଲେ ତାଙ୍କ ପିତାମାତାଙ୍କର ନବମ ସନ୍ତାନ ଓ ଷଷ୍ଠ ପୁତ୍ର।

ସୁଭାଷ ବୋଷଙ୍କର ଜୀବନର ପ୍ରଥମ ୧୬ ବର୍ଷ କଟକ ସହରରେ କଟିଥିଲା। କଟକ ସହରର ପରିବେଷ୍ଟନୀ ତାଙ୍କ ଉପରେ ପ୍ରଭାବ ପକାଇଥିଲା। କଟକର ପରିବେଶ, କଳା ଓ ସଂସ୍କୃତି, ଲୋକମାନଙ୍କ ସରଳତା, ଚାଲିଚଳନ ସୁଭାଷଙ୍କୁ ଆକର୍ଷିତ କରିଥିଲା। ଓଡିଆ ବଜାର ଅଞ୍ଚଳରେ ବହୁ ମୁସଲମାନ ସଂପ୍ରଦାୟର ଲୋକ ରହୁଥିଲେ। ସୁଭାଷ ବୋଷଙ୍କର ମଧ୍ୟ ବହୁ ମୁସଲିମ ସହପାଠୀ ଥିଲେ। ତେଣୁ ସେ ପିଲାଦିନରୁ ମୁସଲମାନମାନଙ୍କୁ ଅତ୍ୟନ୍ତ ଶ୍ରଦ୍ଧା କରୁଥିଲେ।

ନେତାଜୀ ସୁଭାଷଚନ୍ଦ୍ର ବୋଷଙ୍କ ଜୀବନୀକୁ ୩ଟି ଭାଗରେ ବିଭକ୍ତ କରାଯାଇପାରେ– ଛାତ୍ରଜୀବନ, ଦେଶରେ ସ୍ୱାଧୀନତା ସଂଗ୍ରାମ ଏବଂ ଭାରତ ବାହାରେ ଆଜାଦ୍‌ହିନ୍ଦ୍ ଫୌଜ ଗଠନ ଓ ବ୍ରିଟିଶ୍ ସରକାରଙ୍କ ବିରୁଦ୍ଧରେ ଯୁଦ୍ଧ।

ସୁଭାଷଚନ୍ଦ୍ର ବୋଷ ୫ ବର୍ଷ ବୟସରେ ଏକ ପ୍ରୋଟେଷ୍ଟାଣ୍ଟ ମିଶନାରୀ ୟୁରୋପିଆନ ସ୍କୁଲରେ ପାଠପଢା ଆରମ୍ଭ କରିଥିଲେ। ସେତେବେଳେ ସେହି ସ୍କୁଲର ପ୍ରଧାନ ଶିକ୍ଷକ ଥିଲେ ମିଷ୍ଟର ୟଙ୍ଗ୍ ଓ ପ୍ରଧାନ ଶିକ୍ଷୟିତ୍ରୀ ଥିଲେ ମିସେସ୍ ୟଙ୍ଗ୍। ଏହି ସ୍କୁଲରେ ଭାରତୀୟ ପିଲା ଓ ଇଂରେଜ ପିଲାମାନଙ୍କ ମଧ୍ୟରେ ହେଉଥିବା ପାତରଅନ୍ତର ଶିଶୁ ସୁଭାଷ ଲକ୍ଷ୍ୟ କରୁଥିଲେ। ୧୯୦୯ ମସିହାରେ ସେ ରେଭେନ୍ସା କଲେଜିଏଟ୍ ସ୍କୁଲରେ ନାମ ଲେଖାଇଲେ। ଏହି ସ୍କୁଲରେ ତାଙ୍କର ଭବିଷ୍ୟତ ଜୀବନର ମୂଳଦୁଆ

ଗଠନ ହୋଇଥିବା କହିଲେ ଅତ୍ୟୁକ୍ତି ହେବ ନାହିଁ। ଏହି ସ୍କୁଲର ବାତାବରଣ ତାଙ୍କୁ ଅତ୍ୟନ୍ତ ଭଲ ଲାଗିଥିଲା। ସେତେବେଳେ ସ୍କୁଲର ପ୍ରଧାନ ଶିକ୍ଷକ ଥିଲେ ବେଣୀମାଧବ ଦାସ। ତାଙ୍କ ବ୍ୟକ୍ତିତ୍ୱ ସୁଭାଷଙ୍କୁ ପ୍ରଭାବିତ କରିଥିଲା। ସେ ଥିଲେ ଜଣେ ସ୍ୱାଧୀନଚେତା ବ୍ୟକ୍ତି। ୧୯୧୧ ମସିହା ଅଗଷ୍ଟ ୧୧ ତାରିଖରେ ରେଭେନ୍ସା କଲେଜିଏଟ୍ ସ୍କୁଲ୍ ପ୍ରାଙ୍ଗଣରେ ଖୁଦିରାମଙ୍କ ଫାଶୀ ଦିବସକୁ ଛାତ୍ରମାନଙ୍କୁ ପାଳନ କରିବାକୁ ପ୍ରଶ୍ରୟ ଦେଇଥିବା ଅଭିଯୋଗରେ ସରକାର ବେଣୀମାଧବ ଦାସଙ୍କୁ ପଶ୍ଚିମବଙ୍ଗର ନଦିଆ ଜିଲ୍ଲା କୃଷ୍ଣନଗରପୁରକୁ ବଦଳି କରିଦେଇଥିଲେ। ଏହା ସୁଭାଷଙ୍କ ମନରେ ଦାରୁଣ ଆଘାତ ପହଞ୍ଚାଇଥିଲା। ବେଣୀମାଧବ ଦାସ ସୁଭାଷଙ୍କୁ ସ୍ୱାମୀ ବିବେକାନନ୍ଦଙ୍କର ଲେଖାମାନ ପଢିବାକୁ ଉତ୍ସାହିତ କରିଥିଲେ। ବିବେକାନନ୍ଦ ଦେଶସେବାକୁ ଜୀବନର ସର୍ବଶ୍ରେଷ୍ଠ ସେବା ଭାବେ ଅବିହିତ କରିଥିଲେ। ଏହି ଲେଖା ସୁଭାଷଙ୍କୁ ସାଂସାରିକ ସୁଖ ସ୍ୱାଚ୍ଛନ୍ଦ୍ୟରୁ ଦୂରରେ ରହି ଦୁଃଖୀ, ଦରିଦ୍ର, ଅବହେଳିତ ମଣିଷମାନଙ୍କର ସେବା ଓ ଦେଶସେବା କରିବାକୁ ପ୍ରଭାବିତ କରିଥିଲା। ବେଣୀମାଧବ ଦାସଙ୍କ ପରେ ପରବର୍ତ୍ତୀ ପ୍ରଧାନ ଶିକ୍ଷକ ଭାବରେ ରେଭେନ୍ସା କଲେଜିଏଟ୍ ସ୍କୁଲରେ ଯୋଗ ଦେଇଥିଲେ ଜଣେ ଅତ୍ୟନ୍ତ ପ୍ରତିଭାସମ୍ପନ୍ନ ଇଂରାଜୀ ସାହିତ୍ୟରେ ଧୁରୀଣ ବ୍ୟକ୍ତି ନାରାୟଣପ୍ରସାଦ ମହାନ୍ତି।

ନାରାୟଣପ୍ରସାଦ ମହାନ୍ତି ଇଂରାଜୀ ସାହିତ୍ୟରେ କଲିକତା ବିଶ୍ୱବିଦ୍ୟାଳୟରୁ ଏମ୍.ଏ. ପାଶ୍ କରିବା ପରେ ତତ୍କାଳୀନ ଓଡିଶା ବିହାରର ଶିକ୍ଷା ବିଭାଗରେ ଯୋଗଦାନ କରିଥିଲେ। ତାଙ୍କର ସ୍ୱାଧୀନ ଚିନ୍ତା, ଧୀଶକ୍ତି, ଇଂରାଜୀ ଭାଷାରେ ବିଶେଷ ପାରଦର୍ଶିତା ଯୋଗୁଁ ସେ କେବଳ ଛାତ୍ରମାନଙ୍କର ନୁହେଁ ଇଂରେଜମାନଙ୍କର ମଧ୍ୟ ପ୍ରିୟପାତ୍ର ହୋଇଥିଲେ। ନାରାୟଣ ପ୍ରସାଦଙ୍କ ପୂର୍ବରୁ କେବଳ ଇଂରେଜ ଓ ବଙ୍ଗାଳୀମାନେ ରେଭେନ୍ସା କଲେଜିଏଟ୍ ସ୍କୁଲର ପ୍ରଧାନ ଶିକ୍ଷକ ହେଉଥିଲେ। ନାରାୟଣପ୍ରସାଦ ମହାନ୍ତି ପ୍ରଥମ ଓଡିଆ ପ୍ରଧାନ ଶିକ୍ଷକ ପଦବୀ ଅଳଂକୃତ କରିବାର ସୌଭାଗ୍ୟ ଅର୍ଜନ କରିଥିଲେ। ତେଣୁ କଟକରେ ଓଡିଆମାନଙ୍କ ତରଫରୁ ତାଙ୍କୁ ଅଭିବାଦନ ଜ୍ଞାପନ କରାଯାଇଥିଲା। ନାରାୟଣପ୍ରସାଦ ମହାନ୍ତି ଅଧୁନା ଜଗତସିଂହପୁର ଜିଲ୍ଲାର ଆଳିପିଙ୍ଗଳ ଗ୍ରାମରେ ଏକ ଜମିଦାର ପରିବାରରେ ଜନ୍ମଗ୍ରହଣ କରିଥିଲେ। ତାଙ୍କର ଉତ୍କଳୀୟ ସଂସ୍କୃତି ପ୍ରତି ପ୍ରଗାଢ ଅନୁରକ୍ତି ଥିଲା। ତାଙ୍କ ଜୀବନରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ସଂସ୍କୃତିର ଅପୂର୍ବ ସମନ୍ୱୟ ଘଟିଥିଲା। ରେଭେନ୍ସା କଲେଜିଏଟ୍ ସ୍କୁଲରେ ପ୍ରଧାନ ଶିକ୍ଷକ ରୂପେ ଯୋଗଦେବା

ପୂର୍ବରୁ ସେ ରାଞ୍ଚି, ମୁଙ୍ଗେର, ଭାଗଲପୁର ପ୍ରଭୃତି ସ୍ଥାନରେ ଶିକ୍ଷା ବିଭାଗରେ କାର୍ଯ୍ୟ କରିଥିଲେ।

ନାରାୟଣପ୍ରସାଦ ମହାନ୍ତିଙ୍କର ଚମତ୍କାର ଇଂରାଜୀ ପଢାଇବା ଶୈଳୀ ସୁଭାଷଙ୍କୁ ଆକୃଷ୍ଟ କରିଥିଲା। ୧୯୧୩ ମସିହାରେ ମାଟ୍ରିକ୍ୟୁଲେସନ ପାଶ୍ କରିବା ସମୟରେ ନାରାୟଣପ୍ରସାଦ ମହାନ୍ତି ହିଁ ଥିଲେ ସୁଭାଷଙ୍କର ପ୍ରଧାନ ଶିକ୍ଷକ। ସମଗ୍ର ବଂଗ-ବିହାର-ଓଡିଶାରେ କଲିକତା ବିଶ୍ୱବିଦ୍ୟାଳୟରୁ ସୁଭାଷଚନ୍ଦ୍ର ବୋଷ ପ୍ରଥମ ଶ୍ରେଣୀରେ ଦ୍ୱିତୀୟ ସ୍ଥାନ ରଖି ଉତ୍ତୀର୍ଣ୍ଣ ହୋଇଥିଲେ। କିନ୍ତୁ ଇଂରାଜୀ ବିଷୟରେ ନାରାୟଣ ପ୍ରସାଦଙ୍କ ବିଶେଷ ତତ୍ତ୍ୱାବଧାନରେ ପଢିଥିବାରୁ ସେ ସମଗ୍ର ବିଶ୍ୱବିଦ୍ୟାଳୟରେ ଇଂରାଜୀରେ ସର୍ବୋଚ୍ଚ ନମ୍ବର ରଖିବାକୁ ସମର୍ଥ ହୋଇଥିଲେ। ସେହି ପରୀକ୍ଷାରେ କଲିକତାର ମିତ୍ର ଇନ୍‌ଷ୍ଟିଚ୍ୟୁଟ୍‌ସର ପ୍ରମଥନାଥ ସରକାର ପ୍ରଥମ ଓ ତତ୍କାଳୀନ ବିହାର ପ୍ରଦେଶର ଚାଇଁବସା ବିଦ୍ୟାଳୟର ପ୍ରିୟ ରଂଜନ ସେନ ତୃତୀୟ ସ୍ଥାନ ଅଧିକାର କରିଥିଲେ।

ଏହାପରେ ତାଙ୍କ ପିତା ଜାନକୀନାଥ ବୋଷ ସୁଭାଷଙ୍କର ନାମ ଲେଖାଇଦେଲେ କଲିକତାର ଅନ୍ୟତମ ଶ୍ରେଷ୍ଠ ମହାବିଦ୍ୟାଳୟ ପ୍ରେସିଡେନ୍ସି କଲେଜରେ। ୧୯୧୫ ମସିହାରେ ସୁଭାଷ ଇଣ୍ଟରମେଡିଏଟ୍ ପରୀକ୍ଷାରେ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହୋଇ ସେହି କଲେଜରେ ବି.ଏ. ଶ୍ରେଣୀରେ ଦର୍ଶନ ଶାସ୍ତ୍ରରେ ଅନର୍ସ ନେଇ ପଢିବା ଆରମ୍ଭ କଲେ। ସେ ସମୟରେ ପ୍ରେସିଡେନ୍ସି କଲେଜର ପ୍ରିନ୍ସିପାଲ୍ ଥିଲେ ଏଚ. ଆର. ଜେମ୍‌ସ। କିନ୍ତୁ ଏହି ସମୟରେ ଏକ ଦୁଃଖଦ ଘଟଣା ଘଟିଥିଲା। ଇ. ଏଫ୍. ଓଟନ୍ ନାମକ ଇତିହାସ ବିଭାଗର ଜଣେ ଇଂରେଜ ଅଧ୍ୟାପକ ସୁଭାଷଙ୍କର ଜଣେ ସହପାଠୀ କମଳ ବସୁଙ୍କୁ ମାଡ ମାରିଥିବାର ପ୍ରତିବାଦରେ ଛାତ୍ରମାନେ ଶ୍ରେଣୀବର୍ଜନ ଓ ଧର୍ମଘଟ କରିଥିଲେ। ପ୍ରିନ୍ସିପାଲ୍ ଜେମ୍‌ସ ଏହି ଘଟଣାରେ ଛାତ୍ରନେତା ସୁଭାଷଙ୍କୁ ଦାୟୀ କରି ତାଙ୍କୁ କଲେଜରୁ ବହିଷ୍କାର ଆଦେଶ ଦେଇଥିଲେ। କଲିକତାରେ ପଢୁଥିବାବେଳେ ଶ୍ରୀ ଅରବିନ୍ଦଙ୍କର ବାଣୀ– ''ମହାନ ହୁଅ, ନିଜ ପାଇଁ ନୁହେଁ, ଭାରତବର୍ଷ ପାଇଁ'' ସୁଭାଷଙ୍କ ମନରେ ଗଭୀର ରେଖାପାତ କରିଥିଲା।

ସୁଭାଷ କଲିକତାରୁ ନିଜ ପ୍ରିୟ ସହର କଟକକୁ ଫେରିଆସି ସେଠାରେ ଅବସ୍ଥାନ କଲେ। ପ୍ରାୟ ଏକ ବର୍ଷ ତିନି ମାସ କାଳ କଟକରେ ରହିବା ପରେ କଲିକତା

ବିଶ୍ୱବିଦ୍ୟାଳୟର ତତ୍କାଳୀନ କୁଳପତି ସାର୍ ଆଶୁତୋଷ ମୁଖର୍ଜୀଙ୍କ ସହାୟତାରେ ୧୯୧୭ ମସିହା ଜୁଲାଇ ମାସରେ କଲିକତାର ସ୍କଟିସ୍ ଚର୍ଚ୍ଚ କଲେଜରେ ନାମ ଲେଖାଇବାକୁ ସେ ସକ୍ଷମ ହୋଇଥିଲେ। ୧୯୧୯ ମସିହାରେ କଲିକତା ବିଶ୍ୱବିଦ୍ୟାଳୟରୁ ପ୍ରଥମ ଶ୍ରେଣୀରେ ଦ୍ୱିତୀୟ ସ୍ଥାନ ଅଧିକାର କରି ସେ ବି.ଏ. ପାଶ୍ କଲେ। ପ୍ରଥମ ସ୍ଥାନ ଅଧିକାର କରିଥିଲେ ପ୍ରେସିଡେନ୍ସି କଲେଜର ଛାତ୍ର ସତ୍ୟେନ୍ଦ୍ର ନାଥ ବନ୍ଦୋପାଧ୍ୟାୟ। ଏହାପରେ ସେ ଏମ୍.ଏ. ଶ୍ରେଣୀରେ ନାମ ଲେଖାଇଲେ, କିନ୍ତୁ କିଛିଦିନ ପରେ ପିତା ଜାନକୀନାଥ ବୋଷ ଓ ବଡଭାଇଙ୍କ ନିର୍ଦ୍ଦେଶରେ ଆଇ.ସି.ଏସ୍. ପରୀକ୍ଷା ପ୍ରସ୍ତୁତି ପାଇଁ ୧୯୧୯ ମସିହା ସେପ୍ଟେମ୍ବର ୧୫ ତାରିଖରେ ସେ ଇଂଲଣ୍ଡ ଯାତ୍ରା କଲେ। ସେଠାରେ ନଭେମ୍ବର ମାସରେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ନାମ ଲେଖାଇ ଆଇ.ସି.ଏସ୍. ପରୀକ୍ଷା ପାଇଁ ପ୍ରସ୍ତୁତି ଚଳାଇଲେ। ସେତେବେଳେ ସେ ଓଡିଶାର ସ୍ୱନାମଧନ୍ୟ ବୈଜ୍ଞାନିକ, ଶିକ୍ଷାବିତ୍ ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କ ସହିତ ବନ୍ଧୁତା ସ୍ଥାପନ କରିଥିଲେ ଏବଂ ବହୁବର୍ଷ ଧରି ଡକ୍ଟର ପରିଜାଙ୍କ ସହିତ ସେ ପତ୍ରାଳାପ କରୁଥିଲେ। ୧୯୨୦ ମସିହା ଜୁଲାଇ ମାସରେ ଲଣ୍ଡନରେ ଅନୁଷ୍ଠିତ ହୋଇଥିବା ଆଇ.ସି.ଏସ୍. ପରୀକ୍ଷାରେ ଚତୁର୍ଥ ସ୍ଥାନ ଅଧିକାର କରିବାର ଗୌରବ ଅର୍ଜନ କରିଥିଲେ। କିନ୍ତୁ ଆଜୀବନ ଦେଶସେବାର ସ୍ୱପ୍ନରେ ବିଭୋର ସୁଭାଷ ବୋଷ ଜୀବନରେ ଧନ, କ୍ଷମତା, ପଦପଦବୀ, ସ୍ୱାଚ୍ଛନ୍ଦ୍ୟତା ଲାଭ କରିବାର ବିରାଟ ପ୍ରଲୋଭନକୁ ତ୍ୟାଗ କରି ଆଇ.ସି.ଏସ୍. ପଦବୀରୁ ଇସ୍ତଫା ପ୍ରଦାନ କଲେ।

୧୯୨୧ ମସିହା ଜୁଲାଇ ୧୬ ତାରିଖରେ ସେ ଭାରତ ଫେରିଆସି ବମ୍ବେରେ ପହଞ୍ଚିଲେ ଓ ସେଠାରେ ମହାତ୍ମାଗାନ୍ଧିଙ୍କୁ ସାକ୍ଷାତ କରିଥିଲେ। ଗାନ୍ଧିଜୀଙ୍କ ପରାମର୍ଶକ୍ରମେ ଦେଶବନ୍ଧୁ ଚିତ୍ତରଂଜନ ଦାସଙ୍କ ନେତୃତ୍ୱରେ ଦେଶର ସ୍ୱାଧୀନତା ପାଇଁ କାର୍ଯ୍ୟ କରିବାକୁ କଲିକତାରେ ଆସି ପହଞ୍ଚି ଚିତ୍ତରଂଜନଙ୍କୁ ଗୁରୁ ଭାବରେ ଗ୍ରହଣ କଲେ ଏବଂ ଅସହଯୋଗ ଆନ୍ଦୋଳନରେ ଯୋଗଦେଇ ବ୍ରିଟିଶ୍ ସରକାରଙ୍କ ଦ୍ୱାରା ଗିରଫ ହୋଇ ଜେଲ୍ ଗଲେ।

ସୁଭାଷ ବୋଷଙ୍କ ଭଳି ତ୍ୟାଗବୀର ବିଶ୍ୱରେ ବିରଳ। ତାଙ୍କ ବୀରତ୍ୱର ପଟ୍ଟାନ୍ତର ନାହିଁ। ଭାରତକୁ ସ୍ୱାଧୀନ କରିବାକୁ ନିଜ ଜୀବନକୁ ବାଜି ଲଗାଇ ଇଂରେଜ ସରକାରଙ୍କ ଅଧୀନରେ ଗୃହବନ୍ଦୀ ଥିବା ଅବସ୍ଥାରେ ୧୯୪୧ ମସିହା ଜାନୁଆରୀ ୧୭ ତାରିଖ ରାତିରେ ଛଦ୍ମବେଶରେ ସେ କଲିକତା ଛାଡିଲେ ଏବଂ ପେଶୱାର, କାବୁଲ, ସମରକନ୍ଦ

ଓ ମସ୍କୋ ବାଟଦେଇ ଏପ୍ରିଲ ୩ ତାରିଖରେ ଜର୍ମାନରେ ପହଞ୍ଚିଲେ। ହିଟଲରଙ୍କ ସହିତ ସୁଭାଷଙ୍କ ସାକ୍ଷାତ ପରେ ସେ ତାଙ୍କ ପାଇଁ ସମସ୍ତ ପ୍ରକାର ଆତିଥ୍ୟ ଯୋଗାଇ ଦେଇଥିଲେ। ଏଥିରେ ଉତ୍ସାହିତ ହୋଇ ସୁଭାଷ ବୋଷ ନଭେମ୍ବର ୨ ତାରିଖରେ ମୁକ୍ତ ଭାରତ କେନ୍ଦ୍ର (Free India Centre) ସ୍ଥାପନ କଲେ। ସ୍ୱାଧୀନ ଭାରତର ତ୍ରିରଙ୍ଗା ପତାକା ଏହିଠାରେ ଉଡିଲା । ଅନୁଷ୍ଠିତ ହୋଇଥିବା ସଭାରେ ରବୀନ୍ଦ୍ରନାଥଙ୍କ ରଚିତ ଜାତୀୟ ସଙ୍ଗୀତ 'ଜନ ଗଣ ମନ-ଅଧିନାୟକ ଜୟ ହେ' ଗାନ କରାଗଲା। ମୁକ୍ତ ଭାରତ କେନ୍ଦ୍ରର ସଦସ୍ୟମାନେ ସେଦିନ ସେଠାରେ ସୁଭାଷ ବୋଷଙ୍କୁ 'ନେତାଜୀ' ବୋଲି ସମ୍ବୋଧନ କଲେ। ଡିସେମ୍ବର ୫ ତାରିଖରେ ଜାପାନ ଇଂଲଣ୍ଡ ଓ ଆମେରିକା ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲା। ଜାପାନ ସରକାରଙ୍କର ସମସ୍ତ ସହାୟତାର ପ୍ରତିଶ୍ରୁତି ପାଇ ସୁଭାଷ ୧୯୪୩ ମସିହା ଫେବୃୟାରୀ ୯ ତାରିଖରେ ଜର୍ମାନୀର କିଲ ବନ୍ଦରରୁ ଜାପାନର ବୁଡାଜାହାଜରେ ଟୋକିଓ ଅଭିମୁଖେ ଯାତ୍ରା କଲେ। ମେ' ୧୬ ତାରିଖରେ ସେ ଟୋକିଓରେ ପହଞ୍ଚିଲେ। ଜାପାନ ସହାୟତାରେ ଆଜାଦ୍ ହିନ୍ଦ ଫୌଜ ଗଠନ କରି 'ଦିଲ୍ଲୀ ଚଲୋ'ର ଆହ୍ୱାନ ଦେଲେ। ୧୯୪୪ ମସିହା ଏପ୍ରିଲ ୧୪ ତାରିଖ ଦିନ ବହୁ ବିପଦର ସମ୍ମୁଖୀନ ହୋଇ ତାଙ୍କ ସୈନ୍ୟବାହିନୀ ମଣିପୁର ରାଜଧାନୀ ଇମ୍ଫାଲ ନିକଟବର୍ତ୍ତୀ ମଏରାଙ୍ଗ ସହରକୁ ଦଖଲ କଲେ ଏବଂ ଭାରତର ତ୍ରିରଙ୍ଗା ପତାକା ଉଡାଇଥିଲେ। ନେତାଜୀଙ୍କ ଆଜାଦ୍ ହିନ୍ଦ ଫୌଜ ଇଂରେଜ ବାହିନୀ ଦ୍ୱାରା ପରାଜିତ ହୋଇଥିଲା ଓ ସେମାନେ ପଛଘୁଞ୍ଚା ଦେଲେ। ନେତାଜୀ ସୁଭାଷଙ୍କର ଲାଲକିଲା ଦଖଲ କରିବା ସ୍ୱପ୍ନ ଅପୂର୍ଣ୍ଣ ରହିଲା। ତେବେ ତାଙ୍କର ବୀରତ୍ୱ ଓ ଅସୀମ ଦେଶପ୍ରେମର କାହାଣୀ ଆମେ ଯେତେଦିନ ଯାଏ ମନେରଖିଥିବା ଓ ଆଲୋଚନା କରୁଥିବା ସେତେଦିନ ଯାଏ ଦେଶମାତୃକା ପାଇଁ ତାଙ୍କ ଆଦର୍ଶରେ ଅନୁପ୍ରାଣିତ ହେବାକୁ ଭବିଷ୍ୟତର ବଂଶଧରମାନେ ପ୍ରେରଣା ପାଉଥିବେ। ଭାରତ ସରକାର ନେତାଜୀଙ୍କୁ ୧୯୯୨ ମସିହାରେ 'ଭାରତରତ୍ନ' ଉପାଧି ପ୍ରଦାନ କରିଛନ୍ତି। ତାଙ୍କ ତ୍ୟାଗ ଓ ସାହସ କାଳେ କାଳେ ଭାରତୀୟମାନଙ୍କ ଆଦର୍ଶ ହୋଇ ରହିବ।

*ଓଡ଼ିଶା ଏକ୍ସପ୍ରେସ, ୨୩.୧.୨୦୧୨*

# ଦେଶର ପ୍ରତିରକ୍ଷା ପ୍ରସ୍ତୁତିରେ ଅକ୍ଷମଣୀୟ ଅବହେଳା

ମାର୍ଚ୍ଚ ୩୧, ୨୦୧୦ରେ ସ୍ଥଳସେନାର ମୁଖ୍ୟ ଭାବରେ କାର୍ଯ୍ୟଭାର ଗ୍ରହଣ କରିବା ପରେ ଦୁର୍ଭାଗ୍ୟଜନକ ଭାବରେ ଜେନେରାଲ୍ ବିଜୟ କୁମାର ସିଂହ ନିଜର ବ୍ୟକ୍ତିଗତ ସ୍ୱାର୍ଥକୁ ଅଗ୍ରାଧିକାର ଦେଇ ନିଜ ଜନ୍ମବର୍ଷ ୧୯୫୦ ମସିହା ନୁହେଁ, ୧୯୫୧ ମସିହା ବୋଲି ଜାହିର କରିବା ପାଇଁ ସୁପ୍ରିମ୍‌କୋର୍ଟ ପର୍ଯ୍ୟନ୍ତ ଲଢ଼ି ହାରିଯିବା ପରେ ପ୍ରତିରକ୍ଷା ମନ୍ତ୍ରୀଙ୍କ ପ୍ରତି ଅସୂୟାଭାବ ରଖି ଯେଉଁ ବିବୃତିମାନ ଦେବାରେ ଲାଗିଛନ୍ତି, ତାହା ଦେଶବାସୀଙ୍କୁ ସ୍ତମ୍ଭୀଭୂତ ଓ ଆତଙ୍କିତ କରିଛି । ମାର୍ଚ୍ଚ ୨୦୧୨ରେ ସେ ପ୍ରଧାନମନ୍ତ୍ରୀଙ୍କୁ ଏକ ଗୁପ୍ତପତ୍ର ଲେଖି ଜଣାଇଛନ୍ତି, ସେନାରେ ବ୍ୟବହୃତ ହେବାକୁ ଥିବା ସରଞ୍ଜାମ ଯଥା- ଟ୍ୟାଙ୍କ୍ ପାଇଁ ଆବଶ୍ୟକୀୟ ଗୁଳିଗୁଳା, ପଦାତିକବାହିନୀ ପାଇଁ ରାତ୍ରିକାଳୀନ ଯୁଦ୍ଧ ନିମନ୍ତେ ଆବଶ୍ୟକୀୟ ସରଞ୍ଜାମ ଆଦିର ଘୋର ଅଭାବ ରହିଛି । ଏହାସହିତ ଆକାଶ ମାର୍ଗରୁ ହେବାକୁ ଥିବା ସମ୍ଭାବ୍ୟ ଆକ୍ରମଣରେ ପ୍ରତିହତ କରିବା ନିମନ୍ତେ ଉଦ୍ଦିଷ୍ଟ ସରଞ୍ଜାମଗୁଡ଼ିକ ମଧ୍ୟରୁ ୯୭ ପ୍ରତିଶତ ଅତ୍ୟନ୍ତ ପୁରୁଣା ଓ ବ୍ୟବହାର ଅନୁପଯୋଗୀ । ଭାରତର କମ୍ପ୍ଟ୍ରୋଲର ଆଣ୍ଡ୍ ଅଡିଟର ଜେନେରାଲ୍ (ସିଏଜି) ୨୦୧୧ ମସିହା ଡିସେମ୍ବର ମାସରୁ ଏହିସବୁ କଥା ତାଙ୍କ ରିପୋର୍ଟରେ ଉଲ୍ଲେଖ କରି ସରକାରଙ୍କୁ ଦେଇସାରିଛନ୍ତି । ଏହି ରିପୋର୍ଟ ପାର୍ଲାମେଣ୍ଟର ସଦସ୍ୟମାନଙ୍କୁ ମଧ୍ୟ ପ୍ରଦାନ କରାଯାଇଥାଏ । ସିଏଜି ତାଙ୍କ ରିପୋର୍ଟରେ ଦର୍ଶାଇଛନ୍ତି ଯେ, ସେନା ପାଖରେ ଆବଶ୍ୟକୀୟ ଅତ୍ୟାଧୁନିକ ଅସ୍ତ୍ରଶସ୍ତ୍ର ନାହିଁ ଏବଂ ଯାହା ଅଛି ତାହା ବହୁ ପୁରାତନ ।

ସାମରିକ ବାହିନୀ ଯେ ଯୁଦ୍ଧ ପାଇଁ ପ୍ରସ୍ତୁତ ନୁହେଁ, ତାହା ୬ ତାରିଖ ଶୁକ୍ରବାର ଦିନ ଏକ ଜାତୀୟ ଟେଲିଭିଜନ ଚ୍ୟାନେଲ୍‌ରେ ପ୍ରତିରକ୍ଷା ବିଶେଷଜ୍ଞମାନଙ୍କୁ ନେଇ ହୋଇଥିବା ଆଲୋଚନାରୁ ଜଣାପଡ଼ିଛି ।

ମାତ୍ର ପରିତାପର ବିଷୟ, ଦେଶର ପ୍ରତିରକ୍ଷା ସହିତ ଜଡ଼ିତ ଏହିଭଳି ତଥ୍ୟଭିତ୍ତିକ ରିପୋର୍ଟକୁ ସରକାର ଆଲୋଚନା କରି ନାହାନ୍ତି କିମ୍ବା କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିନାହାନ୍ତି । ପୂର୍ବତନ ସେନାଧ୍ୟକ୍ଷ ଜେନେରାଲ୍ ଦୀପକ୍ କପୁର ତାଙ୍କ କାର୍ଯ୍ୟକାଳ ସମୟରେ ମଧ୍ୟ ପ୍ରତିରକ୍ଷାମନ୍ତ୍ରୀଙ୍କୁ ଲେଖିଥିଲେ ଯେ, ସେନାପାଇଁ ସାଜସରଞ୍ଜାମର ଯେତିକି ଅଭାବ

ରହିଛି, ତାହା ଚେଷ୍ଟାକଲେ ମଧ୍ଯ ୨୦୨୨ ମସିହା ପୂର୍ବରୁ ପୂରଣ କରାଯାଇପାରିବ ନାହିଁ। ତାହା ପୂର୍ବରୁ ଜେନେରାଲ୍ ଜେ.ଜେ. ସିଂହ ୨୦୦୫ ମସିହାରେ ଏକ ଅନୁଧ୍ୟାନ କରି ଜଣାଇଥିଲେ ଯେ ସେନାବାହିନୀରେ ସାଜସରଞ୍ଜାମର ଖରିଦ୍ କରିବାରେ ବର୍ଷ ବର୍ଷ ଧରି ଘୋର ଅବହେଳା ପ୍ରଦର୍ଶନ କରାଯାଉଅଛି, ଯାହା ଦେଶ ପ୍ରତିରକ୍ଷା ପାଇଁ ବିପଦଜନକ। ଅସ୍ତ୍ର କିଣିବା ପାଇଁ ଅର୍ଥ କେବେ ବି ପ୍ରତିବନ୍ଧକ ସାଜି ନାହିଁ। ଚଳିତ ବର୍ଷ ମଧ୍ଯ କେନ୍ଦ୍ର ଅର୍ଥମନ୍ତ୍ରୀ ପ୍ରଣବ ମୁଖାର୍ଜୀ ପ୍ରତିରକ୍ଷାବାହିନୀ ପାଇଁ ତାଙ୍କ ବଜେଟ୍‌ରେ ୧୬୪,୦୦୦ କୋଟି ଟଙ୍କାର ବ୍ୟୟବରାଦ କରିଛନ୍ତି। ସେଥିମଧ୍ୟରୁ ୯୫,୦୦୦ କୋଟି ଟଙ୍କା କେବଳ ପ୍ରତିରକ୍ଷା ସଂକ୍ରାନ୍ତୀୟ ସାଜସରଞ୍ଜାମ କିଣାଯିବା ଲାଗି ଉଦ୍ଦିଷ୍ଟ। ଦୁଃଖର ବିଷୟ, ସତୁରି ଦଶକ ପରଠାରୁ ପ୍ରତିରକ୍ଷା ମନ୍ତ୍ରଣାଳୟର ଅମଲାତାନ୍ତ୍ରିକଙ୍କ ସହିତ ସେନା ଅଧିକାରୀମାନଙ୍କର ସମ୍ପର୍କ ତିକ୍ତ ହେବାରେ ଲାଗିଛି ଓ ଅମଲାତନ୍ତ୍ର ସେନା ଅଧିକାରୀମାନଙ୍କ ପଦୋନ୍ନତି, ବଦଳି, ପୁରସ୍କାର ପ୍ରୋତ୍ସାହନ ଓ ଅସ୍ତ୍ରକିଣା ଆଦି ବିଷୟଗୁଡ଼ିକୁ ନିଜ ଅକ୍ତିଆରରେ ରଖିଛନ୍ତି।

ଜେନେରାଲ୍ ଭି. କେ. ସିଂହଙ୍କର ଦ୍ୱିତୀୟ ଅଭିଯୋଗ ଯେ, ସେପ୍ଟେମ୍ବର ୨୦୧୦ ମସିହାରେ ଟାଟା ଟ୍ରକ୍ କିଣିବା ପାଇଁ ତାଙ୍କୁ ଅବସରପ୍ରାପ୍ତ ଲେଫ୍ଟେନାଣ୍ଟ ଜେନେରାଲ୍ ତେଜିନ୍ଦର ସିଂହ ୧୪ କୋଟି ଟଙ୍କା ଲାଞ୍ଚ ଯାଚିଥିଲେ ଏବଂ ଏହିକଥା ସେ ପ୍ରତିରକ୍ଷା ମନ୍ତ୍ରୀଙ୍କୁ ଜଣାଇ ଦେଇଥିଲେ। ପ୍ରତିରକ୍ଷା ମନ୍ତ୍ରୀ ମଧ୍ଯ ଏହା ଚଳିତ ଲୋକସଭାରେ ସ୍ୱୀକାର କରିଛନ୍ତି ଓ ମାର୍ଚ୍ଚ ୨୬ ତାରିଖରେ ତାହାର ତଦନ୍ତ ଦାୟିତ୍ୱ ସି.ବି.ଆଇ.କୁ ପ୍ରଦାନ କରିଛନ୍ତି। ଲାଞ୍ଚଯଚା ଘଟଣାର ୧୮ ମାସ ପରେ ଉଭୟ ସେନାଧ୍ୟକ୍ଷ ଓ ପ୍ରତିରକ୍ଷାମନ୍ତ୍ରୀ ବିଷୟଟିକୁ କ'ଣ ପାଇଁ ତୁରନ୍ତ ସି.ବି.ଆଇ.କୁ ତଦନ୍ତ ପାଇଁ ଦେଲେନି- ସେ ବିଷୟରେ ପରସ୍ପରକୁ ଦୋଷାରୋପ କରିବାରେ ଲାଗିଛନ୍ତି।

ଉପରୋକ୍ତ ଘଟଣାସବୁରୁ ଗୋଟିଏ କଥା ନିଶ୍ଚିତ ଯେ, ପ୍ରତିରକ୍ଷା ମନ୍ତ୍ରଣାଳୟର କିଣାବିକା କାରବାରରେ ଦୁର୍ନୀତି କାୟାବିସ୍ତାର କରିସାରିଛି। ତାହା ରାଜୀବ ଗାନ୍ଧିଙ୍କ ପ୍ରଧାନମନ୍ତ୍ରୀତ୍ୱ କାଳରେ ବୋଫର୍ସ ତୋପ କିଣା ବ୍ୟାପାର ହେଉ କିମ୍ବା ଜର୍ଜ ଫର୍ଣ୍ଣାଣ୍ଡିଜ୍‌ଙ୍କ ପ୍ରତିରକ୍ଷା ମନ୍ତ୍ରୀ ଅମଳରେ କାର୍ଗିଲ୍ ସହିଦ୍‌ଙ୍କ ପାଇଁ କଫିନ୍ କ୍ରୟରେ ଦୁର୍ନୀତି ହେଉ, ସୁକୁନା ଜମି ଦୁର୍ନୀତି ହେଉ କି ମୁମ୍ବାଇରେ ୩୧ ମହଲା ବିଶିଷ୍ଟ ହାଉସିଂ ଦୁର୍ନୀତି ହେଉ, ସବୁଠାରେ ଦୁର୍ନୀତି ପ୍ରମାଣିତ ହୋଇଛି। ଏବେ ଯୋଧପୁର ସହର ମଧ୍ୟରେ ପ୍ରତିରକ୍ଷା ବିଭାଗର ୫ ଏକର ପ୍ରତିରକ୍ଷା ଜମି ହସ୍ତାନ୍ତର, ଶ୍ରୀନଗର ସହର ଉପକଣ୍ଠସ୍ଥ ବିମାନଘାଟି

ନିକଟରେ ପ୍ରତିରକ୍ଷା ବିଭାଗର ୨ ଶହ କୋଟି ଟଙ୍କାର ଜମି ମାଫିଆଙ୍କ ଦ୍ୱାରା କବଳିତ ସଂକ୍ରାନ୍ତ ତଥ୍ୟଗୁଡ଼ିକ ପ୍ରତିରକ୍ଷା ବାହିନୀର ଖ୍ୟାତିରେ କାଳିମା ବୋଳି ଦେଇଛି ।

ଜେନେରାଲ୍ ଭି. କେ. ସିଂହ ଆସ୍ଫାଳନ କରନ୍ତି ଯେ, ସେ ପ୍ରତିରକ୍ଷା ବିଭାଗରେ ଘଟିଥିବା ଦୁର୍ନୀତି ବିରୁଦ୍ଧରେ ସଂଗ୍ରାମ ଆରମ୍ଭ କରିଛନ୍ତି ଏବଂ ତାଙ୍କର କାର୍ଯ୍ୟକାଳ ମଧ୍ୟରେ ଯାହା ତାଙ୍କ ଜ୍ଞାତସାରରେ ଅଛି, ତାହାକୁ ସେ ନିଶ୍ଚିତ ଭାବରେ ଲୋକଲୋଚନକୁ ଆଣିବେ ।

ମାର୍ଚ୍ଚ ୨୮ ତାରିଖରେ ସେନାଧ୍ୟକ୍ଷ ବର୍ତ୍ତମାନ ଦିନାପୁରରେ କାର୍ଯ୍ୟରତ ଥିବା ଲେଫ୍ଟେନାଣ୍ଟ ଜେନେରାଲ୍ ଦଲ୍‌ବୀର ସିଂହ ସୁହାଗ୍‌ଙ୍କ ବିରୁଦ୍ଧରେ 'ସେ ସ୍ପେସିଆଲ୍ ଫ୍ରଣ୍ଟିୟର୍ ଫୋର୍ସ ପାଇଁ ସରଞ୍ଜାମ କିଣିଥିବାବେଳେ ଦୁର୍ନୀତି କରିଥିବା' ଅଭିଯୋଗକୁ ସି.ବି.ଆଇ. ଦ୍ୱାରା ଅନୁସନ୍ଧାନ କରାଇବାକୁ ସୁପାରିଶ କରିଛନ୍ତି ।

୨୦୦୭ରୁ ୨୦୧୧ ମସିହା ମଧ୍ୟରେ ପ୍ରତିରକ୍ଷା ବିଭାଗର କିଣାବିକାରେ କୌଣସି ଅନିୟମିତତା ଘଟିଥିବାର ଦୃଷ୍ଟାନ୍ତ ଦେଖାଯାଇ ନାହିଁ । ସେନା ଅଧିକାରୀମାନଙ୍କର ପଦୋନ୍ନତି କ୍ଷେତ୍ରରେ ପ୍ରତିରକ୍ଷା ମନ୍ତ୍ରୀ ଏ. କେ. ଆଣ୍ଟୋନୀ ତତ୍ପରତା ପ୍ରକାଶ କରୁନଥିବାରୁ ଏବଂ ଅଧିକାଂଶ କ୍ଷେତ୍ରରେ ନିଜେ କୌଣସି ନିଷ୍ପତ୍ତି ଗ୍ରହଣ ନକରି ବିଭାଗୀୟ ସଚିବ କିମ୍ବା ଆଇନ ବିଭାଗର ମତାମତ ଲୋଡୁଥିବାରୁ, ଜେନେରାଲ୍ ଭି. କେ. ସିଂହ ପ୍ରତିରକ୍ଷା ମନ୍ତ୍ରୀଙ୍କୁ ଏକ ନିଷ୍କ୍ରିୟ ଓ ଦୁର୍ବଳ ମନ୍ତ୍ରୀରୂପେ ଚିତ୍ରଣ କରୁଛନ୍ତି ।

ସେନା ସରଞ୍ଜାମ କିଣାରେ ବ୍ୟାପକ ଅବହେଳା ଓ ବିଳମ୍ବ କେବଳ ବର୍ତ୍ତମାନର ୟୁପିଏ ସରକାରରେ ନୁହେଁ, ଏନ୍‌ଡିଏ ସରକାରରେ ମଧ୍ୟ ଏହା ଦେଖିବାକୁ ମିଳିଥିଲା । ବର୍ତ୍ତମାନର ସେନାଧ୍ୟକ୍ଷ ନିଜର ୨୬ ମାସର କାର୍ଯ୍ୟକାଳରେ ସେନାକୁ ଏକ ଦକ୍ଷ ତଥା ଲଢୁଆ ସେନାରେ ପରିଣତ କରିବାକୁ ସାଜସରଞ୍ଜାମ କିଣା, ବହୁ ସଂଖ୍ୟାରେ ଖାଲି ପଡ଼ିଥିବା କିମଶନ୍‌ଡ ଅଫିସର ପଦବୀକୁ ପୂରଣ କରିବାରେ ନିଜର ଶକ୍ତି ଓ ସମୟ ବିନିଯୋଗ ନକରି ଅବସର ଗ୍ରହଣ ୩ ମାସ ପୂର୍ବରୁ ପ୍ରତିରକ୍ଷା ବିଭାଗରେ ତ୍ରୁଟିବିଚ୍ୟୁତିକୁ ସର୍ବସାଧାରଣରେ ପ୍ରକାଶ କରିବା ଦ୍ୱାରା କେବଳ ନିଜର ସମ୍ମାନ ହାନି କରୁନାହାନ୍ତି ବରଂ ସୈନ୍ୟବାହିନୀର ମନୋବଳକୁ ଦୁର୍ବଳ କରୁଛନ୍ତି ବୋଲି ବହୁ ରାଜନେତା ଓ ପୂର୍ବତମ ପ୍ରତିରକ୍ଷା ବିଭାଗର ପରାମର୍ଶଦାତା ବ୍ରଜେଶ୍ ମିଶ୍ର ପ୍ରକାଶ କରିଛନ୍ତି ।

ଜେନେରାଲ୍ ବିଜୟ କୁମାର ସିଂହ ବିଳମ୍ବରେ ହେଉ ପଛେ ପ୍ରଧାନମନ୍ତ୍ରୀଙ୍କୁ ଚିଠି ଲେଖି ସୈନ୍ୟବାହିନୀର ଆବଶ୍ୟକତା ସମ୍ପର୍କରେ ଜଣାଇବା ପରେ ଏପ୍ରିଲ ୨

ତାରିଖ ଦିନ ପ୍ରତିରକ୍ଷା ମନ୍ତ୍ରଣାଳୟରେ ଏ. କେ. ଆଣ୍ଟୋନିଙ୍କ ସଭାପତିତ୍ୱରେ ଏକ ଜରୁରୀ ବୈଠକ ବସିଥିଲା । ଏଥିରେ ସେ ସେନାଧ୍ୟକ୍ଷ ଭି. କେ. ସିଂହ, ଏୟାର ମାର୍ଶାଲ ଏନ. କେ. ବ୍ରାଉନେ ଏବଂ ନୌସେନା ମୁଖ୍ୟ ଆଡମିରାଲ୍ ନିର୍ମଳ ବର୍ମାଙ୍କ ସହିତ ସେନାବାହିନୀର ଜରୁରୀ ଆବଶ୍ୟକତା ସମ୍ପର୍କରେ ସମୀକ୍ଷା କରିଥିଲେ । ଏହା ଯେ ଜେନେରାଲ୍ ଭି. କେ. ସିଂହଙ୍କର ପ୍ରଧାନମନ୍ତ୍ରୀଙ୍କୁ ମାର୍ଚ୍ଚ ୧ ୨ ତାରିଖରେ ଲେଖିଥିବା ଚିଠିର ପରିଣାମ ସେ କଥା ନିଃସନ୍ଦେହ । ହେଲେ ପରିତାପର ବିଷୟ ଯେ, ଜେନେରାଲ୍ ସିଂହଙ୍କ ଚିଠି ଗଣମାଧ୍ୟମରେ ପ୍ରକାଶିତ ହେବାପରେ ସେଥିରେ ଲିଖିତ ତଥ୍ୟ ଯେ ଦେଶର ସୁରକ୍ଷା ଦୃଷ୍ଟିରୁ କେତେ ଗୁରୁତ୍ୱପୂର୍ଣ୍ଣ, ସେ ବିଷୟରେ ରାଜନୈତିକ ନେତା, ସାଂସଦ ଏବଂ ପୂର୍ବତନ ଅଳାତନ୍ତ୍ରୀମାନେ ଆଲୋଚନା ନକରି ସେ ତଥ୍ୟ କିଭଳି ଗଣମାଧ୍ୟମକୁ ଆସିଲା, ସେ ସମ୍ପର୍କରେ ଆଲୋଚନା କରି କେତେକ ଜେନେରାଲ୍ ସିଂହଙ୍କୁ ବରଖାସ୍ତ କରିବାକୁ ଓ ପ୍ରତିରକ୍ଷା ମନ୍ତ୍ରୀ ଆଣ୍ଟୋନୀଙ୍କର ଇସ୍ତଫା ଦାବି କଲେଣି ।

ବର୍ତ୍ତମାନ ଦେଶବାସୀ ଆତଙ୍କିତ ଯେ ଆମର ସ୍ଥଳସେନା, ବାୟୁସେନା ଓ ନୌସେନା ଲଢ଼େଇ ପାଇଁ ଆଧୁନିକ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ନୁହନ୍ତି । ଯଦି ଯୁଦ୍ଧ ହୁଏ, ୧୯୬୨ ମସିହାରେ ଚୀନ୍‌ର ଭାରତ ଆକ୍ରମଣ ବେଳେ ଯେଭଳି ଭାରତୀୟ ସେନାବାହିନୀର ବିପର୍ଯ୍ୟୟ ଘଟିଥିଲା, ତାହାର ପୁନରାବୃତ୍ତି ନ ହେବ ତାହା ଏଡ଼େଇ ଦିଆଯାଇପାରିବ ନାହିଁ । ସେ ସମୟରେ ମଧ୍ୟ ପ୍ରତିରକ୍ଷା ମନ୍ତ୍ରୀ କୃଷ୍ଣ ମେନନ୍ ଜିପ୍ କିଣା ଦୁର୍ନୀତିରେ ସମ୍ପୃକ୍ତ ଥିଲେ ଏବଂ ଆମ ସୈନ୍ୟବାହିନୀ ଯେ କୌଣସି ଆକ୍ରମଣର ପ୍ରତିହତ କରିବାକୁ ସମର୍ଥ ବୋଲି ବୃଥା ଆସ୍ଫାଳନ କରୁଥିଲେ । ଆଜିର ପ୍ରତିରକ୍ଷା ମନ୍ତ୍ରୀ କିନ୍ତୁ ଦୁର୍ନୀତିଗ୍ରସ୍ତ ନୁହନ୍ତି । ମାତ୍ର ସେତିକି ହୋଇଗଲେ ଚଳିବ ନାହିଁ, ସେ ସକ୍ରିୟ ହୁଅନ୍ତୁ, ପ୍ରତିରକ୍ଷା ବାହିନୀକୁ ସୁଦୃଢ଼ କରିବାକୁ ତତ୍ପରତା ପ୍ରକାଶ କରନ୍ତୁ । ବିଦେଶରୁ ଅସ୍ତ୍ରଶସ୍ତ୍ର ଆମଦାନୀ କରିବା ପରିବର୍ତ୍ତେ ଦେଶରେ ନୂତନ ସାମରିକ ସରଞ୍ଜାମ ଉତ୍ପାଦନ ପାଇଁ କାରଖାନାମାନ ପ୍ରତିଷ୍ଠା କରିବା ଦିଗରେ ପଦକ୍ଷେପ ନିଅନ୍ତୁ । ଶତ ପ୍ରତିଶତ ପ୍ରତ୍ୟକ୍ଷ ବୈଦେଶିକ ପୁଞ୍ଜି ନିବେଶକୁ ଦେଶରେ ଅନୁମତି ପ୍ରଦାନ କରନ୍ତୁ । ଏକବିଂଶ ଶତାବ୍ଦୀରେ ଭାରତର ପ୍ରତିରକ୍ଷା ଯେଭଳି ଯୁଗୋପଯୋଗୀ ହୁଏ, ସେଥିପ୍ରତି ବିଶେଷ ଧ୍ୟାନ ଦିଆଯାଉ । ଅନ୍ତତଃ ଏତିକି କଥା ପ୍ରତ୍ୟେକ ଭାରତୀୟ ତାଙ୍କଠାରୁ ଆଶା କରନ୍ତି । ମାତୃଭୂମିର ସୁରକ୍ଷାରେ ଅବହେଳା ସର୍ବଦା ଅକ୍ଷମଣୀୟ ଅପରାଧ ।

*ଖବର, ୧୮.୪.୨୦୧୨*

# ଖଣି ଦୁର୍ନୀତି ଓ ନିଷ୍କ୍ରିୟ ସରକାର

୨୫ ଏପ୍ରିଲରେ 'ଓଡ଼ିଶା ବିକାଶ ପରିଷଦ'ର ସଭାପତି ସୁଶାନ୍ତ ପାଢ଼ୀ ଓ ସଂପାଦକ ମନ୍ମଥ ରାଉତଙ୍କ ନେତୃତ୍ୱରେ ବହୁ ଯୁବକ ରାଜ୍ୟ ସରକାରଙ୍କ ତ୍ରୁଟିପୂର୍ଣ୍ଣ ଖଣିନୀତିକୁ ତୁରନ୍ତ ସଂଶୋଧନ କରିବା ଓ ୨୦୦୨ ମସିହାଠାରୁ ଖଣି ଲୁଟ୍ କରିଥିବା ବ୍ୟକ୍ତିଙ୍କ ବିରୋଧରେ ଦୃଢ଼ କାର୍ଯ୍ୟାନୁଷ୍ଠାନ ଦାବି କରି ରାଜଭବନ ସାମନାରେ ଧାରଣା ଦେଇଥିଲେ । ସେମାନଙ୍କର ଏକ ପ୍ରତିନିଧିଦଳ ମାନ୍ୟବର ରାଜ୍ୟପାଳଙ୍କ ଉଦ୍ଦେଶ୍ୟରେ ଏକ ସ୍ମାରକପତ୍ର ପ୍ରଦାନ କରିଥିଲେ । ଗତ ଦୁଇ ବର୍ଷ ମଧ୍ୟରେ ମାନ୍ୟବର ରାଜ୍ୟପାଳ ଓଡ଼ିଶାର ଖଣି ଦୁର୍ନୀତି ସଂପର୍କରେ ବହୁ ଅଭିଯୋଗ ପତ୍ର ପୂର୍ବରୁ ମଧ୍ୟ ପାଇଛନ୍ତି ।

ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଏପ୍ରିଲ ପହିଲାରେ ରାଜ୍ୟସ୍ତରୀୟ ଓଡ଼ିଶା ଦିବସ ସମାରୋହରେ ଯୁବସମାଜ ଓଡ଼ିଶା ପ୍ରଗତିରେ ସାରଥୀ ହୁଅନ୍ତୁ ଏବଂ ସେମାନଙ୍କର ନିଷ୍ଠା ଓ କର୍ତ୍ତବ୍ୟପରାୟଣତା ଉପରେ ରାଜ୍ୟର ବିକାଶ ନିର୍ଭରଶୀଳ ବୋଲି ବକ୍ତବ୍ୟ ଦେଇଥିଲେ । ଓଡ଼ିଶାର ଯୁବସମାଜ ବିଶେଷକରି ଓଡ଼ିଶା ବିକାଶ ପରିଷଦର ସଦସ୍ୟମାନଙ୍କ ଉପରେ ମୁଖ୍ୟମନ୍ତ୍ରୀଙ୍କର ଏହି ଚିରାଚରିତ ଲିଖିତ ବକ୍ତୃତା କୌଣସି ପ୍ରଭାବ ପକାଉଥିବା ଭଳି ମନେହୁଏ ନାହିଁ । ସେମାନେ ଜାଣନ୍ତି ରାଜ୍ୟ ସରକାର ଖଣି ରୟାଲଟି ବାବଦରେ ଟନ୍ ପିଛା ମାତ୍ର ୬୬ ଟଙ୍କା ପାଉଥିଲାବେଳେ ଲୁହାପଥର ବଜାରରେ ଅନ୍ୟୁନ ଛଅ ହଜାର ଟଙ୍କାରେ ବିକ୍ରି ହେଉଛି । ସବୁ ମୁନାଫା ରାଜ୍ୟ ବାହାରର ଶିଳ୍ପପତିମାନଙ୍କ ପକେଟକୁ ଯାଉଛି । ଓଡ଼ିଶା ସରକାର ବିଭିନ୍ନ କମ୍ପାନୀକୁ ଏକ ଲକ୍ଷ ଷାଠିଏ ହଜାର ଏକର ଜମି ଖଣି ପାଇଁ ଲିଜ୍ ଦେଇଛନ୍ତି । ଅନ୍ୟ ରାଜ୍ୟ ତୁଳନାରେ ଏହା ଦୁଇ ଗୁଣରୁ ଅଧିକ । କିନ୍ତୁ ଖଣି ରୟାଲଟିରୁ ଆୟ ଅନ୍ୟ ରାଜ୍ୟମାନଙ୍କ ଆୟରୁ ଯଥେଷ୍ଟ କମ୍ । ଖଣି ରୟାଲଟିରୁ ଯେତିକି ଅର୍ଥ ଉପାର୍ଜନ ହେଉଛି, ସେଥିରୁ କାଣିଚାଏ ମଧ୍ୟ ସେ ଅଞ୍ଚଳବାସୀଙ୍କ ଉନ୍ନତି ପାଇଁ ଖର୍ଚ୍ଚ ହେଉନାହିଁ । ଖଣିଗୁଡ଼ିକୁ ଓଡ଼ିଶା ମାଇନିଂ କର୍ପୋରେଶନର ପ୍ରତ୍ୟକ୍ଷ ତତ୍ତ୍ୱାବଧାନକୁ ଆଣି ଖଣିଜ ପଦାର୍ଥର ବ୍ୟବସାୟ କଲେ ରାଜ୍ୟର ଆୟ ଅନ୍ୟୁନ ପଚାଶ ଗୁଣ ବୃଦ୍ଧି ପାଇବ ଏବଂ ସେହି ଆୟରୁ ଆମ ରାଜ୍ୟରେ ବେକାର ଥିବା ଯୁବକ-ଯୁବତୀମାନଙ୍କୁ ବେକାରୀ ଭତ୍ତା ଦିଆଯାଇପାରିବ ।

ପୂର୍ବରୁ କେରଳ ସରକାର ଓ ଏବେ ଉତ୍ତରପ୍ରଦେଶ ସରକାର ତାଙ୍କ ରାଜ୍ୟରେ ଏହିଭଳି ବେକାରୀ ଭତ୍ତା ଦେବାର ବ୍ୟବସ୍ଥା କରିଛନ୍ତି। ଆମ ରାଜ୍ୟ ସରକାର ଏହି ବ୍ୟବସ୍ଥା ପ୍ରଚଳନ କଲେ ତାହା ଅତ୍ୟନ୍ତ ସ୍ୱାଗତଯୋଗ୍ୟ ହେବ ଏବଂ ବର୍ତ୍ତମାନ ଯୁବସଂପ୍ରଦାୟ ମଧ୍ୟରେ ଯେଉଁ ଅସନ୍ତୋଷର ବହ୍ନି ଜଳୁଛି ତାହା ଆଗ୍ନେୟଗିରିର ରୂପ ନେବା ପୂର୍ବରୁ ପରିସ୍ଥିତି ସୁଧୁରିଯିବ।

କେବଳ କେନ୍ଦୁଝର ଜିଲ୍ଲାରେ ପ୍ରାୟ ତିନି ଲକ୍ଷ କୋଟି ଟଙ୍କାର ଖଣିଜ ପଦାର୍ଥ ଲୁଟ୍ ହୋଇଥିବା ବାରମ୍ବାର ଆଲୋଚନା ହେଉଛି। ଏହି ଖଣି ଦୁର୍ନୀତି ସଂପର୍କରେ ଆଠ ଜଣ ବିଧାୟକ ଅଗଷ୍ଟ ୨୦୧୧ରେ ମୁଖ୍ୟମନ୍ତ୍ରୀଙ୍କୁ ଚିଠି ଲେଖି ଖଣି ଲୁଟେରାଙ୍କ ବିରୋଧରେ ଦୃଢ଼ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ଅନୁରୋଧ ଜଣାଇଥିଲେ । ପୂର୍ବତନ ମନ୍ତ୍ରୀ ତଥା ବର୍ତ୍ତମାନ ବରୀର ବିଧାୟକ ଦେବାଶିଷ ନାୟକ କେନ୍ଦୁଝରରେ ହୋଇଥିବା ଖଣି ଦୁର୍ନୀତି ସମ୍ପର୍କରେ ଟିକିନିଖି ବିବରଣୀ ସ୍ୱତନ୍ତ୍ର ଭାବେ ମୁଖ୍ୟମନ୍ତ୍ରୀଙ୍କୁ ପତ୍ର ଲେଖି ଜଣାଇଥିଲେ। ପ୍ରସାଦ ହରିଚନ୍ଦନ, କନକ ବର୍ଦ୍ଧନ ସିଂହଦେଓ ଓ ଅମର ପ୍ରସାଦ ଶତପଥୀ ପ୍ରମୁଖ ବିଧାୟକଗଣ ମଧ୍ୟ ଓଡ଼ିଶାର ଖଣିଜ ପଦାର୍ଥ କ୍ରମାଗତ ଭାବରେ ଲୁଟ୍ ହେଉଥିବା ବିଷୟରେ ବିଧାନସଭାରେ ବହୁବାର ମୁଖ୍ୟମନ୍ତ୍ରୀଙ୍କ ଦୃଷ୍ଟି ଆକର୍ଷଣ କରି ଏହାର ସି.ବି.ଆଇ. ତଦନ୍ତ ଦାବି କରିଥିଲେ। ଓଡ଼ିଶା ହାଇକୋର୍ଟରେ ଭବାନୀ ଶଙ୍କର ପରିଜା ନାମକ ଜଣେ ବିଶିଷ୍ଟ ସମାଜସେବୀ ଓଡ଼ିଶା ଖଣି ଦୁର୍ନୀତିର ସି.ବି.ଆଇ. ତଦନ୍ତ କରିବାକୁ ପ୍ରାର୍ଥନା କରିଛନ୍ତି। ଏହି ମାମଲାର ଶୁଣାଣି ପାଖାପାଖି ଚଉଦ ମାସ ହେଲାଣି, କିନ୍ତୁ ରାୟ ସଂରକ୍ଷିତ ରହିଛି। ରାଜ୍ୟବାସୀ ଉଚ୍ଚ ନ୍ୟାୟାଳୟର ନିଷ୍ପତ୍ତିକୁ ଚାତକ ଭଳି ଅନାଇ ବସିଛନ୍ତି।

କେନ୍ଦୁଝରର ଖଣି ଲୁଟେରାଙ୍କ ମଧ୍ୟରେ ଅନ୍ୟତମ ମୁଖ୍ୟ 'ତ୍ରିବେଣୀ ଆର୍ଥ ମୁଭର୍ସ'ର ପରିଚାଳନା ନିର୍ଦ୍ଦେଶକ ବି. ପ୍ରଭାକରନ ଖଣି ଦୁର୍ନୀତିରେ ଲିପ୍ତ ଥିବାର ବିଧାୟକମାନେ ଅଭିଯୋଗ କରିଥିଲେ ମଧ୍ୟ ସରକାର ଆଜି ପର୍ଯ୍ୟନ୍ତ ଏହି କମ୍ପାନୀ ବିରୋଧରେ କୌଣସି ପଦକ୍ଷେପ ଗ୍ରହଣ କରିନାହାନ୍ତି। ବି.ଜେ.ଡି.ର ଉପ-ସଭାପତି ତଥା ପୂର୍ବତନ ମନ୍ତ୍ରୀ ଡକ୍ଟର ଦାମୋଦର ରାଉତ ବିଧାନସଭାରେ ଏହି କମ୍ପାନୀ ସଂପର୍କରେ ୟୁ.ଡି.ଏ. ପ୍ରଶ୍ନ ସଂଖ୍ୟା ୧୫୦ ଜରିଆରେ ପ୍ରଶ୍ନ କରିଥିଲେ ଯେ, ଇସ୍ପାତ ଓ ଖଣିମନ୍ତ୍ରୀ ଅନୁଗ୍ରହ କରି କହିବେ କି, କେତୋଟି ଲିଜ୍ ଦିଆଯାଇଥିବା ଖଣିରୁ ମେସର୍ସ ତ୍ରିବେଣୀ ମୁଭର୍ସ କମ୍ପାନୀ ରେଜିଂ ଆଉ ଟ୍ରାନ୍ସପୋର୍ଟିଂ ଅପରେସନ ପାଇଁ

ପ୍ରାଧିକୃତ ? ଯଦି ଖଣି ଲିଜ୍‌ଧାରୀ ଅବା ସରକାର ଏହି ଅନୁମତି ଦେଇଥାନ୍ତି ତାହା ଏମ୍‌ସି ରୁଲ୍ ୩୭ର ଉଲ୍ଲଙ୍ଘନ କରୁଛି କି ? ଖଣି ମନ୍ତ୍ରୀ ରଘୁନାଥ ମହାନ୍ତି ଏହି ପ୍ରଶ୍ନର ଉତ୍ତରରେ କହିଥିଲେ ଯେ, ରେଜିଂ ଅବା ଟ୍ରାନ୍ସପୋର୍ଟିଂ କଣ୍ଟ୍ରାକ୍ଟର ଖଣି ଲିଜ୍‌ଧାରୀମାନେ ନିଯୁକ୍ତି ଦେଇଥାନ୍ତି। ତ୍ରିବେଣୀ ମୁଭର୍ସ କମ୍ପାନୀକୁ ରେଜିଂ କଣ୍ଟ୍ରାକ୍ଟର ଭାବେ ଇନ୍ଦ୍ରାଣୀ ପଟ୍ଟନାୟକଙ୍କ ଉଞ୍ଚାବଲୀ ଆଇରନ୍ ଆଣ୍ଡ୍ ମାଙ୍ଗାନିଜ୍ ମାଇନ୍ସ, ମେସର୍ସ ସିରାଜୁଦ୍ଦିନ୍ ଆଣ୍ଡ୍ କୋର ବାଲଦା ବ୍ଲକ ଆଇରନ୍ ଓର ମାଇନ୍ସ, ଆର.ପି. ସାଓଙ୍କ ଗୁଆଲି ଆଇରନ୍ ଓର ମାଇନ୍ସ, କେ.ଜେ.ଏସ୍. ଆଲୁୱାଲିଆଙ୍କ ନୂଆଗାଁ ଆଇରନ୍ ଓର ମାଇନ୍ସ, ଟାଟା ଷ୍ଟିଲର ଯୋଡ଼ା ଇଷ୍ଟ ଆଇରନ ଓର ମାଇନ୍ସ, ତାରିଣୀ ମିନରାଲସ ପ୍ରାଇଭେଟ୍ ଲିମିଟେଡ୍‌ର ଦେଓଝରର ଆଇରନ ଓର ମାଇନ୍ସ ଓ ଡି.ଆର. ପଟ୍ଟନାୟକଙ୍କ ମୁର୍ଗାବେଡ଼ା ଆଇରନ ଓର ମାଇନ୍ସ ପକ୍ଷରୁ ନିୟୋଜିତ କରାଯାଇଛି। ଖଣିମାଲିକମାନେ ଏମସି ରୁଲ୍ ଉଲ୍ଲଙ୍ଘନ କରିଛନ୍ତି କି ନାହିଁ ସେ ସମ୍ପର୍କରେ ଅନୁଧ୍ୟାନ କରିବା ପାଇଁ ରାଜ୍ୟ ସରକାର ଏକ କମିଟି ଗଠନ କରିଛନ୍ତି। ଏହି କମିଟିର ସୁପାରିଶ ଅନୁସାରେ ଆବଶ୍ୟକ ପଦକ୍ଷେପ ନିଆଯିବ। ହେଲେ ମନ୍ତ୍ରୀ ରଘୁନାଥ ମହାନ୍ତି ଅନ୍ୟ ଆବଶ୍ୟକୀୟ ତଥ୍ୟଟି ଦେଇନଥିଲେ। ଖଣିମାଲିକମାନେ ରେଜିଂ କଣ୍ଟ୍ରାକ୍ଟର ନିୟୋଜିତ କରିଥାନ୍ତି ସତ କିନ୍ତୁ ଏଥିପାଇଁ ରାଜ୍ୟ ସରକାରଙ୍କ ଅନୁମତି ଆବଶ୍ୟକ। ଖଣିମାଲିକମାନେ ରୁଲ୍ ୩୭ ଉଲ୍ଲଙ୍ଘନ କରିଛନ୍ତି ଏବଂ ତ୍ରିବେଣୀ ଆର୍ଥ ମୁଭର୍ସ ବେଆଇନ ଭାବେ ନିଜ କାର୍ଯ୍ୟ ଚଳାଉଥିଲାବେଳେ ତାହା ବନ୍ଦ କରିବାକୁ ସରକାର କୌଣସି ପଦକ୍ଷେପ ନେଉ ନାହାନ୍ତି। ଗତ ଆଠ ବର୍ଷରୁ ଊର୍ଦ୍ଧ୍ୱକାଳ ଧରି ତ୍ରିବେଣୀ ଆର୍ଥ ମୁଭର୍ସ ଓଡ଼ିଶାର ଖଣିଗୁଡ଼ିକରୁ ଯେଉଁଭଳି ଭାବେ ବେଆଇନ ଖଣିଜ ସଂପଦ ଉତ୍ତୋଳନ କରି ବାହାରକୁ ଚାଲାଣ କରି ହଜାର ହଜାର କୋଟି ଟଙ୍କା ରୋଜଗାର କରିଛି, ତା'ର ସଠିକ ମୂଲ୍ୟାୟନ କରି ରାଜ୍ୟ ସରକାରଙ୍କ ଖଣି ଆଇନ ଅନ୍ତର୍ଗତ ବ୍ୟବସ୍ଥା ଅନୁସାରେ ସେ ଅର୍ଥ ତ୍ରିବେଣୀ ଆର୍ଥ ମୁଭର୍ସଠାରୁ ଆଦାୟ କରିବାକୁ ପଦକ୍ଷେପ ଆରମ୍ଭ କରିବା ଅତ୍ୟନ୍ତ ଜରୁରୀ ହୋଇପଡ଼ିଛି ବୋଲି ସାଧାରଣରେ ଦାବି ହେଉଛି।

ଏପ୍ରିଲ ୨ ତାରିଖରେ ପ୍ରକାଶିତ ଏକ ନିର୍ଭରଯୋଗ୍ୟ ତଥ୍ୟରୁ ଜଣାପଡ଼ିଛି ଯେ ସରକାରଙ୍କଦ୍ୱାରା ଗଠିତ କମିଟି କେତେକ ଖଣି ଅନୁଧ୍ୟାନ କରି ରିପୋର୍ଟ ଦେଲେଣି ଯେ ଖଣିଗୁଡ଼ିକ ଲିଜ୍‌ଧାରୀଙ୍କ ନାମରେ ଥିଲେ ମଧ୍ୟ ତ୍ରିବେଣୀ ଆର୍ଥ ମୁଭର୍ସ ଏମସି ରୁଲ୍ ୩୭ ଉଲ୍ଲଙ୍ଘନ କରି ସେହି ଖଣିଗୁଡ଼ିକରେ ନିଜର ସମ୍ପୂର୍ଣ୍ଣ ଆଧିପତ୍ୟ ଜାହିର କରି

ଖଣିଜ ପଦାର୍ଥ ଲୁଟ୍ କରିବାରେ ଲାଗିଛି । ରୁଲ୍ ୩୭ ଉଲ୍ଲଙ୍ଘନ କରିଥିବା ପରିପ୍ରେକ୍ଷୀରେ ଅନ୍ୟ କେତେକ ଖଣିମାଲିକଙ୍କୁ କାରଣ ଦର୍ଶାଅ ନୋଟିସ୍ ଜାରି ହୋଇଥିଲେ ମଧ୍ୟ ତ୍ରିବେଣୀ ଆର୍ଥ ମୁଭର୍ସଙ୍କୁ କାରଣ ଦର୍ଶାଅ ନୋଟିସ୍ ଜାରି କରାଯାଇନାହିଁ ଏବଂ ଏହି କମ୍ପାନୀ କିଭଳି ସବୁପ୍ରକାର ଖଣି ନିୟମକୁ ଉଲ୍ଲଙ୍ଘନ କରି ଖଣିଜ ପଦାର୍ଥ ଉତ୍ତୋଳନ କରୁଛି ସେ ସମ୍ପର୍କରେ ସରକାର ଯାଞ୍ଚ କରିବାକୁ କୌଣସି ପଦକ୍ଷେପ ନେଇ ନାହାନ୍ତି । ତ୍ରିବେଣୀ ଆର୍ଥ ମୁଭର୍ସ କେନ୍ଦ୍ର ଓ ରାଜ୍ୟର ଆଇନ ଉଲ୍ଲଙ୍ଘନ କରିଥିବାର ସତ୍ୟତା ଥିବା ସମ୍ପର୍କରେ ଯାଞ୍ଚ କରୁଥିବା କମିଟି ସରକାରଙ୍କୁ ଏକ ବିସ୍ତୃତ ରିପୋର୍ଟ ଦେଇଥିଲେ ମଧ୍ୟ ରାଜ୍ୟ ସରକାର ଅଦ୍ୟାବଧି ତ୍ରିବେଣୀ ଆର୍ଥ ମୁଭର୍ସଠାରୁ କୌଣସି ଜବାବ ତଲବ କରିନାହାନ୍ତି ।

ଆର.ପି. ସାଓ ମାଇନ୍ସ ସମ୍ବନ୍ଧରେ ସରକାରଙ୍କ ଦ୍ୱାରା ଗଠିତ କମିଟି ରିପୋର୍ଟ ଦେଲାପରେ ସାଓଙ୍କୁ କାରଣ ଦର୍ଶାଅ ନୋଟିସ୍ ଜାରି ହୋଇଥିଲା । କିନ୍ତୁ ଶୁଣାଣି ଆଜି ପର୍ଯ୍ୟନ୍ତ ହୋଇପାରି ନାହିଁ । ଆର.ପି. ସାଓଙ୍କ ନାମରେ ଖଣିପଟା ଥିଲେ ମଧ୍ୟ ଏହି କମ୍ପାନୀ ବେଆଇନ୍ ଭାବେ ତ୍ରିବେଣୀ ମୁଭର୍ସ ନାମରେ ୱାର୍କ ଅର୍ଡର ଜାରି କରିଛି, ଯାହା ମିନେରାଲ୍ କନ୍‌ସେସନ୍ ରୁଲ୍ ୩୭(୧)ର ଖୋଲା ଉଲ୍ଲଙ୍ଘନ । ସେହିପରି ମାଇନ୍ସ ଆକ୍ଟ ୧୯୫୨ ଧାରା ୧୭ ଅନୁସାରେ ଖଣି କମ୍ପାନୀ ନିଜର ମାଇନ୍ସ ମ୍ୟାନେଜର ନିଯୁକ୍ତ କରିବା କଥା । କିନ୍ତୁ ଆର.ପି. ସାଓ ମାଇନ୍ସରେ ନିଯୁକ୍ତ ଜେନେରାଲ ମ୍ୟାନେଜର ଓ ଅନ୍ୟାନ୍ୟ ସମସ୍ତ ଅଫିସର ତ୍ରିବେଣୀ ଆର୍ଥ ମୁଭର୍ସ ଦ୍ୱାରା ନିଯୁକ୍ତି ପାଇଛନ୍ତି । ଏହି ମାଇନ୍ସ ଭିତରେ ଥିବା ୬ଟି ୱେ ବ୍ରିଜ୍ ହେଉଛି ତ୍ରିବେଣୀ ଆର୍ଥ ମୁଭର୍ସର ୱେ ବ୍ରିଜ୍, ଯାହାକି ସମ୍ପୂର୍ଣ୍ଣ ବେଆଇନ ଭାବେ ସେଠାରେ କାର୍ଯ୍ୟ କରୁଛି ।

ଓଡ଼ିଶାର ପଡ଼ୋଶୀ ରାଜ୍ୟ ଝାଡ଼ଖଣ୍ଡ ଓ ଛତିଶଗଡ଼ ଲୁହାପଥର ଉତ୍ତୋଳନ କରିବାକୁ କଟକଣା ଜାରି କରିଥିଲେ ମଧ୍ୟ ଓଡ଼ିଶାରେ ଏହି ଉତ୍ତୋଳନ ଉପରେ ଅଦ୍ୟାବଧି କୌଣସି ଅଙ୍କୁଶ ଲଗାଯାଇ ନାହିଁ । ଏହାଦ୍ୱାରା ଖଣିଜ ସମ୍ପଦ ଲୁଟ୍ କରିବାକୁ ସୁଯୋଗ ଦିଆଯାଉଛି । ଯଦି ଏହି ପ୍ରକ୍ରିୟା ଚାଲୁରହେ ତେବେ ଆଉ ମାତ୍ର ଦଶ ବର୍ଷ ମଧ୍ୟରେ ଓଡ଼ିଶାରେ ଖଣିଜ ସମ୍ପଦ ଶେଷ ହୋଇଯିବ ବୋଲି ବିଶେଷଜ୍ଞମାନେ ମତ ଦେଉଛନ୍ତି ।

କମ୍ପଟ୍ରୋଲର ଏଣ୍ଡ ଅଡିଟର ଜେନେରାଲଙ୍କର ୨୦୦୮ ମସିହାର ରିପୋର୍ଟରେ ଉଲ୍ଲେଖ ଅଛି ଯେ ବନସଂରକ୍ଷଣ ଆଇନ-୧୯୮୦ ଅନୁଯାୟୀ ଅଣଜଙ୍ଗଲ କାର୍ଯ୍ୟକ୍ରମ

ତଥା ଖଣି ଖନନ କେନ୍ଦ୍ର ସରକାରଙ୍କ ବିନା ଅନୁମତିରେ କରାଯାଇପାରିବ ନାହିଁ। କିନ୍ତୁ ଅଡିଟ୍ ଯାଞ୍ଚ ବେଳେ ଦେଖାଯାଇଛି ଯେ ଜଙ୍ଗଲ ଅଞ୍ଚଳରେ ଖଣି ଖନନ ସମ୍ପୂର୍ଣ୍ଣ ନିଷିଦ୍ଧ ଥିବାବେଳେ ରାଜ୍ୟ ଇସ୍ପାତ ଓ ଖଣି ବିଭାଗ ଖଣିଜ ସମ୍ପଦ ଉତ୍ତୋଳନ ପାଇଁ ଅନୁମତି ପ୍ରଦାନ କରିଛନ୍ତି ଏବଂ କେତେ ଖଣିଜ ସମ୍ପଦ ଉତ୍ତୋଳନ ହେଲା ସେ ବିଷୟରେ ତାଙ୍କ ପାଖରେ କୌଣସି ହିସାବ ନାହିଁ। ଆମ ରାଜ୍ୟର ସଚେତନ ଯୁବସମାଜ ଉପରୋକ୍ତ ତଥ୍ୟ ଓ ରାଜ୍ୟର ସମ୍ପଦ କିଭଳି ରାଜ୍ୟ ବାହାରର ଖଣିମାଲିକମାନଙ୍କ ଦ୍ୱାରା ଲୁଟ୍ ହେଉଛି ସବୁ ଜାଣୁଛନ୍ତି, ତେଣୁ ସେମାନଙ୍କର ଧୈର୍ଯ୍ୟଚ୍ୟୁତି ଘଟିଛି।

ରାଜ୍ୟର ମୁଷ୍ଟିମେୟ ଅସାଧୁ ନେତା ଶାସନକଳକୁ ଚଳାଉଥିବା କେତେକ ଦୁର୍ନୀତିଗ୍ରସ୍ତ ଅନମନୀୟ ଶାସନକର୍ତ୍ତା ଓ ଅସାମାଜିକ ଭୟପ୍ରଦର୍ଶକ ବ୍ୟକ୍ତିମାନଙ୍କ ସହାୟତାରେ ଯେଭଳି ଅବର୍ଣ୍ଣନୀୟ ଖଣି ଲୁଟ୍‌ରେ ଭାଗୀଦାର ହୋଇଛନ୍ତି ଏହା କୌଣସି କାଳେ ଦେଖା ନଥିଲା। ଖଣି ମହାଦୁର୍ନୀତି ଯୋଗୁଁ ଆଜି ଆମ ରାଜ୍ୟର ଶାସନକଳ ଦେଶ ବିଦେଶରେ ନିନ୍ଦିତ ହେଉଛି। ସି.ବି.ଆଇ. ତଦନ୍ତ ହେଲେ ଦୁର୍ନୀତିରେ ଲିପ୍ତ ଥିବା ବ୍ୟକ୍ତିମାନେ ଝାଡ଼ଖଣ୍ଡର ପୂର୍ବତନ ମୁଖ୍ୟମନ୍ତ୍ରୀ ମଧୁ କୋଡ଼ା ଓ କର୍ଣ୍ଣାଟକ ମୁଖ୍ୟମନ୍ତ୍ରୀ ୟେଦୁରପ୍ପାଙ୍କ ଭଳି ଦଣ୍ଡିତ ହେବେ ଏହା ଜଳଜଳ ହୋଇ ଦିଶୁଛି। ମାନ୍ୟବର ମୁଖ୍ୟମନ୍ତ୍ରୀ ତାଙ୍କ ନିର୍ମଳ ଭାବମୂର୍ତ୍ତିକୁ ବଜାୟ ରଖିବାକୁ ଖଣି ଦୁର୍ନୀତି ସମ୍ପର୍କରେ ଅତି ଶୀଘ୍ର ସି.ବି.ଆଇ. ତଦନ୍ତ କରାଇ ଦୋଷୀ ବ୍ୟକ୍ତିମାନଙ୍କୁ ଚିହ୍ନଟ କରି ସେମାନଙ୍କ ବିରୋଧରେ ଦୃଷ୍ଟାନ୍ତମୂଳକ ପଦକ୍ଷେପ ଗ୍ରହଣ କରିବା ଉଚିତ ହେବ।

*ସମାଜ, ୬.୫.୨୦୧୨*

# ସଶକ୍ତ ଲୋକପାଳ ଆଇନ ପାଇଁ ଜନଆନ୍ଦୋଳନର ପ୍ରସ୍ତୁତି

ଅରବିନ୍ଦ କେଜରିୱାଲ ଚଳିତ ମାସ ୧୨ ତାରିଖ, ଶନିବାର ଦିନ ଭୁବନେଶ୍ୱରରେ ରାଷ୍ଟ୍ରଭାଷା ପ୍ରଚାର ସମିତି ପ୍ରାଙ୍ଗଣରେ 'ଇଣ୍ଡିଆ ଏଗେନ୍‌ଷ୍ଟ କରପ୍‌ସନ୍' ତରଫରୁ ଆୟୋଜିତ ଏକ ବିରାଟ ଜନସମାବେଶରେ ଉଦ୍‌ବୋଧନ ଦେଇ ସଂସଦର ଚଳିତ ଅଧିବେଶନରେ ମେ' ମାସ ୨୨ ତାରିଖ ପୂର୍ବରୁ ଯଦି ସଶକ୍ତ ଲୋକପାଳ ବିଲ୍ ପାଶ୍ ନ ହୁଏ ତେବେ ଆନ୍ନା ହଜାରେଙ୍କ ନେତୃତ୍ୱରେ ପୁନର୍ବାର ଦେଶବ୍ୟାପୀ ଆନ୍ଦୋଳନ ହେବ ବୋଲି ଚେତାବନୀ ଶୁଣାଇଛନ୍ତି । କେଜରିୱାଲ ତାଙ୍କ ଭାଷଣରେ ଓଡ଼ିଶାରେ ମଧ୍ୟ ଦୁର୍ନୀତି ବ୍ୟାପକ ବୋଲି କହିଥିଲେ ଏବଂ ଏଠାରେ ଲୋକପାଳ କାର୍ଯ୍ୟ କରୁଥିଲେ ମଧ୍ୟ ଲୋକପାଳ ଆଇନଟି ଅତ୍ୟନ୍ତ ଦୁର୍ବଳ ଓ ରାଜ୍ୟର ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଲୋକାୟୁକ୍ତ ଗଠନ କହିବା କଥା ବହୁ ଆଗରୁ କହିଥିଲେ ମଧ୍ୟ ଅଦ୍ୟାବଧି କୌଣସି ପଦକ୍ଷେପ ନେଉ ନାହାନ୍ତି ବୋଲି କହିଥିଲେ । ଉତ୍ତରାଖଣ୍ଡରେ ପ୍ରଚଳିତ ଲୋକାୟୁକ୍ତ ଆଇନ୍ ଭଳି ଓଡ଼ିଶାରେ ମଧ୍ୟ ଏକ ସଶକ୍ତ ଲୋକପାଳ ଆଇନ ପାରିତ ହେବା ଉଚିତ ବୋଲି ସେ ଦୃଢ଼ ମତବ୍ୟକ୍ତ କରିଥିଲେ ।

୧୯୬୮ ମସିହାରୁ ବାରମ୍ବାର ଆଗତ ହେଉଥିବା ଲୋକପାଳ ବିଲ ସଂସଦରେ ଦୀର୍ଘ ୪୨ ବର୍ଷ ହେଲା ବହୁଥର ଆଲୋଚିତ ହୋଇଥିଲେ ମଧ୍ୟ ଆଜି ପର୍ଯ୍ୟନ୍ତ ଆଇନର ମାନ୍ୟତା ପାଇନାହିଁ । ଦୁର୍ନୀତି ଦେଶର ଦୁର୍ଗତିର ପ୍ରଧାନ କାରଣ ଓ ଦୁର୍ନୀତି ଦୂରୀକରଣ ପାଇଁ ସବୁବେଳେ କେନ୍ଦ୍ର ସରକାର ଓ ରାଜ୍ୟ ସରକାରମାନେ କହୁଥିଲେ ମଧ୍ୟ ଅନ୍ତଃକରଣରେ ସେମାନେ ଯେ ଏକ ଦୃଢ଼ ଲୋକପାଳ ବିଲ୍ ଚାହୁଁ ନାହାନ୍ତି ତାହା ସେମାନଙ୍କ କାର୍ଯ୍ୟଧାରାରୁ ଜଳ ଜଳ ହୋଇ ଦିଶୁଛି । ଟ୍ରାନ୍ସପ୍ୟାରେନ୍ସି ଇଣ୍ଟରନ୍ୟାସନାଲ କରିଥିବା ସର୍ବେକ୍ଷଣ ଅନୁଯାୟୀ ବିଶ୍ୱର ୧୮୦ଟି ରାଷ୍ଟ୍ର ମଧ୍ୟରେ ଭାରତ ୮୪ ତମ ଦୁର୍ନୀତିଗ୍ରସ୍ତ ରାଷ୍ଟ୍ର । ବିଶ୍ୱର ସର୍ବବୃହତ ଗଣତନ୍ତ୍ର ରାଷ୍ଟ୍ରର ଏହି ଦୂରବସ୍ଥା ଅତ୍ୟନ୍ତ ଲଜ୍ଜାଜନକ । ବର୍ତ୍ତମାନ କେନ୍ଦ୍ର ମନ୍ତ୍ରିମଣ୍ଡଳରେ ୧୬ ଜଣ ଅତ୍ୟନ୍ତ ଦୁର୍ନୀତିଗ୍ରସ୍ତ ମନ୍ତ୍ରୀ

ଅଛନ୍ତି ଓ ୬୦ ଜଣ ସାଂସଦଙ୍କ ବିରୋଧରେ ହତ୍ୟା, ରାହାଜାନି, ଧର୍ଷଣ, ଅପହରଣ ପ୍ରଭୃତି ସଂଗୀନ ଅଭିଯୋଗମାନ ରହିଛି ବୋଲି ଶ୍ରୀ କେଜରିୱାଲ ପ୍ରକାଶ କରିଥିଲେ।

୬ ଏପ୍ରିଲ, ୨୦୧୧ରେ ଦୁର୍ନୀତି ବିରୋଧରେ ଜନଜାଗରଣ ସୃଷ୍ଟି କରିବାକୁ ଓ ଜନଲୋକପାଳ ବିଲ୍ ସଂସଦରେ ପାଶ୍ କରିବାକୁ ଆନ୍ନା ହଜାରେ ଯେଉଁ ଅନଶନ ଆରମ୍ଭ କରିଥିଲେ ତାହା ଏପର୍ଯ୍ୟନ୍ତ ଲୋକେ ପାଶୋରି ନାହାନ୍ତି। ଦେଶର ଶାସନକୁ ଦୁର୍ନୀତିମୁକ୍ତ କରିବାକୁ ଏକ ସଶକ୍ତ ଲୋକପାଳ ବିଲ୍‌ର ଆବଶ୍ୟକତା ରହିଛି ଏହା ସମସ୍ତେ ଅନୁଭବ କରୁଥିଲେ ମଧ୍ୟ କ୍ଷମତାସୀନ ରାଜନୈତିକ ଦଳଗୁଡ଼ିକ ଓ ବର୍ତ୍ତମାନ ୟୁ.ପି.ଏ. ସରକାରରେ ଅଂଶୀଦାର ହୋଇଥିବା ଦଳର ଅଧିକାଂଶ ନେତା ଦୁର୍ନୀତିଗ୍ରସ୍ତ ହୋଇଥିବାରୁ ଏହି ଆଇନକୁ ପାଶ୍ କରାଇ ଦେବେ ନାହିଁ, ଏହି ଆଶଂକା ରହିଛି।

ଏବେ ଦେଶର ୩୦ଟି ରାଜ୍ୟରୁ ମାତ୍ର ୧୯ଟି ରାଜ୍ୟରେ ଲୋକପାଳ ବ୍ୟବସ୍ଥା ରହିଛି। କିନ୍ତୁ ଅଧିକାଂଶ ରାଜ୍ୟ ଲୋକପାଳଙ୍କୁ ଗୁରୁତ୍ୱ ଦିଅନ୍ତି ନାହିଁ। କେତେକ ରାଜ୍ୟରେ ଲୋକାୟୁକ୍ତଙ୍କ ସକ୍ରିୟତା ଫଳରେ ଦୁର୍ନୀତିଗ୍ରସ୍ତ ରାଜନେତା ଓ ଅଫିସରମାନଙ୍କର ଭ୍ରଷ୍ଟାଚାର ଲୋକଲୋଚନକୁ ଆସିଛି। କର୍ଣ୍ଣାଟକର ଲୋକାୟୁକ୍ତ ନ୍ୟାୟମୂର୍ତ୍ତି ସନ୍ତୋଷ ହେଗେଡ଼େଙ୍କ ପ୍ରଚେଷ୍ଟା ଫଳରେ ରାଜ୍ୟର ମୁଖ୍ୟମନ୍ତ୍ରୀ ବି.ଏସ୍. ୟେଦୁରପ୍ପାଙ୍କୁ ଇସ୍ତଫା ଦେବାକୁ ପଡ଼ିଥିଲା ଏବଂ ୟେଦୁରପ୍ପା ଓ ପୂର୍ବତନ ପର୍ଯ୍ୟଟନ ମନ୍ତ୍ରୀ ଜନାର୍ଦ୍ଦନ ରେଡ୍ଡି ଗିରଫ ହୋଇ ଜେଲରେ ଥିଲେ। ବର୍ତ୍ତମାନ କର୍ଣ୍ଣାଟକର ଲୋକାୟୁକ୍ତ ଚଳିତ ବର୍ଷ ଜାନୁୟାରୀ ପ୍ରଥମ ସପ୍ତାହରେ ତିନି ଜଣ ଆଇ.ଏ.ଏସ୍. ଅଫିସର ସିଦ୍ଦାୟା, ଏମ୍. ଭି. ବୀରଭଦ୍ରାୟା ଓ ମହମ୍ମଦ ଏ. ସାଦିକଙ୍କର ଘର ଉପରେ ଗୋଟିଏ ଦିନରେ ଚଢ଼ାଉ କରି ସେମାନଙ୍କ ବହୁ କୋଟି ଟଙ୍କାର ଆୟ ବହିର୍ଭୂତ ସଂପତ୍ତି ଥିବା ଲୋକଲୋଚନକୁ ଆଣି ପ୍ରଶଂସାର ପାତ୍ର ହୋଇଛନ୍ତି। ଉତ୍ତରପ୍ରଦେଶରେ ଲୋକାୟୁକ୍ତଙ୍କ ସୁପାରିଶ ଆଧାରରେ ମାୟାବତୀ ୧୫ ଜଣ ମନ୍ତ୍ରୀଙ୍କୁ ପଦଚ୍ୟୁତ କରିଥିବାର ଦୃଷ୍ଟାନ୍ତ ରହିଛି।

ଆମ ରାଜ୍ୟ ସରକାର ଦୁର୍ନୀତି ବିରୋଧୀ ଉଚ୍ଚାରଣ କରୁଥିଲେ ମଧ୍ୟ ଆଚରଣରେ ସବୁବେଳେ ବିପରୀତ କାର୍ଯ୍ୟ କରନ୍ତି। ରାଜ୍ୟରେ ସାଧାରଣ ଜନତା ରାଜନେତା, ଅସାଧୁ ବ୍ୟବସାୟୀ ଓ ଉଚ୍ଚ ପଦାଧିକାରୀଙ୍କ ଦୁର୍ନୀତିରେ ଅତିଷ୍ଠ ହୋଇପଡ଼ିଲେଣି। ଏକ ଶକ୍ତିଶାଳୀ ଲୋକପାଳ ଆଇନ୍ ପାରିତ ହେବ ବୋଲି ସବୁଆଡ଼େ ଲୋକେ ଉତ୍କଣ୍ଠାର ସହିତ ଅପେକ୍ଷା କରିଥିଲାବେଳେ ଓଡ଼ିଶାର ଲୋକପାଳ ବେଦାନ୍ତ

ବିଶ୍ୱବିଦ୍ୟାଳୟ ପାଇଁ ଜମି ଅଧିଗ୍ରହଣବେଳେ ଆଇନ ଉଲ୍ଲଙ୍ଘନ କରିଥିବା କେତେକ ଉଚ୍ଚପଦସ୍ଥ ଆଇ.ଏ.ଏସ୍. ଅଫିସର ଓ ଅନ୍ୟମାନଙ୍କ ବିରୋଧରେ ୨୦୧୦ ମସିହା ମାର୍ଚ୍ଚ ୧୯ ତାରିଖରେ ଦେଇଥିବା ରିପୋର୍ଟ ଭିତ୍ତିରେ କୌଣସି ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ ନକରି ଆମ ରାଜ୍ୟର ଲୋକପାଳ ବ୍ୟବସ୍ଥାକୁ ଉପହାସ କରିଛନ୍ତି। ଏଯାବତ୍ ଲୋକପାଳଙ୍କ ଦ୍ୱାରା ସରକାରଙ୍କୁ ପ୍ରଦତ୍ତ ୩୦ଟି ରିପୋର୍ଟରୁ ୨୬ଟି ରିପୋର୍ଟ ବିଧାନସଭାରେ ଉପସ୍ଥାପିତ ହୋଇନାହିଁ ବୋଲି ଗଣମାଧ୍ୟମରେ ବାରମ୍ବାର ପ୍ରକାଶିତ ହେଉଛି। ଲୋକପାଳ ଆଇନର ଧାରା ୧୨ (୮)ର ବ୍ୟବସ୍ଥା ଅନୁସାରେ ସରକାର ଲୋକପାଳଙ୍କ ରିପୋର୍ଟକୁ ବିଧାନସଭାରେ ଉପସ୍ଥାପନ କରିବାକୁ ବାଧ୍ୟ। କିନ୍ତୁ ଓଡ଼ିଶା ସରକାର ସେ ବ୍ୟବସ୍ଥାକୁ ଖାତିର କରୁନାହାନ୍ତି। ଓଡ଼ିଶାର ଲୋକପାଳ ଏକ ରିପୋର୍ଟରେ ମାନ୍ୟବର ରାଜ୍ୟପାଳଙ୍କୁ ଜଣାଇଛନ୍ତି ଯେ ବର୍ତ୍ତମାନ ସରକାରର ରାଜ୍ୟର ଆଇନ ଶାସନ ପ୍ରତି ବା ସାମ୍ବିଧାନିକ ଅନୁଷ୍ଠାନଗୁଡ଼ିକ ପ୍ରତି କୌଣସି ସମ୍ମାନ ନାହିଁ।

ଏକ ଅନୁଧ୍ୟାନରୁ ଜଣାପଡ଼ିଛି ଯେ ବହୁ ରାଜ୍ୟରେ ଲୋକପାଳ ବା ଲୋକାୟୁକ୍ତଙ୍କ କ୍ଷମତା ପରିସର ସୀମିତ। ସେମାନଙ୍କୁ ଆବଶ୍ୟକୀୟ କ୍ଷମତା ଦେବାପାଇଁ ବିଭିନ୍ନ ରାଜ୍ୟରେ ଆଇନର ସଂଶୋଧନ କରିବାକୁ ପଡ଼ିବ ଏବଂ ଦକ୍ଷ ଓ ନିରପେକ୍ଷ ବିଚାରପତି ଲୋକପାଳ ପଦବୀରେ ଯେଉଁଭଳି ନିଯୁକ୍ତି ପାଇବେ ସେଥିପ୍ରତି ଧ୍ୟାନ ଦେବାକୁ ପଡ଼ିବ। କେତେକ ରାଜ୍ୟରେ ଲୋକାୟୁକ୍ତ ନିଯୁକ୍ତି ସମୟରେ ବିବାଦୀୟ ସ୍ଥିତି ଉପୁଜିଥାଏ। ଏଠାରେ ଗୁଜୁରାଟର ଉଦାହରଣ ଦେଲେ ବୋଧହୁଏ ସମୀଚୀନ ହେବ। ୨୦୦୩ ମସିହାରୁ ଗୁଜୁରାଟର ଲୋକାୟୁକ୍ତ ପଦବୀ ଖାଲି ପଡ଼ିଥିଲା। ତେଣୁ ରାଜ୍ୟପାଳ ଡକ୍ଟର ଶ୍ରୀମତୀ କମଳା ମହୋଦୟା ଗୁଜୁରାଟର ହାଇକୋର୍ଟର ମୁଖ୍ୟ ବିଚାରପତି ଓ ବିଧାନସଭାର ବିରୋଧୀ ଦଳର ନେତାଙ୍କ ସୁପାରିଶ ଅନୁସାରେ ବିଚାରପତି ଆର. ଏ. ମେହେଟ୍ଟାଙ୍କୁ ୨୬ ଅଗଷ୍ଟ ୨୦୧୧ ମସିହାରେ ନିଯୁକ୍ତି ଦେଇଥିଲେ। ନରେନ୍ଦ୍ର ମୋଦି ସରକାର ଏହି ନିଯୁକ୍ତିକୁ ବାତିଲ କରିବାକୁ ହାଇକୋର୍ଟରେ ଆବେଦନ କରିଥିଲେ କିନ୍ତୁ ହାଇକୋର୍ଟ ଏହି ନିଯୁକ୍ତିକୁ କାଏମ ରଖିଛନ୍ତି। ପଶ୍ଚିମବଙ୍ଗରେ ଲୋକାୟୁକ୍ତ ଆଇନ ଅଛି, କିନ୍ତୁ ବହୁକାଳରୁ ଏହି ପଦବୀଟି ଖାଲି ପଡ଼ିଛି। ତୃଣମୂଳ କଂଗ୍ରେସ ରାଜ୍ୟର କ୍ଷମତା ଅକ୍ତିଆର କରିଥିଲେ ମଧ୍ୟ ମୁଖ୍ୟମନ୍ତ୍ରୀ ମମତା ବାନାର୍ଜୀ ଲୋକାୟୁକ୍ତ ନିଯୁକ୍ତି କରିବାକୁ କୌଣସି ପଦକ୍ଷେପ ନେଇନାହାନ୍ତି ବୋଲି ଅଭିଯୋଗ ହୁଏ।

ଅରବିନ୍ଦ କେଜରିୱାଲ ମେ' ୨୨ ପରେ ସଶକ୍ତ ଲୋକପାଳ ବିଲ୍ କେନ୍ଦ୍ରରେ ଗୃହୀତ କରିବାକୁ ଯେଉଁ ଜନଆନ୍ଦୋଳନର ଆହ୍ୱାନ ଦେଲେ ତାହା ଅତ୍ୟନ୍ତ ସ୍ୱାଗତଯୋଗ୍ୟ କିନ୍ତୁ ଦେଶର ସମସ୍ତ ରାଜ୍ୟରେ ଦୃଢ଼ ଲୋକପାଳ ଆଇନକୁ କାର୍ଯ୍ୟକାରୀ କରିବାକୁ ମଧ୍ୟ ରାଜ୍ୟ ସରକାରମାନଙ୍କ ଉପରେ ଚାପ ପକାଇବା ଅତ୍ୟନ୍ତ ଜରୁରୀ। ଆନ୍ନା ହଜାରେ ତାଙ୍କର ଅନଶନ ଅବ୍ୟବହିତ ପୂର୍ବରୁ ଘୋଷଣା କରିଥିଲେ ଯେ ଦୁର୍ନୀତିର ମୂଳୋତ୍ପାଟନ ଲାଗି ତାଙ୍କ ଆନ୍ଦୋଳନ ଆରମ୍ଭ ହୋଇଛି। ତେଣୁ ଏହି ଆନ୍ଦୋଳନକୁ ଚଳାଇ ରଖିବାକୁ ବିଭିନ୍ନ ରାଜ୍ୟରେ ଉପଯୁକ୍ତ ସଂଗଠନ ଦ୍ୱାରା ଏକ ସୁଚିନ୍ତିତ ଯୋଜନା ପ୍ରସ୍ତୁତ କରିବାର ଆବଶ୍ୟକତା ରହିଛି। ବିଶିଷ୍ଟ ସମାଜଶାସ୍ତ୍ର ବିଶାରଦ ଆଶିଷ ନନ୍ଦୀ ଆଶଂକା ପ୍ରକାଶ କରିଛନ୍ତି ଯେ ଏହି ଯୁଗୋପଯୋଗୀ ଆନ୍ଦୋଳନ ଦୀର୍ଘକାଳ ଧରି ଚଳାଇ ରଖିବା ଏକ କଷ୍ଟସାଧ୍ୟ ବ୍ୟାପାର। ସେଥିପାଇଁ ସବୁ ସ୍ତରରେ ଅଧିକ ପ୍ରସ୍ତୁତିର ଆବଶ୍ୟକତା ରହିଛି, କିନ୍ତୁ ଏଠାରେ କହିଲେ ଅତ୍ୟୁକ୍ତି ହେବ ନାହିଁ ଯେ ଆନ୍ନା ହଜାରେଙ୍କ ସହିତ ଅଳ୍ପ କେତେଜଣ ଜାତୀୟ ସ୍ତରରେ ସୁନାମ କରିଥିବା ନେତା ଯୋଗ ଦେଇଛନ୍ତି। ଏହି ଆନ୍ଦୋଳନରେ ଅଭିନେତା ଅମୀର ଖାଁଙ୍କ ଭଳି ସମାଜ ସୁଧାରକ ଓ ସବୁ ବର୍ଗର ଲୋକମାନଙ୍କ ଦ୍ୱାରା ଆସ୍ଥାଭାଜନ ହୋଇଥିବା ବ୍ୟକ୍ତିଙ୍କର ଆବଶ୍ୟକତା ଅଛି।

ଯୋଗଗୁରୁ ରାମଦେବ ବିଦେଶରେ ଥିବା କଳାଧନ କିପରି ଭାରତକୁ ଫେରିବ, ଭାରତରେ ଭ୍ରଷ୍ଟାଚାର କିଭଳି ଦୂର ହେବ ସେଥିପାଇଁ ତାଙ୍କର ପ୍ରତ୍ୟେକ ଯୋଗ ଶିବିରରେ ଲୋକମାନଙ୍କୁ ସଚେତନ କରାଉଛନ୍ତି। ଆନ୍ନା ହଜାରେ ଏବଂ ତାଙ୍କ ସହଯୋଗୀମାନେ ରାମଦେବଙ୍କ ସହିତ ମିଳିତଭାବରେ ଜନଆନ୍ଦୋଳନ ଆରମ୍ଭ କଲେ ତାହା ବିଶେଷ ପ୍ରଭାବଶାଳୀ ହେବ। ଆନ୍ନାଙ୍କ ଆନ୍ଦୋଳନର ଗୋଟିଏ ଦୁର୍ବଳତା ହେଲା ସବୁ ଦଳର ରାଜନୈତିକ ବ୍ୟକ୍ତିମାନଙ୍କୁ ସେ ତାଙ୍କ ଆନ୍ଦୋଳନରୁ ଦୂରେଇ ରଖିଛନ୍ତି। କିନ୍ତୁ ବିଭିନ୍ନ ରାଜନୈତିକ ଦଳରେ ଯେ ସଚ୍ଚୋଟ ବ୍ୟକ୍ତି ନାହାନ୍ତି ତାହା କହିବା ସତ୍ୟର ଅପଳାପ ହେବ।

ସାମରିକ ବାହିନୀରେ କାର୍ଯ୍ୟକରି ଅବସରଗ୍ରହଣ କରିଥିବା ବହୁ ଉଚ୍ଚ ପଦାଧିକାରୀ ଦେଶପ୍ରୀତିରେ ଉଦ୍‌ବୁଦ୍ଧ ଏବଂ ଦୁର୍ନୀତିମୁକ୍ତ। ସେହିଭଳି ବିଭିନ୍ନ ପ୍ରଶାସନିକ ସେବାରେ ଥିବା ବରିଷ୍ଠ ଅଫିସରମାନଙ୍କ ମଧ୍ୟରୁ ଅନେକ ଦୁର୍ନୀତିମୁକ୍ତ ଓ ଦେଶପାଇଁ ତ୍ୟାଗ କରିବାକୁ ସ୍ପୃହା ରଖନ୍ତି। ଏଠାରେ ମାଓ ସଂଗଠନ ସହିତ କଥାବାର୍ତ୍ତା କରିବାକୁ

ମଧ୍ୟସ୍ଥ ନିଯୁକ୍ତି ହୋଇଥିବା ପୂର୍ବତନ ବରିଷ୍ଠ ଆଇ.ଏ.ଏସ୍. ଅଫିସର ବି. ବି. ଶର୍ମାଙ୍କ ଉଦାହରଣ ଦେବା ଉଚିତ ହେବ। ତେଣୁ ପୁନର୍ବାର ଜନଲୋକପାଳ ଆଇନକୁ ଗୃହୀତ କରାଇବାକୁ ଦେଶରେ ଆନ୍ଦୋଳନ ଆରମ୍ଭ କରିବା ପୂର୍ବରୁ ଏଥିପାଇଁ ସୁଚିନ୍ତିତ ଯୋଜନା କରିବା ଅତ୍ୟନ୍ତ ଜରୁରୀ। ଏଭଳି ଆନ୍ଦୋଳନରେ ନାଗରିକ ସମାଜର ବିଭିନ୍ନ ବର୍ଗର ସଦସ୍ୟ, ଲେଖକ, କବି, ବୁଦ୍ଧିଜୀବୀ, ଗଣମାଧ୍ୟମର ପ୍ରତିନିଧି, ପ୍ରଶାସନିକ କର୍ମଚାରୀ, ଅବସରପ୍ରାପ୍ତ ସେନା ଅଧିକାରୀ, ଆଇନଜୀବୀ, ଯୁବସଂପ୍ରଦାୟ ସମସ୍ତେ ଏହି ଜନଲୋକପାଳ ବିଲକୁ ପାରିତ କରାଇବାକୁ ଲୋକପ୍ରତିନିଧିମାନଙ୍କ ଉପରେ ଚାପ ପ୍ରୟୋଗ କରିବେ ଏବଂ ଏକ ସଶକ୍ତ ଜନଲୋକପାଳ ବିଲ୍ ଯେ ୨୦୧୪ ନିର୍ବାଚନ ପୂର୍ବରୁ ସଂସଦରେ ଗୃହୀତ ହୋଇ ଆଇନରେ ପରିଣତ ହେବ ଏହା ନିଃସନ୍ଦେହ।

*ସମୟ, ୧୬.୪.୨୦୧୨*

# ଆମ ରାଜ୍ୟର ଅତ୍ୟାଚାରିତ ଆଦିବାସୀ ସମ୍ପ୍ରଦାୟ

୨୦୧୨ ମେ' ୨୩ ତାରିଖରେ ପ୍ରକାଶିତ ଏକ ସମ୍ବାଦରୁ ଜଣାପଡ଼ିଛି କେନ୍ଦ୍ର ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀ ଜୟରାମ ରମେଶ ଆମ ରାଜ୍ୟର ମୁଖ୍ୟମନ୍ତ୍ରୀଙ୍କୁ ଏକ ଚିଠିରେ ଜଣାଇଛନ୍ତି ଯେ ଓଡ଼ିଶାର ଅନେକ ମାଓପ୍ରବଣ ଜିଲ୍ଲାଗୁଡ଼ିକରେ ଆଦିବାସୀମାନେ ବିନା କାରଣରେ ଜେଲଖାନାରେ ବନ୍ଦୀ ଅଛନ୍ତି ଏବଂ ସେମାନଙ୍କୁ ଜେଲରୁ ଶୀଘ୍ର ମୁକ୍ତି କରାଯାଉ ବୋଲି ସେ ପରାମର୍ଶ ଦେଇଛନ୍ତି। ଆମ ରାଜ୍ୟ ସରକାରଙ୍କ ବିଧାନସଭାରେ ପ୍ରଦତ୍ତ ଏକ ତଥ୍ୟ ଅନୁସାରେ ୨୦୦୦ ମସିହାରୁ ୨୦୧୦ ନଭେମ୍ବର ସୁଦ୍ଧା ୧୪୩୩ ଜଣ ଆଦିବାସୀଙ୍କୁ ମାଓବାଦୀ କାର୍ଯ୍ୟକଳାପ ଅଭିଯୋଗରେ ଗିରଫ କରାଯାଇ ଜେଲମାନଙ୍କରେ ରଖାଯାଇଥିବାବେଳେ ପୋଲିସ ସେମାନଙ୍କ ମଧ୍ୟରୁ କେବଳ ୩୮୦ ଜଣ ମାଓ କାର୍ଯ୍ୟକଳାପରେ ସଂପୃକ୍ତ ବୋଲି ପ୍ରମାଣ କରିଛି। ଏହି ତଥ୍ୟକୁ କଣ୍ଟ୍ରୋଲର ଓ ଅଡିଟର ଜେନେରାଲ ତାଙ୍କର ୨୦୧୧ ମସିହାରେ ପ୍ରକାଶିତ ରିପୋର୍ଟରେ ଉଲ୍ଲେଖ କରିଛନ୍ତି। ଉପରୋକ୍ତ ତଥ୍ୟଗୁଡ଼ିକ ପ୍ରମାଣିତ କରୁଛି ଯେ ଅନ୍ୟ ୭୫୩ ଜଣଙ୍କୁ ବିନା କାରଣରେ ଜେଲରେ ବନ୍ଦୀ ଭାବରେ ରଖାଯାଇଛି।

ମେ' ୬ ତାରିଖରେ ଜୟରାମ ରମେଶ ପ୍ରକାଶ କରିଥିଲେ ଯେ ମହାତ୍ମାଗାନ୍ଧୀ ଜାତୀୟ ଗ୍ରାମୀଣ ନିଶ୍ଚିତ କର୍ମନିଯୁକ୍ତି ଯୋଜନା (ନରେଗା) କାର୍ଯ୍ୟକାରୀ କରିବାରେ ଓଡ଼ିଶା ସବୁ ରାଜ୍ୟଠାରୁ ପଛୁଆ। ଏହି ଯୋଜନା ସଠିକ ଭାବରେ କାର୍ଯ୍ୟକାରୀ ହୋଇଥିଲେ ଆଦିବାସୀମାନଙ୍କର ଆର୍ଥିକ ଉନ୍ନତି ସମ୍ଭବ ହୋଇପାରିଥାନ୍ତା। କିନ୍ତୁ ଓଡ଼ିଶାରେ ଏହି ଯୋଜନାର କାର୍ଯ୍ୟକାରିତା ଅତ୍ୟନ୍ତ ନୈରାଶ୍ୟଜନକ। ଓଡ଼ିଶା ଏକମାତ୍ର ରାଜ୍ୟ ଯେଉଁଠି ନରେଗା ଦୁର୍ନୀତିର ତଦନ୍ତ ସି.ବି.ଆଇ. କରୁଛି।

୨୦୧୨, ୨୦ ଜାନୁୟାରୀ ଶୁକ୍ରବାର ଦିନ ପ୍ରାୟ ୮ ହଜାର ଆଦିବାସୀ ସଂପ୍ରଦାୟର ପୁରୁଷ-ସ୍ତ୍ରୀ-ପିଲାଙ୍କର ଏକ ବିରାଟ ଶୋଭାଯାତ୍ରା ମାଷ୍ଟର କ୍ୟାଣ୍ଟିନ ଛକଠାରୁ ଅଗ୍ରସର ହେଉଥିଲା, ଯେଉଁଥିରେ ଆଦିବାସୀମାନେ ସେମାନଙ୍କର ଜମି, ଜଳ ଓ ଜୀବିକା ସୁରକ୍ଷିତ କରିବାକୁ ସ୍ଲୋଗାନ ଦେଇଥିଲେ। ୨୦୧୨ ଫେବୃୟାରୀ ମାସରେ କୋରାପୁଟ ଜିଲ୍ଲାର ଆଦିବାସୀମାନଙ୍କ ଉପରେ ହେଉଥିବା ଅନ୍ୟାୟ ଓ

ଅତ୍ୟାଚାର ସଂପର୍କରେ ବିଜେଡି ଦଳର ସାଂସଦ ଜୟରାମ ପାଙ୍ଗି, ବିଧାୟକ ରବିନାରାୟଣ ନନ୍ଦ ଓ ଝିନ ହିକ୍‌କା ପ୍ରମୁଖ ମୁଖ୍ୟମନ୍ତ୍ରୀଙ୍କୁ ଚିଠି ଲେଖି ଆଦିବାସୀମାନଙ୍କ ଜମିଜମା ସମସ୍ୟା ସମାଧାନ କରିବା, ଚାଷୀ ମୂଲିଆ ଆଦିବାସୀ ସଂଘ ସଭ୍ୟମାନଙ୍କ ଉପରୁ ମିଥ୍ୟା ମୋକଦ୍ଦମା ପ୍ରତ୍ୟାହାର କରିବା, ମାଳି ଓ ଦେଓମାଳି ପର୍ବତକୁ ବହୁରାଷ୍ଟ୍ରୀୟ କଂପାନୀ କବଳରୁ ସୁରକ୍ଷା ଦେବା, ନିର୍ମାଣ କାର୍ଯ୍ୟରେ ଇଂଜିନିୟରମାନଙ୍କ ଦ୍ୱାରା ହେଉଥିବା ଦୁର୍ନୀତି ବନ୍ଦ କରିବା, ତଳଡେକାପାଡୁ ଗ୍ରାମର ଧର୍ଷଣ ପ୍ରସଙ୍ଗରେ ତଦନ୍ତ କରିବା ଇତ୍ୟାଦି ଅନେକଗୁଡ଼ିଏ ଦାବୀ ଉପସ୍ଥାପନ କରିଛନ୍ତି। ନାରାୟଣପାଟଣାର ମଦବିରୋଧୀ ଓ ଜମିମୁକ୍ତି ଆନ୍ଦୋଳନ କରୁଥିବା ଚାଷୀମୂଲିଆ ଆଦିବାସୀ ସଂଘକୁ ମାଓବାଦୀଙ୍କ ସଂଗଠନ ଆଖ୍ୟା ଦେଇ ସେମାନଙ୍କ ଉପରେ ପ୍ରଶାସନ ତରଫରୁ ଯେଉଁ ଦମନଲୀଳା ଜାରି ରହିଛି ତାହା ଆଦିବାସୀମାନଙ୍କ ଉପରେ ଅତ୍ୟାଚାରର ଏକ ବିରଳ ନମୂନା। ନିୟମଗିରି ସୁରକ୍ଷା ଆନ୍ଦୋଳନର ନେତା ଡଂଗରିଆ କନ୍ଧ ଲଦ୍‌ସିକ୍‌କାକୁ ମାଓବାଦୀ ବୋଲି କହି ତାଙ୍କ ଉପରେ ପୋଲିସ୍ କରିଥିବା ଅକଥନୀୟ ଅତ୍ୟାଚାର ସମସ୍ତ ସଭ୍ୟ ସମାଜକୁ ଲଜ୍ଜିତ କରିଛି। ଏହା ସୂଚନା ଦିଏ ଯେ ଆଦିବାସୀମାନେ କିଭଳି ଦୟନୀୟ ଅବସ୍ଥାରେ ଜୀବନଯାପନ କରୁଛନ୍ତି।

ନବୀନ ସରକାର ଗାଦିସୀନ ହେବାପରେ ୨୦୦୪ ମସିହାରେ ରାଜଧାନୀ ଭୁବନେଶ୍ୱରରେ ମାଓବାଦୀମାନଙ୍କ ନେତୃତ୍ୱରେ ଏକ ବିରାଟ ଜନସମାବେଶ ଅନୁଷ୍ଠିତ ହୋଇଥିଲା ଏବଂ ମୁଖ୍ୟମନ୍ତ୍ରୀ ମାଓ ପ୍ରତିନିଧିମାନଙ୍କଠାରୁ ଏକ ସ୍ମାରକପତ୍ର ଗ୍ରହଣ କରି ମାଓବାଦୀମାନଙ୍କ ସହିତ ଆଲୋଚନା କରିବାକୁ ସେ ସର୍ବଦା ପ୍ରସ୍ତୁତ ବୋଲି କହିଥିଲେ। ଏହିଭଳି ବହୁବାର ଆଦିବାସୀମାନେ ସେମାନଙ୍କ ଦାବି ଉ   ।ପନ କରିବାକୁ ଦୂରଦୂରାନ୍ତରୁ ଆସି ରାଜଧାନୀରେ ସ୍ୱର ଉତ୍ତୋଳନ କରିଛନ୍ତି, କିନ୍ତୁ ସରକାରଙ୍କ ଉପରେ ତାହାର କୌଣସି ପ୍ରଭାବ ପଡ଼ିନାହିଁ। ମୁଖ୍ୟମନ୍ତ୍ରୀ କେବେ ବି ମାଓବାଦୀ ପ୍ରତିନିଧିଙ୍କ ସହିତ ଆଲୋଚନା କରିନାହାନ୍ତି।

୧୯୯୧ ମସିହାରେ ଉଦାରୀକରଣ ଯୁଗ ଆରମ୍ଭ ହେବାପରେ ଓଡ଼ିଶାରେ ସ୍ପଞ୍ଜ ଆଇରନ୍ କାରଖାନା, ତାପଜ ବିଦ୍ୟୁତ କେନ୍ଦ୍ର, ଇସ୍ପାତ କାରଖାନା, ଆଲୁମିନିୟମ କାରଖାନା ପ୍ରଭୃତି ୧୪୦ଟି ପ୍ରକଳ୍ପ ନିମନ୍ତେ ରାଜ୍ୟ ସରକାର ଦେଶୀ ଓ ବିଦେଶୀ ଶିଳ୍ପସଂସ୍ଥାମାନଙ୍କ ସହିତ ବୁଝାମଣା ପତ୍ର ସ୍ୱାକ୍ଷର କରିଛନ୍ତି। ନବୀନ ସରକାରଙ୍କ ସମୟରେ ୮୧ଟି ବୁଝାମଣାପତ୍ର ସ୍ୱାକ୍ଷର ହୋଇଛି। ଏହି ପ୍ରକଳ୍ପଗୁଡ଼ିକ ପ୍ରତିଷ୍ଠା ପାଇଁ

ଜମି ଅଧିଗ୍ରହଣ କଲାବେଳେ କେତେ ଆଦିବାସୀ ପରିବାର ବିସ୍ଥାପିତ ହୋଇଛନ୍ତି ଆଉ କେତେ ବିସ୍ଥାପିତ ହେବେ ଏବଂ ସେମାନଙ୍କୁ କେଉଁଠାରେ ଥଇଥାନ କରାଯିବ ତାହାର ସଠିକ ତଥ୍ୟ ଆମ ସରକାରଙ୍କ ପାଖରେ ନାହିଁ ବୋଲି ଅଭିଯୋଗ ହେଉଛି। ଆଦିବାସୀମାନେ ଜଂଗଲ ସଫାକରି ପୁରୁଷାନୁକ୍ରମେ ଚାଷକାର୍ଯ୍ୟ କରନ୍ତି, କିନ୍ତୁ ସେମାନଙ୍କ ପାଖରେ ଜମି ପଟ୍ଟା ନଥାଏ। ସରକାର ଏହି ଆଦିବାସୀମାନଙ୍କୁ କୌଣସି କ୍ଷତିପୂରଣ ନଦେଇ ସେମାନଙ୍କୁ ପୋଲିସ ବଳ ଲଗାଇ ତାଙ୍କ ଭିଟାମାଟିରୁ ବିତାଡ଼ିତ କରୁଛନ୍ତି। ଏହି ଆଦିବାସୀମାନେ ଅସହାୟ ହୋଇ ରାଜ୍ୟ ବାହାରକୁ ଜୀବିକା ଅର୍ଜନ ନିମନ୍ତେ ପଳାୟନ କରୁଛନ୍ତି।

୧୯୯୭ ମସିହାରେ ଆମ ଦେଶର ଉଚ୍ଚତମ ନ୍ୟାୟାଳୟ ଆନ୍ଧ୍ରପ୍ରଦେଶର 'ସମତା' ମାମଲାରେ ଦେଇଥିବା ରାୟରେ ଉଲ୍ଲେଖ କରିଥିଲେ ଜମି ଆଦିବାସୀଙ୍କ ଲାଗି ସବୁକିଛି। ଏହା ସେମାନଙ୍କର ଏକମାତ୍ର ସଂପତ୍ତି ଓ ଜୀବନ ଜୀବିକାର ଉତ୍ସ ଏବଂ ସେଥିରୁ ସେମାନଙ୍କୁ କୌଣସି କାରଣ ନେଇ ବିସ୍ଥାପିତ କରାଯାଇପାରିବ ନାହିଁ। କଳକାରଖାନା ଓ ଖଣିଖାଦାନ ନିମନ୍ତେ ମଧ୍ୟ ଆଦିବାସୀମାନଙ୍କର ଜମିକୁ ହସ୍ତାନ୍ତର କରାଯାଇପାରିବ ନାହିଁ। ଏହି ଆଦେଶକୁ ଆମ ରାଜ୍ୟ ସରକାର ପାଳନ କରୁନାହାନ୍ତି ବୋଲି ଗଣମାଧ୍ୟମରେ ବାରମ୍ବାର ପ୍ରକାଶିତ ହେଉଛି।

ଆମ ଦେଶର ପୂର୍ବତନ ରାଷ୍ଟ୍ରପତି ଡକ୍ଟର କେ. ଆର୍. ନାରାୟଣନ ୨୬ ଜାନୁୟାରୀ ୨୦୦୧ ସାଧାରଣତନ୍ତ୍ର ଦିବସରେ ଉଦ୍‌ବୋଧନ ଦେଇ ବିକାଶ ନାଁରେ ଆଦିବାସୀମାନଙ୍କୁ ଜମି, ଜଳ ଓ ଜଙ୍ଗଲରୁ ବିତାଡ଼ିତ କରିବାକୁ ବାରଣ କରିଥିଲେ। ଆଦିବାସୀମାନଙ୍କୁ ଜମି, ଜଳ ଓ ଜଙ୍ଗଲକୁ ବିଭିନ୍ନ ଭାବେ ଉପଯୋଗ କରିବାକୁ ଆଇନଗତ ଅଧିକାର ଦିଆଯାଇଅଛି, କିନ୍ତୁ ଆମ ରାଜ୍ୟ ସରକାର ଆଦିବାସୀମାନଙ୍କ ଜମିକୁ କମ୍ପାନୀ ହାତରେ ଟେକିଦେବାକୁ ତିଳେମାତ୍ର କୁଣ୍ଠାବୋଧ କରୁନାହାନ୍ତି। ଯାହାଦ୍ୱାରା ଆମ ରାଜ୍ୟରେ ବର୍ତ୍ତମାନ ଆଦିବାସୀମାନଙ୍କ ବଞ୍ଚିବା ଦୁର୍ବିସହ ହୋଇଯାଇଛି। ସେମାନଙ୍କୁ ମାଓବାଦୀ ଆଖ୍ୟା ଦେଇ ଗିରଫ କରାଯାଉଛି ଏବଂ ସେମାନଙ୍କୁ ନିର୍ଯାତନାର ଶିକାର ହେବାକୁ ପଡୁଛି। ପୋଲିସ, ଜଂଗଲ, ଅବକାରୀ, ରାଜସ୍ୱ ବିଭାଗର କର୍ମଚାରୀମାନେ ଆଦିବାସୀଙ୍କୁ ନିର୍ଯାତନା ଓ ଶୋଷଣ କରୁଥିବା ଘଟଣା ପ୍ରତ୍ୟେକ ଦିନ ଗଣମାଧ୍ୟମରେ ପ୍ରକାଶ ହୋଇ ଲୋକଲୋଚନକୁ ଆସୁଛି। ଏପରିକି କେତେକ ସ୍ଥାନରେ ଯଥା କାଶୀପୁର, ରାଇଘର, କଳିଙ୍ଗନଗର ଓ ନାରାୟଣପାଟଣାରେ ୨୪

ଜଣ ନିରସ୍ତ୍ର ଆଦିବାସୀ ପ୍ରତିବାଦ କରୁଥିବା ସମୟରେ ପୋଲିସ ଗୁଳିରେ ପ୍ରାଣ ହରାଇଛନ୍ତି ।

୧୯୯୬ ମସିହାରେ କେନ୍ଦ୍ର ସରକାର 'ଅନୁସୂଚିତ ଅଞ୍ଚଳକୁ ସମ୍ପ୍ରସାରିତ ପଞ୍ଚାୟତିରାଜ ଆଇନ୍' (Panchayatraj Extension to Scheduled Area) ଲାଗୁ କରିଥିଲେ । ଲକ୍ଷ୍ୟ ଥିଲା ଆଦିବାସୀମାନଙ୍କର ଜମି, ଜଳ, ଜଙ୍ଗଲର ମାଲିକାନାକୁ ସୁରକ୍ଷା ଓ ସ୍ୱୀକୃତି ଦେବା ଓ ପଞ୍ଚାୟତ ସ୍ତରରେ ଆଦିବାସୀମାନେ ନିଜର ସମସ୍ତ ମାଲିମୋକଦ୍ଦମାର ସମାଧାନ କରିପାରିବେ ଏବଂ ନିଜ ଅଞ୍ଚଳର ବିକାଶ ପାଇଁ ଅଧିକାର ପାଇବେ । କିନ୍ତୁ ଆଦିବାସୀମାନଙ୍କର ଅଧିକାରକୁ ପ୍ରଶାସନିକ ସ୍ତରରେ କେହି କାର୍ଯ୍ୟକାରୀ କରିବାକୁ ପ୍ରସ୍ତୁତ ନୁହନ୍ତି । ପେସା ଆଇନ୍‌ର ବିଭିନ୍ନ ଧାରା, ଏହାର ପରିସର ଓ କାର୍ଯ୍ୟକାରିତା ସଂପର୍କରେ ଅଧିକାଂଶ ଲୋକପ୍ରତିନିଧି ଓ ପ୍ରଶାସକମାନେ ସଂପୂର୍ଣ୍ଣ ଅଜ୍ଞ । ବିଶେଷକରି ବଡ଼ ବଡ଼ ଶିଳ୍ପ ଗଢ଼ିଉଠିଥିବା ଅନୁଗୁଳ, ଢେଙ୍କାନାଳ, କଳାହାଣ୍ଡି, କେଉଁଝର, ଝାରସୁଗୁଡ଼ା ଜିଲ୍ଲାଗୁଡ଼ିକରେ ଆଦିବାସୀମାନଙ୍କ ସ୍ୱାର୍ଥକୁ ଅଣଦେଖା କରି ପେସା ଆଇନ୍‌କୁ ଭ୍ରୂକ୍ଷେପ ନକରି ସରକାର ଆଦିବାସୀଙ୍କ ବିକାଶକୁ ଉପେକ୍ଷା କରୁଛନ୍ତି । ନିୟମଗିରି ସୁରକ୍ଷା ପରିଷଦର ସଭାପତି କୁମତୀଙ୍କ ମତରେ ପେସା ଆଇନ୍ କ'ଣ ସେ ସଂପର୍କରେ ଲାଞ୍ଜିଗଡ଼ ଓ ଥୁଆମୁଳ ରାମପୁର ବ୍ଲକ୍‌ର ସାଧାରଣ ଲୋକେ କିଛି ଜାଣନ୍ତି ନାହିଁ । ଜନଜାତି ଲୋକଙ୍କ ପାଇଁ ସରକାର ଯେଉଁସବୁ ସୁବିଧାସୁଯୋଗର ବ୍ୟବସ୍ଥା କରିଛନ୍ତି, ତାକୁ ସରକାରୀ ଅଫିସର ଓ ପୁଂଜିପତିମାନେ ବାଟମାରଣା କରୁଛନ୍ତି । ଆଦିବାସୀ ଅଞ୍ଚଳରେ ସ୍ୱଚ୍ଛ ଶାସନ ଦୁର୍ଲ୍ଲଭ । ଏଠାରେ ଗୋଟିଏ ଉଦାହରଣ ଦେଲେ ଯଥେଷ୍ଟ ହେବ । ରାଜ୍ୟ ସରକାର ଆନ୍ତର୍ଜାତିକ କୃଷି ଉନ୍ନୟନ ପାଣ୍ଠିରୁ ସହାୟତା ଆଣି 'ଓଡ଼ିଶା ଆଦିବାସୀ ଉନ୍ନୟନ ପ୍ରକଳ୍ପ' ନାମରେ କେତେକ କାର୍ଯ୍ୟକ୍ରମ ହାତକୁ ନେଇଥିଲେ । ସେସବୁ କାର୍ଯ୍ୟକ୍ରମ ସଂପୂର୍ଣ୍ଣ ବିଫଳ ହେଲା । ଏହି କାର୍ଯ୍ୟକ୍ରମରେ ୫୦ କୋଟିରୁ ଉର୍ଦ୍ଧ୍ୱ ଟଙ୍କା ଖର୍ଚ୍ଚ ହୋଇଥିଲା । କିନ୍ତୁ ଏହି ଟଙ୍କାର ସିଂହଭାଗ ହରିଲୁଟ୍ ହୋଇଛି । ସ୍ୱାଧୀନତା ପରଠାରୁ ଆଦିବାସୀମାନଙ୍କ ବିକାଶ ପାଇଁ ଯେତେ ଟଙ୍କା ଖର୍ଚ୍ଚ ହୋଇଛି ତା'ର ସୁଫଳ ଆଦିବାସୀମାନେ ପାଇନାହାନ୍ତି । ତେଣୁ ସରକାରୀ ଅତ୍ୟାଚାରରେ ଅତିଷ୍ଠ ହୋଇ ମାଓବାଦୀମାନେ ବେଳେବେଳେ ନିରୀହ ଲୋକମାନଙ୍କୁ ପଣବନ୍ଦୀ କରୁଛନ୍ତି ଏବଂ ସେମାନଙ୍କ ଦାବୀ ହାସଲ କରିବାକୁ ସରକାରଙ୍କ ଉପରେ ଚାପ ପକାଉଛନ୍ତି । କିନ୍ତୁ ଏହା ଆଦିବାସୀମାନଙ୍କ ସମସ୍ୟାର ସମାଧାନର ସଠିକ ବାଟ

ନୁହେଁ। ଯେପର୍ଯ୍ୟନ୍ତ ନାଗରିକ ସମାଜ ନିଜର ସାମାଜିକ ଦାୟିତ୍ୱ ସଂପର୍କରେ ସଚେତନ ନ ହେବେ ଏବଂ ରାଜ୍ୟରେ ଆଦିବାସୀମାନଙ୍କ ଉପରେ ହେଉଥିବା ଅନ୍ୟାୟ ଅତ୍ୟାଚାର ବିରୋଧରେ ସ୍ୱର ଉତ୍ତୋଳନ ନିରନ୍ତର ଭାବରେ ନ କରିବେ ସେପର୍ଯ୍ୟନ୍ତ ଆଦିବାସୀମାନେ କେବେବି ସେମାନଙ୍କ ପାଇଁ ରହିଥିବା ଆଇନ ବ୍ୟବସ୍ଥାର ସୁଫଳ ପାଇପାରିବେ ନାହିଁ। ଆଦିବାସୀମାନଙ୍କ ଅଧିକାରକୁ ସୁନିଶ୍ଚିତ କରିବା ପାଇଁ ରାଜ୍ୟ ସରକାର ରାଜନୈତିକ ଇଚ୍ଛାଶକ୍ତି ପ୍ରଦର୍ଶନ କଲେ ଆଦିବାସୀମାନେ ତାଙ୍କ ଉପରେ ହେଉଥିବା ଅତ୍ୟାଚାରରୁ ରକ୍ଷା ପାଇପାରିବେ।

*ସମୟ, ୨୮.୬.୨୦୧୨*

# ଆସାମ ହିଂସା ଓ ଅନୁପ୍ରବେଶ ସମସ୍ୟା

ଗତ ୧୯ ଜୁଲାଇ, ଗୁରୁବାରଠାରୁ ଆସାମ ପ୍ରଦେଶରେ ବାଂଲାଦେଶୀ ଅନୁପ୍ରବେଶକାରୀମାନେ ସେମାନଙ୍କର ଚିରାଚରିତ ହିଂସାକାଣ୍ଡ ଆରମ୍ଭ କରିଦେଇଛନ୍ତି। ବାଂଲାଦେଶ ଓ ଭୁଟାନ ସୀମା ନିକଟବର୍ତ୍ତୀ କୋକ୍ରାଝରର ଅଂଚଳରେ ବାଂଲାଦେଶୀ ମୁସଲମାନମାନେ ବୋଡ଼ୋ ସଂପ୍ରଦାୟର ୪ ଜଣ ଯୁବକଙ୍କୁ ଗୁଳିକରି ହତ୍ୟା କରିବା ପରେ ସେଠାରେ ସଂଘର୍ଷର ସୂତ୍ରପାତ ହୋଇଛି। ଏହି ସଂଘର୍ଷ ବୋଡ଼ୋ ଲ୍ୟାଣ୍ଡ ଟେରିଟୋରି ଏରିଆର କୋକ୍ରାଝର, ଚିରାଙ୍ଗ, ବୋଙ୍ଗାଇଗାଁଓ, ଧୁବ୍ରୀ ଓ ବାକ୍‌ସାରେ ଆଦି ପାଞ୍ଚଟି ଜିଲ୍ଲାକୁ ବ୍ୟାପିଛି। ଏହାଫଳରେ ୭୭ ଜଣ ଲୋକ ପ୍ରାଣ ହରାଇଛନ୍ତି ଏବଂ ପାଖାପାଖି ୪ ଲକ୍ଷ ଲୋକ ଗୃହଶୂନ୍ୟ ହୋଇ ରିଲିଫ କ୍ୟାମ୍ପ ଓ ଅନ୍ୟାନ୍ୟ ସ୍ଥାନରେ ମୁଣ୍ଡ ଗୁଂଜିଛନ୍ତି। ପୂର୍ବରୁ ଅକ୍ଟୋବର ୧୯୯୩, ମେ ୧୯୯୬, ସେପ୍ଟେମ୍ବର ୧୯୯୮, ସେପ୍ଟେମ୍ବର ୨୦୦୫, ଅଗଷ୍ଟ ୨୦୦୮, ମାର୍ଚ୍ଚ ୨୦୦୯, ଜାନୁୟାରୀ ୨୦୧୧ରେ ବହୁବାର ବୋଡ଼ୋ ଆଦିବାସୀ ଓ ବାଂଲାଦେଶୀ ମୁସଲମାନ ଅନୁପ୍ରବେଶକାରୀମାନଙ୍କ ମଧ୍ୟରେ ସଂଘର୍ଷ ଘଟି ଶହ ଶହ ଲୋକ ମୃତାହତ ହୋଇଛନ୍ତି ଏବଂ ଲକ୍ଷ ଲକ୍ଷ ଲୋକ ଗୃହଶୂନ୍ୟ ହୋଇ ସରକାରୀ ଅନୁକମ୍ପାରେ ଜୀବନ ବିତାଉଛନ୍ତି। ବିଗତ ୬୦ ବର୍ଷରେ ବୋଡ଼ୋ ଓ ବାଂଲାଦେଶୀ ମୁସଲମାନମାନଙ୍କ ମଧ୍ୟରେ ବହୁବାର ଭୟଙ୍କର ସଂଘର୍ଷ ସଂଗଠିତ ହୋଇଛି ଏବଂ ସବୁଥର ସରକାରୀ ଉଦ୍ୟମରେ ସାମୟିକ ଶାନ୍ତି ପ୍ରତିଷ୍ଠା ହୋଇଛି।

ବୋଡ଼ୋମାନେ ଆସାମ ପ୍ରଦେଶର ମୂଳ ଅଧିବାସୀ ଏବଂ ସେମାନେ ପଶ୍ଚିମ ଆସାମରେ ବାସ କରନ୍ତି। ଏହି ଅଂଚଳ ବାଂଲାଦେଶର ସୀମାନ୍ତକୁ ଲାଗିଛି। ବାଂଲାଦେଶୀ ମୁସଲମାନମାନେ ଅନାୟାସରେ ଆସାମ ଭିତରକୁ ପଶିଆସି ସେଠାରେ ସ୍ଥାୟୀ ଭାବରେ ବସବାସ କରୁଛନ୍ତି। ଏମାନେ ବୋଡ଼ୋମାନଙ୍କ ଜମି ଓ ସରକାରୀ ଜଙ୍ଗଲ ଜମିକୁ ବେଆଇନଭାବେ ଦଖଲ କରିବାରେ ଲାଗିଛନ୍ତି। ବୋଡ଼ୋମାନେ ନିଜ ଅଂଚଳରେ ଅବହେଳିତ ହୋଇ ନିଜର ପ୍ରାଧାନ୍ୟ ହରାଉଥିବାରୁ ସେମାନଙ୍କ ମନରେ ବାଂଲାଦେଶୀ ମୁସଲମାନମାନଙ୍କ ପ୍ରତି ବିଦ୍ୱେଷଭାବ ଜାତ ହୋଇଛି।

କିଛିଦିନ ତଳେ 'ଇଣ୍ଡିଆନ ଏକ୍ସପ୍ରେସ' ସମ୍ବାଦପତ୍ରରେ ନିର୍ବାଚନ କମିଶନର ଏମ୍. ଏସ୍. ବ୍ରହ୍ମା ଲେଖିଥିଲେ, "ଆଜିର ଜାତିଗତ ଦଂଗା, ବାଂଲାଦେଶରୁ ଅନୁପ୍ରବେଶ ସହ ସଂପର୍କିତ।" ବାଂଲାଦେଶୀ ଅନୁପ୍ରବେଶକାରୀମାନଙ୍କ ଯୋଗୁଁ ସ୍ଥାନୀୟ ଲୋକଙ୍କ ପାଇଁ ଜୀବିକା ଅର୍ଜନର ସୁଯୋଗ ସଂକୁଚିତ ହୋଇଯାଇଛି। ବର୍ତ୍ତମାନ ଆସାମର ମୋଟ୍ ୨୭ଟି ଜିଲ୍ଲା ମଧ୍ୟରୁ ୧୧ଟି ଜିଲ୍ଲାରେ ମୁସଲମାନମାନେ ସଂଖ୍ୟା ଗରିଷ୍ଠ ଅଛନ୍ତି। ଅନ୍ୟ ଗୋଟିଏ ଉଲ୍ଲେଖନୀୟ ଘଟଣା ହେଲା ୨୦୦୬ ଓ ୨୦୧୧ରେ ବାଂଲାଦେଶୀ ମୁସଲମାନମାନେ ୟୁ.ଏମ୍.ଏଫ୍.ଏ. ଆସାମର ମିଳିତ ସଂଖ୍ୟାଲଘୁ ଫେଡେରେସନ ଦଳ ଗଠନ କରି ବଦ୍ରୁଦ୍ଦିନ ଅଜମଲଙ୍କ ନେତୃତ୍ୱରେ ନିର୍ବାଚନରେ ଭାଗ ନେଇଥିଲେ। ବର୍ତ୍ତମାନ ବଦ୍ରୁଦ୍ଦିନ ଅଜମଲ ଧୁବ୍ରୀ ଲୋକସଭା ଆସନର ସାଂସଦ ଅଛନ୍ତି ଏବଂ ସେ ଦାବୀ କରିଛନ୍ତି ଯେ 'ବୋଡ଼ୋ ଜନଜାତି ପରିଷଦ'କୁ ଭାଂଗି ଦିଆଯାଉ। କାରଣ ବୋଡ଼ୋମାନଙ୍କ ସଂଖ୍ୟା ସେହି ଜିଲ୍ଲାମାନଙ୍କରେ ମାତ୍ର ୨୭ ପ୍ରତିଶତ।

ବାଂଲାଦେଶୀ ମୁସଲମାନମାନଙ୍କ ଅନୁପ୍ରବେଶକୁ ପ୍ରଥମରୁ ପ୍ରତିରୋଧ କରାଯାଇନାହିଁ। ବାଂଲାଦେଶୀ ଅନୁପ୍ରବେଶକାରୀମାନେ କଂଗ୍ରେସ ପ୍ରାର୍ଥୀମାନଙ୍କୁ ନିର୍ବାଚନରେ ଭୋଟ୍ ଦେଉଥିବାରୁ କଂଗ୍ରେସ ଦଳ ସେମାନଙ୍କୁ ସମସ୍ତ ପ୍ରକାର ସୁବିଧା ଯୋଗାଇ ଦେଉଥିଲେ। ଆମ ଦେଶର ବିଭିନ୍ନ ସ୍ଥାନରେ ବାଂଲାଦେଶୀ ମୁସଲମାନମାନଙ୍କର ଅନୁପ୍ରବେଶ ନିର୍ବିଘ୍ନରେ ବଢ଼ିଚାଲିଛି। ଆମ ଦେଶର ସୀମା ଆଦୌ ସୁରକ୍ଷିତ ନୁହେଁ। ଚାଇନାରେ କି ଆଫଗାନିସ୍ତାନରେ ଯଦି କେହି ସେ ଦେଶର ସୀମା ଉଲଂଘନ କରେ ତାଙ୍କୁ ସେ ଦେଶରେ ଗୁଳି କରି ମାରିଦିଆଯାଏ। ଇଂଲଣ୍ଡ, ଆମେରିକା ପ୍ରଭୃତି ଦେଶକୁ ଅନୁପ୍ରବେଶ କଲେ ସେଠାରେ ଜେଲଦଣ୍ଡ ଭୋଗିବାକୁ ପଡ଼େ ଏବଂ ଅନୁପ୍ରବେଶକାରୀମାନଙ୍କୁ ଜବରଦସ୍ତ ନିଜ ଦେଶକୁ ପଠାଇ ଦିଆଯାଏ। କିନ୍ତୁ ଆମ ଦେଶକୁ ଯେଉଁ ପାକିସ୍ତାନୀ କିମ୍ବା ବାଂଲାଦେଶୀମାନେ ପ୍ରବେଶ କରୁଛନ୍ତି ଆମ ଦେଶରେ ସେମାନଙ୍କୁ ପଡ଼ି କାର୍ଡ, ଡ୍ରାଇଭିଂ ଲାଇସେନ୍ସ, ଭୋଟର ପରିଚୟ ପତ୍ର ଏବଂ ସଂଖ୍ୟାଲଘୁ ଲୋକମାନେ ପାଉଥିବା ସମସ୍ତ ସୁବିଧା ସୁଯୋଗ ଯୋଗାଇ ଦିଆଯାଏ। ଏପରିକି ସେମାନଙ୍କୁ ନିଯୁକ୍ତି କ୍ଷେତ୍ରରେ ମଧ୍ୟ ସୁବିଧାସୁଯୋଗ ଦିଆଯାଉଛି। ଯଦି କେହି ଏହି ଅନୁପ୍ରବେଶକାରୀଙ୍କ ବିରୋଧରେ ସ୍ୱର ଉତ୍ତୋଳନ କରୁଛି ସେମାନଙ୍କୁ ସଂଖ୍ୟାଲଘୁ ବିଦ୍ୱେଷୀ ବୋଲି ଆଖ୍ୟା ଦିଆଯାଉଛି। ଏହି ସଂଖ୍ୟାଲଘୁ ବ୍ୟକ୍ତିମାନେ

ମାନବିକ ଅଧିକାର କମିଶନକୁ ଯାଇ ସେମାନଙ୍କର ସୁରକ୍ଷା ଦାବି କରୁଛନ୍ତି। ଧର୍ମନିରପେକ୍ଷତାର ଦ୍ୱାହି ଦେଇ ଏହି ବାଂଲାଦେଶୀ ଅନୁପ୍ରବେଶକାରୀମାନେ ଆଜି ମହାରାଷ୍ଟ୍ର, ଦିଲ୍ଲୀ, ପଶ୍ଚିମବଂଗ, ଓଡ଼ିଶା ପ୍ରଭୃତି ରାଜ୍ୟମାନଙ୍କରେ ସ୍ଥାୟୀ ବସବାସ କରି ନିଜର ଆଧିପତ୍ୟ ଜାହିର କରିବାରେ ଲାଗିଛନ୍ତି।

କେନ୍ଦ୍ର ସ୍ୱରାଷ୍ଟ୍ର ସଚିବ ଆର୍. କେ. ସିଂହ ଆସାମର ହିଂସାକୁ ନିୟନ୍ତ୍ରଣ କରିବା ଲାଗି କେନ୍ଦ୍ର ପକ୍ଷରୁ ଆସାମ ସରକାରଙ୍କ ଚାହିଦା ମୁତାବକ ସମସ୍ତ ସୁବିଧା ଯୋଗାଇ ଦେଇଛନ୍ତି। ବୋଡ଼ୋଲ୍ୟାଣ୍ଡ ଟେରିଟୋରିଆଲ ଏରିଆ ଡିଷ୍ଟ୍ରିକ୍ଟମାନଙ୍କରେ ପାଖାପାଖି ୧୦,୫୦୦ ଅର୍ଦ୍ଧସାମରିକ ବାହିନୀ ତତ୍ପର ଥିବାବେଳେ ସେମାନଙ୍କୁ ସେନାବାହିନୀର ସହାୟତା ମଧ୍ୟ ଯୋଗାଇ ଦିଆଯାଇଛି। ଆସାମ ସରକାର କେନ୍ଦ୍ରକୁ ସୂଚନା ଦେଇଛନ୍ତି ଯେ ୮ ହଜାର ବର୍ଗ କିଲୋମିଟର ଅଂଚଳରେ ଅନ୍ୟୂନ ୪୦୦ଟି ଗାଁରେ ଲୋକେ ହିଂସାକାଣ୍ଡରେ ଲିପ୍ତ ଅଛନ୍ତି।

ପ୍ରଧାନମନ୍ତ୍ରୀ ଡକ୍ଟର ମନମୋହନ ସିଂହ ଓ କଂଗ୍ରେସ ଅଧ୍ୟକ୍ଷା ସୋନିଆ ଗାନ୍ଧି ଜୁଲାଇ ୨୮ ତାରିଖରେ ଆସାମ ପରିସ୍ଥିତିର ଗୁରୁତ୍ୱକୁ ଉପଲବ୍ଧି କରି କୋକ୍ରାଝର ହିଂସା ପ୍ରଭାବିତ ଅଚଂଳ ଗସ୍ତ କରିଛନ୍ତି ଏବଂ କହିଛନ୍ତି ଯେ ଏହି ହିଂସା ଦେଶ ପାଇଁ ଏକ କଳଙ୍କ। ମନମୋହନ ସିଂହ ସ୍ୱୀକାର କରିଛନ୍ତି ଯେ ବୋଡ଼ୋ ଓ ବାଂଲାଦେଶୀ ଅନୁପ୍ରବେଶକାରୀ ମୁସଲମାନମାନଙ୍କ ମଧ୍ୟରେ ସଦ୍‌ଭାବ ଆଣିବା ଅତ୍ୟନ୍ତ କଷ୍ଟସାଧ୍ୟ ବ୍ୟାପାର। କେନ୍ଦ୍ର ସରକାର ଦୁର୍ଗତଙ୍କ ସାହାଯ୍ୟ ପାଇଁ ୩୦୦ କୋଟି ଟଙ୍କାର ସହାୟତା ପ୍ରଦାନ କରାଯିବ ବୋଲି ଘୋଷଣା କରିଛନ୍ତି।

ବି.ଜେ.ପି.ର ବରିଷ୍ଠ ନେତା ଲାଲକୃଷ୍ଣ ଆଡଭାନୀ ଜୁଲାଇ ୩୧ରେ ହିଂସାଗ୍ରସ୍ତ କୋକ୍ରାଝର, ଚିରାଙ୍ଗ, ଧୁବ୍ରୀ ଓ ବୋଙ୍ଗାଇଗାଁଓ ଅଂଚଳ ପରିଦର୍ଶନ କରି ସ୍ଥିତି ଆକଳନ କରିଥିଲେ ଏବଂ ସେ ହିଂସା ବଢ଼ିବା ଲାଗି ସିଧାସଳଖ କେନ୍ଦ୍ର ସରକାରଙ୍କୁ ଦୋଷ ଦେଇଛନ୍ତି। ସେ କହିଛନ୍ତି ବାଂଲାଦେଶୀ ଅନୁପ୍ରବେଶକୁ ବନ୍ଦ କରିବା ପରିବର୍ତ୍ତେ ଭୋଟ୍ ବ୍ୟାଙ୍କ ରାଜନୀତି ପାଇଁ କେନ୍ଦ୍ରର ୟୁ.ପି.ଏ. ଓ ରାଜ୍ୟର କଂଗ୍ରେସ ସରକାର ଏହି ଅନୁପ୍ରବେଶକୁ ଅଧିକ ପ୍ରୋତ୍ସାହିତ କରୁଛନ୍ତି। ବାଂଲାଦେଶୀ ଅନୁପ୍ରବେଶକାରୀମାନେ ଆସାମର ମୂଳ ଆଦିବାସୀ ବୋଡ଼ୋ ସଂପ୍ରଦାୟକୁ ସେମାନଙ୍କ ଅଂଚଳରୁ ବାହାର କରି ନିଜେ କବଜା କରିବା ଲାଗି ଉଦ୍ୟମ ଚଳାଇଛନ୍ତି। ଏଥିଯୋଗୁଁ ବାରମ୍ବାର ଦଙ୍ଗା ଘଟୁଛି।

ଏଠାରେ ସ୍ମରଣ କରିଦିଆଯାଇପାରେ ଦାରଙ୍ଗ ଜିଲ୍ଲାରେ ୧୯୭୮ ମସିହାରେ ଭୋଟର ତାଲିକା ସଂଶୋଧନ ବେଳେ ଜଣାପଡ଼ିଲା ଯେ ମଂଗଳଦୋଇ ଲୋକସଭା ନିର୍ବାଚନମଣ୍ଡଳୀରେ ବହୁସଂଖ୍ୟକ ବାଂଲାଦେଶୀ ଅନୁପ୍ରବେଶକାରୀ ନିଜକୁ ଭାରତର ଭୋଟର ଭାବେ ତାଲିକାଭୁକ୍ତ କରାଇପାରିଛନ୍ତି। ଏହି ଘଟଣା ଜଣାପଡ଼ିଲା ପରେ ୧୯୭୯ରୁ ୧୯୮୫ ଛଅ ବର୍ଷକାଳ ନିଖିଳ ଆସାମ ଛାତ୍ର ସଂଗଠନ ବେଆଇନ ବାଂଲାଦେଶୀ ଅନୁପ୍ରବେଶକୁ ବିରୋଧ କରି ତୀବ୍ର ଆନ୍ଦୋଳନ ଚଳାଇଥିଲେ। ବେଆଇନ ଅନୁପ୍ରବେଶ ଯୋଗୁଁ ବର୍ତ୍ତମାନ ପରିସ୍ଥିତି ଏଭଳି ହୋଇଛି ଯେ ଆସାମର ୧୨୬ଟି ବିଧାନସଭା ନିର୍ବାଚନମଣ୍ଡଳୀ ଆସନରୁ ୫୪ଟି ଆସନର ବିଧାୟକମାନେ ମୁସଲମାନମାନଙ୍କର ଭୋଟ ଉପରେ ତାଙ୍କ ଭାଗ୍ୟ ନିର୍ଦ୍ଧାରିତ ହେଉଥିବା ଜାଣିଛନ୍ତି। କେନ୍ଦ୍ର ସ୍ୱରାଷ୍ଟ୍ର ମନ୍ତ୍ରୀ ମୁଲାପଲ୍ଲୀ ରାମଚନ୍ଦ୍ରନ୍ ସ୍ୱୀକାର କରିଛନ୍ତି ଯେ ଗତ ଏକ ଦଶନ୍ଧି ମଧ୍ୟରେ ଅନ୍ୟୂନ ୧୪ ଲକ୍ଷ ବାଂଗଲାଦେଶୀ ଭାରତ ଭିତରକୁ ବେଆଇନ ଭାବେ ପଶିଆସିଛନ୍ତି। ସେମାନେ ଆସାମର ପରିସ୍ଥିତିକୁ ଏଭଳି ସାଂଘାତିକ କରିଦେଇଛନ୍ତି ଯେ ନିକଟ ଭବିଷ୍ୟତରେ ସେମାନେ ମଧ୍ୟ ରାଜ୍ୟର ମୁଖ୍ୟମନ୍ତ୍ରୀ ହୋଇପାରିବେ।

୨୩ ଜୁଲାଇ ୨୦୦୮ ମସିହାରେ ଗୌହାଟି ଉଚ୍ଚ ନ୍ୟାୟାଳୟ ତାଙ୍କର ଏକ ଐତିହାସିକ ରାୟରେ ଉଲ୍ଲେଖ କରିଥିଲେ ଯେ "Bangladeshis have become kingmakers in Assam"। ଏହା ଏକ ସର୍ବଜନ ଜ୍ଞାତସାରର କଥା ଯେ ଭାରତର ପୂର୍ବତନ ରାଷ୍ଟ୍ରପତି ଫକୀର ଉଦ୍ଦିନ ଅଲ୍ଲୀ ଅହମ୍ମଦ ତାଙ୍କ ଲୋକସଭା ଆସନରୁ ଜିତିବା ପାଇଁ ବାଂଲାଦେଶୀ ମୁସଲମାନମାନଙ୍କୁ ଆସାମ ଭିତରେ ପ୍ରବେଶ କରି ବସବାସ କରିବାକୁ ପ୍ରୋତ୍ସାହନ ଯୋଗାଇଥିଲେ। ବାଂଲାଦେଶର ପୂର୍ବତନ ବୈଦେଶିକ ମନ୍ତ୍ରୀ ମୁର୍ସେଦ ଖାଁ ୨୦୦୩ ମସିହାରେ ଭାରତ ପରିଦର୍ଶନ ସମୟରେ ସ୍ୱୀକାର କରିଥିଲେ ଯେ ବହୁ ସଂଖ୍ୟାରେ ବାଂଲାଦେଶୀ ବେଆଇନ୍ ଭାବରେ ଆସି ଭାରତରେ ବସବାସ କରୁଛନ୍ତି। ପଶ୍ଚିମବଂଗରେ ଜ୍ୟୋତିବସୁ ମୁଖ୍ୟମନ୍ତ୍ରୀ ଥିବା ସମୟରେ ବାଂଲାଦେଶୀ ଅନୁପ୍ରବେଶକାରୀମାନଙ୍କୁ ସଂପୂର୍ଣ୍ଣ ଭାବରେ ସମର୍ଥନ ଯୋଗାଉଥିବାର ଅଭିଯୋଗ ହୋଇଥିଲା। କାରଣ ସେମାନେ ସି.ପି.ଏମ୍. ଦଳର ଭୋଟର ଥିଲେ। ଆସାମର ବର୍ତ୍ତମାନ ମୁଖ୍ୟମନ୍ତ୍ରୀ ତରୁଣ ଗୋଗଇ ବାଂଲାଦେଶୀ ମୁସଲମାନ ଅନୁପ୍ରେବଶକାରୀମାନଙ୍କୁ ସମର୍ଥନ କରୁଛନ୍ତି ବୋଲି ଅଭିଯୋଗ ହେଉଛି। ତାଙ୍କ ବିରୋଧରେ ଆସାମ ରାଜ୍ୟର ସମସ୍ତ ସାଂସଦ ଓ ବିଧାୟକମାନେ କେନ୍ଦ୍ରର ଗୃହମନ୍ତ୍ରୀ ପି. ଚିଦାମ୍ବରମଙ୍କୁ ଭେଟି ଗୁରୁତର ଅଭିଯୋଗମାନ କରିଛନ୍ତି।

ଭାରତର ଗୁଇନ୍ଦା ସଂସ୍ଥା ସରକାରଙ୍କୁ ଅବଗତ କରାଇଅଛି ଯେ ଲସ୍କର-ଇ-ତୋଇବା, ଜୈସ-ଇ-ମହମ୍ମଦ ଓ ହରକତ୍-ଉଲ୍-ଜିହାଦ-ଇ-ଇସଲାମୀ-ବାଂଲାଦେଶ ଆସାମରେ ଅସ୍ଥିରତା ସୃଷ୍ଟି କରିବାକୁ ବାଂଲାଦେଶୀ ମୁସଲମାନମାନଙ୍କୁ ଅସ୍ତ୍ର ରୂପେ ବ୍ୟବହାର କରୁଛନ୍ତି ଏବଂ ବର୍ତ୍ତମାନର ହିଂସାକାଣ୍ଡରେ ସେମାନଙ୍କ ସଂପୃକ୍ତି ଥାଇପାରେ ବୋଲି ସନ୍ଦେହ କରାଯାଇଛି। ଆସାମ ଦଙ୍ଗାର ପ୍ରତିକ୍ରିୟା ବମ୍ବେ ସହରରେ ମଧ୍ୟ ଅନୁଭୂତ ହେଲାଣି। ଗତ ୧୧ ତାରିଖରେ ଆସାମରେ ହେଉଥିବା ହିଂସାକାଣ୍ଡକୁ ବିରୋଧ କରି ମୁସଲମାନ ସଂଗଠନମାନଙ୍କ ପକ୍ଷରୁ ଦକ୍ଷିଣ ମୁମ୍ବାଇ ଆଜାଦ୍ ମଇଦାନଠାରେ ଆୟୋଜିତ ଏକ ବିରୋଧ ସମାବେଶରେ ହିଂସ୍ର ହୋଇ କେତେକ ବସ୍, ପୋଲିସ୍ ଗାଡ଼ି, ଗଣମାଧ୍ୟମ ଭ୍ୟାନ୍ ପ୍ରଭୃତିକୁ ନିଆଁ ଲଗାଇ ଦେଇଥିଲେ ଏବଂ ଏହି ଗଣ୍ଡଗୋଳକୁ ନିୟନ୍ତ୍ରଣ କରିବାକୁ ପୋଲିସକୁ ଲାଠି, ଲୁହବୁହା ଗ୍ୟାସ ଓ ଫାଙ୍କା ଗୁଳିଚାଳନା କରିବାକୁ ପଡ଼ିଥିଲା।

ଆମ ଦେଶର ରାଜନୈତିକ ନେତୃବୃନ୍ଦ ବିଶେଷକରି କଂଗ୍ରେସ ଦଳ ବାଂଲାଦେଶୀ ମୁସଲମାନ ଓ ଆସାମର ମୂଳ ଅଧିବାସୀମାନଙ୍କର ସଂଘର୍ଷର କାରଣ ସଂପର୍କରେ ଯେ ଜାଣିନାହାନ୍ତି ତାହା ନୁହେଁ; କିନ୍ତୁ ଭୋଟ୍ ବ୍ୟାଙ୍କ ରାଜନୀତି ଯୋଗୁଁ କଂଗ୍ରେସ ଦଳ ସବୁ ନୀତିକୁ ଜଳାଞ୍ଜଳି ଦେଇଛି। କଂଗ୍ରେସ ସରକାରଙ୍କ ଦ୍ୱାରା ଆସାମ ପାଇଁ ସ୍ୱତନ୍ତ୍ର ଭାବେ ପ୍ରସ୍ତୁତ 'ଇଲିଗାଲ ମାଇଗ୍ରେସନ ଡିଟରମିନେସନ ଟ୍ରିବୁନାଲ ଆକ୍ଟ'କୁ ସୁପ୍ରିମ୍ କୋର୍ଟ ଅବୈଧ ଘୋଷଣା କରିଥିଲେ ଏବଂ ୨୦୦୬ ମସିହାରେ ପୁନର୍ବାର ଟ୍ରିବୁନାଲ ଫର୍ ଆସାମ ନିର୍ଦ୍ଦେଶନାମାକୁ ଅବୈଧ ଘୋଷଣା କରିଥିଲେ ଓ କହିଥିଲେ ଯେ ଭାରତରେ ବେଆଇନ ଅନୁପ୍ରବେଶକାରୀମାନଙ୍କ ପାଇଁ ଦୁଇଟି ଆଇନ୍ ତିଆରି ହୋଇପାରିବ ନାହିଁ।

ଆସାମ ହିଂସାକାଣ୍ଡ ପଛରେ କେଉଁମାନଙ୍କର ସଂପୃକ୍ତି ରହିଛି ତାହାର ତଦନ୍ତ ଲାଗି କେନ୍ଦ୍ର ସରକାର ସି.ବି.ଆଇ.କୁ ଦାୟିତ୍ୱ ଦେଇଛନ୍ତି ଏବଂ ସି.ବି.ଆଇ ହିଂସାଗ୍ରସ୍ତ ଅଞ୍ଚଳରେ ପହଞ୍ଚି ତଦନ୍ତ ଆରମ୍ଭ କରିସାରିଲାଣି। ତଦନ୍ତର ଫଳାଫଳ ଯାହା ହେଉନା କାହିଁକି ବାଂଲାଦେଶୀ ଅନୁପ୍ରବେଶକାରୀମାନଙ୍କୁ ଚିହ୍ନଟ କରି ସେମାନଙ୍କୁ ତାଙ୍କ ଦେଶକୁ ପଠାଇଦେବା ଅତ୍ୟନ୍ତ ଜରୁରୀ ହୋଇପଡ଼ିଲାଣି। ନଚେତ୍ ଭାରତର ସଂହତି ପ୍ରତି ସେମାନେ ବିପଦ ସୃଷ୍ଟି କରିବେ ଏହା ନିଃସନ୍ଦେହ।

*ସମାଜ, ୧୮.୮.୨୦୧୨*

# ପାକିସ୍ତାନର ଭାରତ ବିରୋଧୀ ମନୋଭାବ

ଅଖଣ୍ଡ ଭାରତର ବିଭାଜନ ହୋଇ ଧର୍ମ ଭିତ୍ତିରେ ହିଁ ପାକିସ୍ତାନର ସୃଷ୍ଟି ହୋଇଥିଲା। ମହମ୍ମଦ ଅଲ୍ଲୀ ଜିନ୍ନାଙ୍କ ଜିଦ୍ ଏବଂ ବ୍ରିଟିଶ୍ ଭାଇସ୍‌ରୟ ଲର୍ଡ୍ ମାଉଣ୍ଟବେଟେନ୍‌ଙ୍କ ଚକ୍ରାନ୍ତ ଏଥିପାଇଁ ଦାୟୀ। ବିଭାଜନ ପରେ ହିନ୍ଦୁ ମୁସଲମାନ ଭେଦଭାବ ଦିନକୁଦିନ ବୃଦ୍ଧି ପାଇବାରେ ଲାଗିଛି। ଭାରତର ଅବିଚ୍ଛେଦ୍ୟ ଅଙ୍ଗ କାଶ୍ମୀରକୁ ଯେକୌଣସି ଉପାୟରେ ଅକ୍ତିଆର କରିବା ହେଉଛି ପାକିସ୍ତାନ ନେତାମାନଙ୍କର ଏକ ସର୍ବକାଳୀନ ରାଜନୈତିକ ଇସ୍ତାହାର। ଚାରିଚାରି ଥର ଭାରତ ଆକ୍ରମଣ କରି ପରାସ୍ତ ହୋଇଥିଲେ ମଧ୍ୟ ସେମାନେ ସେମାନଙ୍କର ଯୁଦ୍ଧଖୋର ପ୍ରବୃତ୍ତିକୁ ଦମନ କରିପାରି ନାହାନ୍ତି। ଚଳିତ ବର୍ଷ ଆରମ୍ଭରୁ ପାକିସ୍ତାନ କାଶ୍ମୀର ସୀମାନ୍ତରେ ତିନିଥର ଯୁଦ୍ଧ ବିରତି ଚୁକ୍ତି ଉଲ୍ଲଂଘନ କରିସାରିଛି। ଜାନୁଆରୀ ୪ ତାରିଖରେ କ୍ରିଷ୍ଣାଘାଟୀରେ, ଜାନୁଆରୀ ୬ ତାରିଖରେ ରାମପୁର ସେକ୍ଟରରେ ଓ ଜାନୁଆରୀ ୮ ତାରିଖରେ ମେନ୍‌ଧର ସେକ୍ଟରରେ ସେମାନେ ଭାରତୀୟ ସେନାଙ୍କ ଉପରକୁ ପ୍ରବଳ ଗୁଳିଚାଳନା କରିଛନ୍ତି। କିନ୍ତୁ ସବୁଠାରୁ ଲୋମହର୍ଷଣକାରୀ ଘଟଣା ହେଲା ସେମାନେ ଭାରତୀୟ ସୀମା ଭିତରକୁ ପଶି ଆସି ୧୪ ରାଜପୁତାନା ରାଇଫଲ୍‌ସର ଦୁଇଜଣ ଯବାନ୍‌ଙ୍କୁ ହତ୍ୟାକରି ସେମାନଙ୍କ ମଧ୍ୟରୁ ଜଣକର ମୁଣ୍ଡକାଟି ନେଇ ଯାଇଛନ୍ତି। ପାକିସ୍ତାନ ସେନାର ଏଭଳି ପୈଶାଚିକ କାଣ୍ଡ ଭାରତର ସମସ୍ତଙ୍କୁ ଉତ୍ତେଜିତ କରିଛି। ପାକିସ୍ତାନ ସେନାର ଏହି ବର୍ବରୋଚିତ କାର୍ଯ୍ୟକଳାପକୁ ଆଉ ବରଦାସ୍ତ ନ କରି ଯେସାକୁତେସା ନୀତି ଧରିବାକୁ ଭାରତର ସବୁ ରାଜନୈତିକ ଦଳ ଓ ସାଧାରଣ ଜନତା ରାସ୍ତା ଉପରକୁ ଓହ୍ଲାଇ ଆସି ସରକାରଙ୍କ ଉପରେ ଚାପ ପକାଇବା ଆରମ୍ଭ କରିଦେଇଛନ୍ତି। ଭାରତୀୟ ପ୍ରତିରକ୍ଷା ବାହିନୀ ପାକିସ୍ତାନକୁ ଯେକୌଣସି ସମୟରେ ଉଚିତ ଜବାବ ଦେବାକୁ ପ୍ରସ୍ତୁତ ରହିଛି ବୋଲି ବାୟୁସେନା ମୁଖ୍ୟ ଏୟାର ମାର୍ଶାଲ୍ ଏନ୍.ଏ.କେ. ବ୍ରାଉନ୍ ଏବଂ ସ୍ଥଳ ସେନାଧକ୍ଷ ଜେନେରାଲ ବିକ୍ରମ ସିଂହ ସମ ସ୍ୱରରେ କହିଛନ୍ତି। ସବୁବେଳେ ଚୁପ୍ ରହୁଥିବା ଆମ ପ୍ରଧାନମନ୍ତ୍ରୀ ଡକ୍ଟର ମନମୋହନ ସିଂହ ଜାନୁଆରୀ ୧୪ ତାରିଖ ଦିନ ପାକିସ୍ତାନକୁ ଚେତାବନୀ ଦେଇ କହିଛନ୍ତି ଯେ, ପାକିସ୍ତାନ ନିଜ ଆଭିମୁଖ୍ୟରେ ପରିବର୍ତ୍ତନ ନ

ଆଣିଲେ ଭାରତ ନୀରବଦ୍ରଷ୍ଟା ହୋଇ ବସି ରହିବ ନାହିଁ। କାଶ୍ମୀର ସମସ୍ୟାକୁ ପୁନର୍ବାର ଉଜ୍ଜୀବିତ କରିବାକୁ ପାକିସ୍ତାନ ଏକ ନୂଆ ଚାଲ୍ ଖେଳୁଛି ବୋଲି ଉଭୟ ପ୍ରତିରକ୍ଷା ମନ୍ତ୍ରୀ ଏ.କେ.ଆଣ୍ଟୋନୀ ଓ ବୈଦେଶିକ ମନ୍ତ୍ରୀ ସଲମାନ୍ ଖୁର୍ସିଦ୍ କହିଛନ୍ତି। ଭାରତ - ପାକିସ୍ତାନ ଭିତରେ ଏହି ଉତ୍ତେଜନା ଲାଗି ରହିଥିବା ବେଳେ ଲସ୍କର-ଇ-ତୋଇବାର ମୁଖ୍ୟ ହାଫିଜ୍ ସୟିଦ ଜାନୁଆରୀ ୧୦ ତାରିଖରେ କହିଛି ଯେ, କାଶ୍ମୀରରେ ଲସ୍କର-ଇ-ତୋଇବା ଅଧିକ ହିଂସାକାଣ୍ଡ ଘଟାଇବ। ସେଥିପାଇଁ ଭାରତ ପ୍ରସ୍ତୁତ ରହୁ। ପାକିସ୍ତାନ ସରକାର ସୈନ୍ୟବାହିନୀ ଦ୍ୱାରା ପରିଚାଳିତ ହେଉଛି ଏବଂ ସୈନ୍ୟବାହିନୀ ଲସ୍କର-ଇ-ତୋଇବା, ଅଲ-କାଏଦା ଓ ତାଲିବାନ୍ ନିର୍ଦ୍ଦେଶରେ କାର୍ଯ୍ୟ କରୁଛି ବୋଲି ସମସ୍ତେ ଜାଣନ୍ତି।

ପାକିସ୍ତାନର ଭାରତ ବିରୋଧୀ ମନୋଭାବ ଧର୍ମୀୟ ଅସହିଷ୍ଣୁତା ସହିତ ଜଡ଼ିତ ବୋଲି ବହୁ ପ୍ରମାଣ ରହିଛି। ପାକିସ୍ତାନରେ ବସବାସ କରୁଥିବା ସଂଖ୍ୟାଲଘୁ ହିନ୍ଦୁଙ୍କ ଉପରେ ଅମାନବୀୟ ଅତ୍ୟାଚାର ଚାଲିଛି। ପାକିସ୍ତାନରେ ଏବେ ପାଖାପାଖି ୧ କୋଟି ହିନ୍ଦୁ ରହୁଛନ୍ତି। ସେମାନେ ସେଠାରେ ଏତେ ଅସୁରକ୍ଷିତ ଯେ, ସେମାନଙ୍କ ମଧ୍ୟରୁ ଅନେକ ପାକିସ୍ତାନ ଛାଡ଼ି ଭାରତ ପଳାଇ ଆସିବାକୁ ଚାହୁଁଛନ୍ତି। ପାକିସ୍ତାନରେ ହିନ୍ଦୁମାନଙ୍କର ଏହି ଦୁର୍ଦ୍ଦଶାକୁ ଲୋକସଭାରେ ବିଜେପି ସଭାପତି ରାଜନାଥ ସିଂହ, ସମାଜବାଦୀ ପାର୍ଟିର ମୁଲାୟମ ସିଂହ ଯାଦବ ଓ ବିଜୁ ଜନତା ଦଳର ସାଂସଦ ଭର୍ତ୍ତୃହରି ମହତାବ ପାକିସ୍ତାନରେ ବର୍ତ୍ତମାନ କାର୍ଯ୍ୟରତ ମାନବାଧିକାର ଆୟୋଗର ସଦସ୍ୟ ଇଫ୍‌ରାସିଦ୍ଦିକ୍‌ଙ୍କ ବକ୍ତବ୍ୟ ଉଦ୍ଧାର କରି ବହୁ ଉଦ୍‌ବେଗଜନକ ତଥ୍ୟ ପ୍ରଦାନ କରିଛନ୍ତି। ହିନ୍ଦୁମାନେ ପାକିସ୍ତାନ ସରକାରଙ୍କଠାରୁ କୌଣସି ସୁରକ୍ଷା ପାଉନାହାନ୍ତି ଓ ମୌଳବାଦୀ ମୁସଲମାନଙ୍କ ଦ୍ୱାରା ଅତ୍ୟାଚାରିତ ହେଉଛନ୍ତି, ଯାହା ଅତ୍ୟନ୍ତ ପରିତାପର ବିଷୟ। ସେମାନେ ସେଠାରେ ଅପହରଣ, ଲୁଟ୍, ବଳପ୍ରୟୋଗ ପୂର୍ବକ ଧର୍ମାନ୍ତରୀକରଣ ଆଦିର ଶିକାର ହେବା ଏକ ଦୈନନ୍ଦିନ ଘଟଣାରେ ପରିଣତ ହୋଇଛି। ହିନ୍ଦୁ ଯୁବତୀମାନଙ୍କୁ ଅପହରଣ କରି ମୁସଲମାନ ଯୁବକଙ୍କ ସହିତ ବିବାହ କରାଯାଉଛି ଓ ସେମାନେ ସ୍ୱଇଚ୍ଛାରେ ବିବାହ କରୁଥିବା ସେମାନଙ୍କଠାରୁ ଲେଖାଇ ନିଆଯାଉଛି। ପାକିସ୍ତାନର ରାଷ୍ଟ୍ରପତି ଆସଫ୍ ଅଲ୍ଲୀ ଜର୍ଦ୍ଦାରୀ ହିନ୍ଦୁମାନଙ୍କ ଦୁଃଖ ଦୁର୍ଦ୍ଦଶା ବୁଝିବା ପାଇଁ ଏକ ୩ ଜଣିଆ କମିଟି ଗଠନ କରିଛନ୍ତି। ମାତ୍ର ଏହି କମିଟି ହିନ୍ଦୁମାନଙ୍କ ସମସ୍ୟାକୁ ଅଣଦେଖା କରୁଥିବା ଅଭିଯୋଗ ହେଉଛି। ପାକିସ୍ତାନର ଏକ ସମ୍ବାଦପତ୍ର 'ନ୍ୟୁଜ୍

ଇଣ୍ଟରନ୍ୟାସନାଲ' ଉଲ୍ଲେଖ କରିଛି ଯେ, ସିନ୍ଧୁ ଓ ବେଲୁଚିସ୍ତାନ ପ୍ରଦେଶରେ ରହୁଥିବା ହିନ୍ଦୁମାନେ ସର୍ବାଧିକ ଅତ୍ୟାଚାର ଓ ନିର୍ଯାତନାର ସମ୍ମୁଖୀନ ହେଉଛନ୍ତି। ସେମାନଙ୍କୁ ପାକିସ୍ତାନ ସରକାର ସୁରକ୍ଷା ଯୋଗାଇ ଦେଉନାହିଁ। ପାକିସ୍ତାନର ସିନ୍ଧୁ ପ୍ରଦେଶରେ ଏକଦା ସବୁଠାରୁ ଅଧିକ ସଂଖ୍ୟକ ହିନ୍ଦୁ ବାସ କରୁଥିଲେ। ସେମାନଙ୍କୁ ଜୋର ଜବରଦସ୍ତ ମୁସଲମାନ ଧର୍ମ ଗ୍ରହଣ କରାଉଥିବା ଯୋଗୁଁ ସେଠାରେ ସମ୍ପ୍ରତି ହିନ୍ଦୁଙ୍କ ସଂଖ୍ୟା ବହୁ ପରିମାଣରେ ହ୍ରାସ ପାଇଛି। ଭାରତରେ ହିନ୍ଦୁ-ମୁସଲମାନ୍‌ଙ୍କ ମଧ୍ୟରେ ସାମାନ୍ୟତମ ଗଣ୍ଡଗୋଳକୁ ପାକିସ୍ତାନରେ ଦଙ୍ଗାର ରୂପ ଦିଆଯାଏ ଓ ସେଠାକାର ହିନ୍ଦୁମାନଙ୍କ ଉପରେ ମୌଳବାଦୀମାନେ ଅକଥନୀୟ ଅତ୍ୟାଚାର କରିଥାନ୍ତି। ପରିସ୍ଥିତି ଏଭଳି ସାଂଘାତିକ ହୋଇଛି ଯେ, ପାକିସ୍ତାନରୁ ତୀର୍ଥଯାତ୍ରାରେ ବାହାନାରେ ଭିସା ଧରି ଆସୁଥିବା ପାକ୍-ହିନ୍ଦୁମାନେ ପୁଣିଥରେ ଦେଶକୁ ଫେରିବା ପାଇଁ ଆଦୌ ଇଛା ପ୍ରକାଶ କରୁନାହାନ୍ତି। ଏଠାରେ ଉଲ୍ଲେଖ କରିବା ଉଚିତ ହେବ ଯେ, ପାକିସ୍ତାନରେ ଶହଶହ ହିନ୍ଦୁ ମନ୍ଦିରକୁ ଭାଙ୍ଗି ଦିଆଯାଇଛି। ଅଳ୍ପଦିନ ତଳେ କରାଚୀରେ ଥିବା ୨ଶହ ବର୍ଷର ଏକ ପୁରୁଣା ଲକ୍ଷ୍ମୀନାରାୟଣ ମନ୍ଦିରକୁ ଭାଙ୍ଗିବା ପାଇଁ କରାଚୀ ପୋର୍ଟ ଟ୍ରଷ୍ଟ ଦ୍ୱାରା ହୋଇଥିବା ଉଦ୍ୟମକୁ ସିନ୍ଧ୍ ପ୍ରଦେଶ ହାଇକୋର୍ଟ ବାରଣ କରିଛନ୍ତି। ହିନ୍ଦୁମାନଙ୍କ ଉପରେ ଅତ୍ୟାଚାର ଓ ହିନ୍ଦୁ ମନ୍ଦିର ଲୋପ କରିବା ଉଦ୍ୟମକୁ ବନ୍ଦ କରିବା ପାଇଁ ଭାରତ ସରକାର ଅନ୍ତର୍ଜାତୀୟ ସଂସ୍ଥାମାନଙ୍କ ମାଧ୍ୟମରେ ପାକିସ୍ତାନ ଉପରେ ଚାପ ପକାଇବା ଉଚିତ।

ପାକିସ୍ତାନ ମୌଳବାଦୀମାନେ ଯେ ନିଜ ଦେଶରେ ହିନ୍ଦୁମାନଙ୍କୁ ନିର୍ଯାତୀତ କରୁଛନ୍ତି ତାହାନୁହେଁ; ଭାରତର ମୁସଲମାନ୍‌ମାନେ କିଭଳି ମୌଳବାଦୀ ଆଦର୍ଶ ଗ୍ରହଣ କରି ଭାରତ ଭିତରେ ହିଂସାକାଣ୍ଡ ଘଟାଇବେ ସେଥିପାଇଁ ଗୋଟିଏ ସୁଚିନ୍ତିତ କାର୍ଯ୍ୟକ୍ରମ ପ୍ରସ୍ତୁତ କରିଛନ୍ତି।

ପାକିସ୍ତାନର ଆଇ.ଏସ୍.ଆଇ.ରୁ ସମର୍ଥନ ପାଇ ଆତଙ୍କବାଦୀ ସଂଗଠନ ଇଣ୍ଡିଆନ୍ ମୁଜାହିଦିନ୍ (ଆଇ.ଏମ୍.) ଭାରତର ବିଭିନ୍ନ ରାଜ୍ୟରେ ତା'ର କାର୍ଯ୍ୟକ୍ରମକୁ ସକ୍ରିୟ କରିଛି। ବିଶେଷକରି, ଉତ୍ତରପ୍ରଦେଶ, ମଧ୍ୟପ୍ରଦେଶ, ବିହାର, ଗୁଜରାଟ, କର୍ଣ୍ଣାଟକ, କେରଳ ଓ ନୂଆଦିଲ୍ଲୀରେ ଏହି ସଂଗଠନ ବେଶ୍ ସକ୍ରିୟ ରହିଛି। ଆଇ.ଏମ୍.ର ଗଣମାଧ୍ୟମ ମୁଖ୍ୟ ଭାବରେ ପୀରଭୋଏ ୨୦୦୮ ମସିହାରେ ଗିରଫ ହୋଇଥିଲେ। ସେତେବେଳେ ସେ ସୂଚନା ଦେଇଥିଲେ ଯେ, ଅନେକ ଶିକ୍ଷିତ ମୁସ୍‌ଲିମ୍ ଯୁବକ

ଆଇ.ଏମ୍.ର କ୍ୟାଡରଭୁକ୍ତ ହୋଇଛନ୍ତି। ସେମାନଙ୍କୁ ଇମ୍ପ୍ରୋଭାଇଜଡ଼୍ ଏକ୍ସପ୍ଲୋସିଭ୍ ଡିଭାଇସେସ୍ (ଆଇ.ଇ.ଡି.) ବ୍ୟବହାର କରି ବୋମା ତିଆରି କରିବା ଏବଂ ମାଇକ୍ରୋଚିପ୍ ଟାଇମ୍‌ର ଉପଯୋଗ କରିବା ଆଦି କୌଶଳ ବିଷୟରେ ତାଲିମ ଦିଆଯାଉଛି। ଏହି ସଂଗଠନ ପାଇଁ କୁଏତ୍, ରିଆଦ୍, ଚିକାଗୋ ଏବଂ ପାକିସ୍ତାନର ବିଭିନ୍ନ ସ୍ଥାନରୁ ପାଣ୍ଠି ସଂଗ୍ରହ କରାଯାଉଛି। ଏଠାରେ ସ୍ମରଣ କରାଇ ଦିଆଯାଇପାରେ ଯେ, ୨୦୧୦ ଡିସେମ୍ବର ମାସରେ ବାରାଣସୀଠାରେ ହୋଇଥିବା ବିସ୍ଫୋରଣ, ୨୦୧୧ ମେ' ମାସରେ ଦିଲ୍ଲୀ ହାଇକୋର୍ଟରେ ହୋଇଥିବା ବିସ୍ଫୋରଣ, ୨୦୧୨, ଅଗଷ୍ଟ ୧ ତାରିଖରେ ପୁନେଠାରେ ହୋଇଥିବା ବିସ୍ଫୋରଣ ଘଟଣାରେ ଆଇ.ଏମ୍.ର ସଦସ୍ୟମାନେ ଜଡ଼ିତ ଥିଲେ। ବର୍ତ୍ତମାନ ଆଇ.ଏମ୍. ତା'ର ଶକ୍ତିକୁ ବହୁମାତ୍ରାରେ ବୃଦ୍ଧି କରିପାରିଛି। ଗତବର୍ଷ ସେପ୍ଟେମ୍ବର ମାସ ଦ୍ୱିତୀୟ ସପ୍ତାହରେ ନୂଆଦିଲ୍ଲୀଠାରେ ଅନୁଷ୍ଠିତ ହୋଇଥିବା ରାଜ୍ୟ ପୋଲିସ୍ ଡିଜି, ଆଇଜି ଏବଂ କେନ୍ଦ୍ର ସୁରକ୍ଷା ଏଜେନ୍ସି ମୁଖ୍ୟମାନଙ୍କର ବୈଠକରେ ଆଇ.ଏମ୍.ର ଜେହାଦ ଶିବିର ସମ୍ପର୍କରେ ଆଲୋଚନା ହୋଇ ଗଭୀର ଉଦ୍‌ବେଗ ପ୍ରକାଶ କରାଯାଇଛି। ନିକଟରେ ଆନ୍ଧ୍ରପ୍ରଦେଶର ବିଧାୟକ ମଜଲିସ୍-ଏ-ଇତ୍ତେହାଦୁଲ ମୁସ୍‌ଲିମନ୍‌ର ଆକବରୁଦ୍ଦିନ୍ ଓବେସୀ ସାମ୍ପ୍ରଦାୟିକ ସଦ୍‌ଭାବ କ୍ଷୁଣ୍ଣ କରିବା ଭଳି ଉତ୍ତେଜନାପୂର୍ଣ୍ଣ ବକ୍ତବ୍ୟ ଦେଇଥିବା ଅଭିଯୋଗରେ ଗିରଫ ହୋଇଛନ୍ତି। ହାତଗଣତି ସଂଖ୍ୟାଲଘୁ ନେତାମାନଙ୍କର ଏହିଭଳି ମନୋଭାବ ଦେଶର ସଂହତି ପାଇଁ ଘୋର ଅନ୍ତରାୟ ସୃଷ୍ଟି କରୁଛି। ଭାରତୀୟ ସୀମାରେ ଉତ୍ତେଜନା ଲାଗି ରହିଥିବା ବେଳେ ଆଭ୍ୟନ୍ତରୀଣ ସୁରକ୍ଷା ବିପର୍ଯ୍ୟସ୍ତ ହୋଇପଡ଼ିଛି। ଏହିପରିପ୍ରେକ୍ଷୀରେ ଭାରତର ସ୍ୱରାଷ୍ଟ୍ରମନ୍ତ୍ରୀ ସୁଶୀଲ କୁମାର ସିନ୍ଦେ ଆରଏସ୍‌ଏସ୍‌ରେ ହିନ୍ଦୁ ଆତଙ୍କବାଦୀଙ୍କୁ ତାଲିମ୍ ଦିଆଯାଉଛି ବୋଲି ବୟାନ ଦେଇ ମୁସ୍‌ଲିମ୍ ଆତଙ୍କବାଦୀ ସଂଗଠନଗୁଡ଼ିକୁ ଉତ୍ସାହିତ କରୁଛନ୍ତି; ଯାହା ଅତ୍ୟନ୍ତ ପରିତାପର ବିଷୟ। ପାକିସ୍ତାନର ହିନ୍ଦୁ ବିରୋଧୀ ମନୋଭାବ ଦିନକୁଦିନ ବୃଦ୍ଧି ପାଉଥିବା ବେଳେ ଆମ ଦେଶର ନେତାମାନେ ନିଜର ବକ୍ତବ୍ୟରେ ସଂଯମ ଅବଲମ୍ବନ କରିବା ଉଚିତ।

*ସମାଜ, ୧୧.୨.୨୦୧୩*

# ସ୍ୱତନ୍ତ୍ର କୃଷି ବଜେଟ୍ କୃଷକଙ୍କ ବିଶ୍ୱାସଭାଜନ ହୋଇପାରିନି

ଚଳିତ ମାସ ୧୯ ତାରିଖରେ ଓଡ଼ିଶା ସରକାର ଏକ ସ୍ୱତନ୍ତ୍ର କୃଷି ବଜେଟ୍ ଆଗତ କରି କୃଷକମାନଙ୍କୁ ଗୁରୁତ୍ୱ ଦିଆଯିବ ବୋଲି ସୂଚନା ଦେଇଛନ୍ତି। ୭,୧୬୨ କୋଟି ଟଙ୍କାର ଏକ କୃଷି ବଜେଟ ଉପସ୍ଥାପନା କରି ରାଜ୍ୟର ଚାଷୀମାନଙ୍କୁ କୃଷି ଋଣରେ ରିହାତି, ସ୍ୱାସ୍ଥ୍ୟ ବୀମା, ପଣ୍ୟାଗାର ପ୍ରତିଷ୍ଠା, ମୋବାଇଲ ଯୋଗାଣ, ବିଜୁ କୃଷକ କଲ୍ୟାଣ ଯୋଜନା ପ୍ରଭୃତି ସୁବିଧା ଦେବାକୁ ଘୋଷଣା କରିଛନ୍ତି। ଏହା କୃଷକମାନଙ୍କ ମନୋବଳ ବୃଦ୍ଧି କରିବ ବୋଲି ଆଶା କରାଯାଉଥିଲା। କିନ୍ତୁ ଗତ ୨୩ ତାରିଖ ଦିନ ଗଂଜାମ ଜିଲ୍ଲା ଗୋଳନ୍ଥରା ଥାନା ଅନ୍ତର୍ଗତ ଏରଣ୍ଡା ଗ୍ରାମର ୫୫ ବର୍ଷୀୟ ତ୍ରିନାଥ ପ୍ରଧାନ ନାମକ ଜଣେ ଚାଷୀ ଚାଷ ପାଇଁ କରିଥିବା ଋଣ ଶୁଝି ନ ପାରି ବିଷ ପିଇ ଆତ୍ମହତ୍ୟା କରିଥିବା ସମ୍ବାଦ ଓଡ଼ିଶାବାସୀଙ୍କ ମନରେ ଆଘାତ ଦେଇଛି।

କୃଷକମାନଙ୍କୁ ୨୦୦୦ ମସିହା ପରଠାରୁ ସଂପୂର୍ଣ୍ଣ ରୂପେ ଅବହେଳା କରି ଶିଳ୍ପସଂସ୍ଥାମାନଙ୍କୁ ଚାଷଜମି ଯୋଗାଇଦେବା, କୃଷି ପାଇଁ ଉଦ୍ଦିଷ୍ଟ ପାଣି କାରଖାନାଗୁଡ଼ିକୁ ଅବିଚାରିତ ଭାବରେ ଉପଲବ୍ଧ କରାଇବା, ବିହନ କଳାବଜାର ବ୍ୟାପକ ହେବା, ଚାଷୀ ଅଭାବୀ ଧାନ ବିକ୍ରି କରିବାକୁ ବାଧ ହେବା ଓ ଋଣ ଭାରରେ ଭାଙ୍ଗିପଡ଼ି ଚାଷୀ ଆତ୍ମହତ୍ୟା କରୁଥିବା ଘଟଣାଗୁଡ଼ିକ କୃଷକମାନଙ୍କ ମନରେ କ୍ରୋଧ ଜାତ କରିଥିଲା। ସେସବୁକୁ ପ୍ରଶମନ କରିବାକୁ ବା ଚାଷୀମାନଙ୍କୁ ଖୁସି କରିବାକୁ କୃଷି, ସମବାୟ, ଜଳସଂପଦ ଏବଂ ମତ୍ସ୍ୟ ଓ ପଶୁପାଳନ ବିଭାଗର ବ୍ୟୟବରାଦକୁ ଏକାଠି କରି ରାଜ୍ୟ ସରକାର ଚଳିତ ବର୍ଷ ପୂର୍ବ ଆର୍ଥିକ ବର୍ଷ ତୁଳନାରେ ୩୦୦ କୋଟି ଟଙ୍କାର ଅଧିକ ବ୍ୟୟବରାଦ କରିଛନ୍ତି। କିନ୍ତୁ ଏହା ଯେ କୃଷକମାନଙ୍କୁ ସନ୍ତୁଷ୍ଟ କରିପାରିବନି ଏହି ଆଲୋଚନାକୁ ତ୍ରିନାଥ ପ୍ରଧାନଙ୍କ ଆତ୍ମହତ୍ୟା ପ୍ରମାଣିତ କରୁଛି।

ଓଡ଼ିଶାରେ ପ୍ରତିବର୍ଷ ହାରାହାରି ୩୨୮ ଜଣ ଚାଷୀ ଆତ୍ମହତ୍ୟା କରୁଥିବା ବିଷୟ ଏକ ସରକାରୀ ରିପୋର୍ଟରେ ପ୍ରକାଶ ପାଇଛି। ଓଡ଼ିଶା ବିଧାନସଭାରେ ୨୧ ନଭେମ୍ବର ୨୦୦୯ରେ ତତ୍କାଳୀନ କୃଷିମନ୍ତ୍ରୀ ଡକ୍ଟର ଦାମୋଦର ରାଉତ ଏକ

ମୁଲତବୀ ପ୍ରସ୍ତାବର ଉତ୍ତର ଦେଇ କହିଥିଲେ ଯେ ବିଗତ ୧୧ ବର୍ଷରେ ୩,୫୦୯ ଜଣ କୃଷକ ଓଡ଼ିଶାରେ ଆତ୍ମହତ୍ୟା କରିଛନ୍ତି । ସେହିଭଳି ସାରା ଦେଶର କୃଷକମାନଙ୍କ ଆତ୍ମହତ୍ୟା ଘଟଣା ଅନୁଧ୍ୟାନ କଲେ ମର୍ମାହତ ହେବାକୁ ପଡ଼ିବ । ଏକ ନିର୍ଭରଯୋଗ୍ୟ ତଥ୍ୟରୁ ଜଣାପଡ଼େ ୧୯୯୫ ମସିହାରୁ ୨୦୧୦ ମସିହା ମଧ୍ୟରେ ଦେଶର ବିଭିନ୍ନ ଅଞ୍ଚଳରେ ୨,୫୬,୯୧୩ ଜଣ କୃଷକ ଆତ୍ମହତ୍ୟା କରିଛନ୍ତି । ୨୦୦୩ ରୁ ୨୦୧୦ ମଧ୍ୟରେ କେବଳ ପାଞ୍ଚୋଟି ରାଜ୍ୟରେ ୧,୩୫,୭୫୬ ଜଣ କୃଷକ ଆତ୍ମହତ୍ୟା କରିଛନ୍ତି । ଏହି ପାଞ୍ଚୋଟି ରାଜ୍ୟ ହେଲା ମହାରାଷ୍ଟ୍ର, ଆନ୍ଧ୍ରପ୍ରଦେଶ, କର୍ଣ୍ଣାଟକ, ମଧ୍ୟପ୍ରଦେଶ ଓ ଛତିଶଗଡ଼ । ମହାରାଷ୍ଟ୍ରରେ ସର୍ବାଧିକ ୫୦,୮୪୧ ଜଣ କୃଷକ ଏହି ସମୟ ମଧ୍ୟରେ ଆତ୍ମହତ୍ୟା କରିଛନ୍ତି ।

ଅନ୍ୟ ରାଜ୍ୟ କଥା ଆଲୋଚନା ନ କରି ଓଡ଼ିଶା ବିଷୟ ଅନୁଧ୍ୟାନ କଲେ ଜଣାଯିବ ଯେ ଓଡ଼ିଶାରେ କୃଷି ଓ କୃଷକମାନଙ୍କ ଅବସ୍ଥା ଅତ୍ୟନ୍ତ ଶୋଚନୀୟ । ଶିଳ୍ପ ନିଶାରେ ବିଭୋର ହୋଇ ଗତ ୧୨ ବର୍ଷ ହେଲା କୃଷକ ଓ କୃଷିକୁ ଅଣଦେଖା କରାଯାଇଛି । ୨୦୧୧-୧୨ ମସିହା ଓଡ଼ିଶା ସରକାରଙ୍କ ଅର୍ଥନୈତିକ ସର୍ଭେରେ ପ୍ରକାଶିତ ହୋଇଛି ଯେ ରାଜ୍ୟର ୬୦ ଭାଗ ଲୋକ କୃଷି ଉପରେ ନିର୍ଭର କରି ଜୀବିକା ନିର୍ବାହ କରୁଛନ୍ତି । ସେମାନଙ୍କ ମଧ୍ୟରୁ ୪୩ ଲକ୍ଷରୁ ଊର୍ଦ୍ଧ୍ୱ ହେଉଛନ୍ତି ବିଭିନ୍ନ ବର୍ଗର କୃଷକ । ଅନ୍ୟମାନେ କୃଷିକ୍ଷେତ୍ରରେ ମୂଲିଆ ଭାବରେ କାର୍ଯ୍ୟ କରନ୍ତି । ଚାଷ ଏବେ ଆଉ ଲାଭଜନକ ହେଉ ନ ଥିବାରୁ କୃଷକମାନେ ଚାଷଜମି ବିକ୍ରି କରିଦେଉଛନ୍ତି । ଭାରତର ମହାଲେଖ ନିୟନ୍ତ୍ରକ ତଥା ମହାସମୀକ୍ଷକଙ୍କ (ସି.ଏ.ଜି.) କୃଷିବିଭାଗ ସମ୍ପର୍କିତ ତଥ୍ୟ ଅନୁଯାୟୀ ୨୦୦୬-୦୭ରେ ଓଡ଼ିଶାରେ ୬୧.୩୭ ଲକ୍ଷ ହେକ୍ଟର ଚାଷଜମି ଥିବାବେଳେ ୨୦୧୦-୧୧ ମସିହାରେ ଏହା ୬୦.୪୪ ଲକ୍ଷ ହେକ୍ଟରକୁ ହ୍ରାସ ପାଇଛି । ସହରୀକରଣ ଓ ଶିଳ୍ପାୟନ ଯୋଗୁଁ ଚାଷଜମି ନଷ୍ଟ ହୋଇ ଅନୁର୍ବର ହୋଇପଡ଼ିଛି ବୋଲି କ୍ୟାଗ୍‌ତଥ୍ୟରୁ ଜଣାଯାଏ ।

ଓଡ଼ିଶା ସରକାର କୃଷିର ଉନ୍ନତି ଲାଗି ଯେତେସବୁ ରିହାତି କାର୍ଯ୍ୟକ୍ରମ ଗ୍ରହଣ କରୁଛନ୍ତି ସେଥିରେ ନାମମାତ୍ର ଚାଷୀ, ଭାଗଚାଷୀ ଓ କ୍ଷେତ ମଜୁରିଆମାନେ ଉପକୃତ ହୋଇପାରୁ ନାହାନ୍ତି । ଏମାନେ ରିହାତି ଦରରେ ଦିଆଯାଉଥିବା ସାର, ବିହନ, କୀଟନାଶକ, ଔଷଧ, କୃଷିଉପକରଣ, ବ୍ୟାଙ୍କ୍ ଋଣ ଆଦିରୁ ବଞ୍ଚିତ ହୋଇଥାଆନ୍ତି । କୃଷିକାର୍ଯ୍ୟ ଲାଗି ଆବଶ୍ୟକ ହେଉଥିବା ସମସ୍ତ ସାମଗ୍ରୀ ସେମାନେ ବଜାର ଦରରେ

କିଣି ଥାଆନ୍ତି । କୃଷକ ପାରୁପର୍ଯ୍ୟନ୍ତ ଚେଷ୍ଟା କଲେ ମଧ୍ୟ ଅର୍ଥର ଅଭାବ ତାକୁ ସଦାସର୍ବଦା ବିଚଳିତ କରୁଛି । କୃଷିରୁ ଲାଭ ହେବା ଦୂରେ ଥାଉ, କୃଷି କାର୍ଯ୍ୟରେ ଯାହା ଖର୍ଚ୍ଚ ହେଉଛି ତାହା ମଧ୍ୟ କୃଷକ ପାଇପାରୁ ନାହିଁ । ପରିସ୍ଥିତି ଏଭଳି ହେଲାଣି ଯଦି ବଞ୍ଚିବାର ଅନ୍ୟ କିଛି ସୁଯୋଗ ମିଳେ ତେବେ ଅନ୍ତତଃ ୫୦ ପ୍ରତିଶତ କୃଷକ ଚାଷ କାର୍ଯ୍ୟ ଛାଡ଼ିଦେବେ । ଏସବୁ ପରିସ୍ଥିତିକୁ ହୃଦୟଙ୍ଗମ କରି ଭାରତର ଜଣେ ବିଶିଷ୍ଟ ଅର୍ଥନୀତିଜ୍ଞ ଉତ୍ସା ପଟ୍ଟନାୟକ ଦେଶକୁ 'Republic of Hunger' ବୋଲି ଆଖ୍ୟା ଦେଲେଣି । ଚାଷୀମାନେ ସମ୍ମୁଖୀନ ହେଉଥିବା ଅନେକ ସମସ୍ୟା ମଧ୍ୟରେ ଚାଷ ଓ ଚାଷଜମି ପାଇଁ ଲଢ଼େଇ, ଆଦିବାସୀଙ୍କ ହଡ଼ପ ହୋଇଥିବା ଜମିର ପୁନଃଦଖଲ, ସାରର ଦରବୃଦ୍ଧି ଓ କଳାବଜାରୀ, କୀଟନାଶକ ଔଷଧର ଦରବୃଦ୍ଧି ଓ ଗୁଣବତ୍ତାହୀନ ତଥା ଭେଜାଲ ଔଷଧ ବିକ୍ରିଜନିତ କ୍ଷତି, ସରକାରୀଭାବେ ଯୋଗାଇ ଦିଆଯାଇଥିବା ବିହନରୁ ଗଜା ନହେବା, ଚଢ଼ା ହାରରେ ମହାଜନଠାରୁ ଋଣ, ରାଷ୍ଟ୍ରାୟତ୍ତ ବ୍ୟାଙ୍କ ଓ ସମବାୟ ସଂସ୍ଥାରୁ ଚାଷୀଙ୍କୁ ଋଣ ନ ମିଳିବା ଓ ଋଣ ଦେବାରେ ଦୁର୍ନୀତି, ଚାଷରେ ମଜୁରୀ ବୃଦ୍ଧି, ବିଜୁଳି ଓ ଡିଜେଲ ଦର କ୍ରମାଗତ ବୃଦ୍ଧି, ଜଳସେଚନର ଅଭାବ, ଉତ୍ପାଦିତ ଦ୍ରବ୍ୟର ଅଭାବୀ ବିକ୍ରି, ମଧ୍ୟସ୍ଥି ବ୍ୟବସାୟୀଙ୍କ ଦ୍ୱାରା ଚାଷୀର ଉତ୍ପାଦନ ସାମଗ୍ରୀ ଲୁଟ୍ ଓ ସରକାରୀ ଧାର୍ଯ୍ୟଦରରେ ଉତ୍ପାଦନ ଦ୍ରବ୍ୟର ଉଚିତ୍ ମୂଲ୍ୟ ନ ପାଇବା, କୃଷି ଯନ୍ତ୍ରପାତିର ଦରବୃଦ୍ଧି, ମଦ ଓ ଗଞ୍ଜେଇ ଦ୍ୱାରା ନିଶାସକ୍ତ, ଶିକ୍ଷାର ଅଭାବ ଓ କୁସଂସ୍କାର ଉପରେ ଅଧିକ ଭରସା, ଚିକିତ୍ସା ସୁବିଧାର ଅଭାବ ଭଳି ସମସ୍ୟା ଦ୍ୱାରା ଚାଷୀମାନେ ବ୍ୟଥିତ ହୋଇଥାନ୍ତି ।

କୃଷି କ୍ଷେତ୍ରରେ ସମ୍ମୁଖୀନ ହେଉଥିବା ସମସ୍ୟାଗୁଡ଼ିକ ସହିତ କୃଷକମାନେ ଅସାଧୁ ରାଜସ୍ୱ କର୍ମଚାରୀ, ଗୋଷ୍ଠୀ ଉନ୍ନୟନ ବିଭାଗ ଓ କୃଷି କ୍ଷେତ୍ରରେ କାର୍ଯ୍ୟ କରୁଥିବା କର୍ମଚାରୀ, ଅସାଧୁ ପଞ୍ଚାୟତସମିତି ସଂପାଦକମାନଙ୍କ ଦ୍ୱାରା ଶୋଷଣର ଶିକାର ହେଉଛନ୍ତି । କର୍ମଚାରୀ ଓ ବ୍ୟବସାୟୀମାନଙ୍କ ସଲାସୁତୁରାରେ ସମସ୍ତ ପ୍ରକାର ଅନୈତିକ କାର୍ଯ୍ୟର ଶିକାର କୃଷକମାନେ ହିଁ ହେଉଛନ୍ତି ।

୨୦୦୫ ମସିହା ପରଠାରୁ ଓଡ଼ିଶା ସରକାର ପୋସ୍କୋ, ମିତ୍ତଲ, ବେଦାନ୍ତ, ଷ୍ଟେରିଲାଇଟ୍, ଜିନ୍ଦଲ, ଟାଟା ପ୍ରଭୃତି ବିଭିନ୍ନ ଦେଶୀ ଓ ବିଦେଶୀ କଂପାନୀମାନଙ୍କ ସହିତ ଇସ୍ପାତ କାରଖାନା, ଆଲୁମିନିୟମ ପ୍ଲାଣ୍ଟ, ପାୱାର ପ୍ଲାଣ୍ଟ ପ୍ରଭୃତି ପ୍ରତିଷ୍ଠା କରିବା ପାଇଁ ଶହେରୁ ଅଧିକ ବୁଝାମଣାପତ୍ର ସ୍ୱାକ୍ଷର କରିଛନ୍ତି । ସେଥିପାଇଁ କେନ୍ଦୁଝର,

ଜଗତସିଂହପୁର, ପୁରୀ, ଯାଜପୁର, କଟକ, ଅନଗୁଳ, ଝାରସୁଗୁଡ଼ା, ସମ୍ବଲପୁର, ସୁନ୍ଦରଗଡ଼, ରାୟଗଡ଼ା ପ୍ରଭୃତି ଜିଲ୍ଲାଗୁଡ଼ିକରୁ ପାଖାପାଖି ଦୁଇ ଲକ୍ଷ ଏକର ଚାଷଜମି ହସ୍ତାନ୍ତର କରିବାର ସମ୍ଭାବନା ରହିଛି। ଏହାଛଡ଼ା ବିଭିନ୍ନ ଖଣି ବ୍ୟତିରେକ କୃଷକମାନଙ୍କ ପାଇଁ ଉଦ୍ଦିଷ୍ଟ ନଦୀଜଳ, ଭୂତଳ ଜଳ; କୃଷିପାଇଁ ଉଦ୍ଦିଷ୍ଟ ଜଳଭଣ୍ଡାରଗୁଡ଼ିକରୁ ଶିଳ୍ପପାଇଁ ଜଳ ଯୋଗାଇ ଦେଉଛନ୍ତି। କଂପାନୀମାନଙ୍କର ଶିଳ୍ପ ପ୍ରତିଷ୍ଠା ପାଇଁ ଯେତିକି ଜମି ଆବଶ୍ୟକ ତାହାଠାରୁ ବହୁ ଅଧିକ ଜମି ସେମାନେ ଅକ୍ତିଆରକୁ ନେଉଛନ୍ତି। ଏଠାରେ ଗୋଟିଏ ଉଦାହରଣ ଦେଲେ ଯଥେଷ୍ଟ ହେବ ଯେ ଗଂଜାମ ଜିଲ୍ଲାର ଗୋପାଳପୁରଠାରେ ଟାଟା କଂପାନୀ ଇସ୍ପାତ କାରଖାନା ପ୍ରତିଷ୍ଠା କରିବା ପାଇଁ ତିନି ହଜାର ଏକରରୁ ଉର୍ଦ୍ଧ୍ୱ ଜମି କୃଷକମାନଙ୍କଠାରୁ ଅକ୍ତିଆର କରି ପକାଇ ରଖିଛି। ଏହିସବୁ କାର୍ଯ୍ୟ ଦ୍ୱାରା ଓଡ଼ିଶାର କୃଷକମାନେ ରାଜ୍ୟ ସରକାରଙ୍କ ଉପରେ ବିଶ୍ୱାସ ହରାଇଛନ୍ତି। ଅନଗୁଳ, ତାଳଚେର, ଝାରସୁଗୁଡ଼ା ପ୍ରଭୃତି ଅଞ୍ଚଳମାନଙ୍କରେ ପାଉଁଶ ପୋଖରୀ ଭୁଷୁଡ଼ି ପାଣି ଓ ଚାଷଜମିକୁ ଏଭଳି ପ୍ରଦୂଷିତ କରିଛି ଯେ କୃଷକ ଓ ସାଧାରଣ ଲୋକମାନଙ୍କ ଜୀବନଯାପନ ଦୁର୍ବିସହ ହୋଇପଡ଼ିଛି। ଉପରୋକ୍ତ ସମସ୍ୟାଗୁଡ଼ିକ ରାଜ୍ୟ ସରକାର ସୃଷ୍ଟି କରିଛନ୍ତି, ଯେଉଁଥିରେ କୃଷକର କ୍ଷତି ଅକଳନୀୟ। ଏଥିସହିତ ବୋଝ ଉପରେ ନଳିତାବିଡ଼ା ପରି ସରକାର ଦାରିଦ୍ର୍ୟ ସୀମାରେଖା ତଳେ ଥିବା ଲୋକଙ୍କ ପାଇଁ ଟଙ୍କିକିଆ ଚାଉଳ ଯୋଜନା ଘୋଷଣା କରିଛନ୍ତି। ଏହି ଯୋଜନା କାହାରି ପାଇଁ ଲାଭପ୍ରଦ ହେବନାହିଁ। ଚାଷ କାର୍ଯ୍ୟ କରିବାକୁ ମୂଲିଆ ମିଳିବେ ନାହିଁ। ଦୁଇଟଙ୍କିଆ ଚାଉଳ ମିଳୁଥିଲାବେଳେ ଚାଷ କାର୍ଯ୍ୟ କରିବାକୁ ମୂଲିଆ ମିଳୁ ନ ଥିଲେ। ଏବେ ଟଙ୍କିକିଆ ଚାଉଳ ଯୋଜନା ଦ୍ୱାରା କୃଷକ ହିଁ ସର୍ବାଧିକ କ୍ଷତିଗ୍ରସ୍ତ ହେବେ। ବୁଦ୍ଧିଜୀବୀମାନେ ଚର୍ଚ୍ଚା କରୁଛନ୍ତି ଯେ ସରକାରଙ୍କର ସ୍ୱତନ୍ତ୍ର କୃଷି ବଜେଟର ଉଦ୍ଦେଶ୍ୟ କୃଷିର ବିକାଶ ନୁହେଁ, ନିର୍ବାଚନ ବର୍ଷରେ କୃଷକମାନଙ୍କୁ ନିଜ ଦଳ ପ୍ରତି ଆକୃଷ୍ଟ କରିବା। ଏହି ବଜେଟରେ କୃଷି ଉତ୍ପାଦନର ବୃଦ୍ଧି ଏବଂ ଭାଗଚାଷୀମାନଙ୍କ ସଂପର୍କରେ କୌଣସି ଯୋଜନା ଥିବା ଉଲ୍ଲେଖ ନାହିଁ।

ଏହି ସମୟରେ ରାଜ୍ୟର କୃଷି ଓ କୃଷକମାନଙ୍କ ସମସ୍ୟା ସଂପର୍କରେ ଅନୁଧ୍ୟାନ କରି ରିପୋର୍ଟ ପ୍ରଦାନ କରିବାକୁ ଜାନୁୟାରୀ ୨୦୧୦ ମସିହାରେ ପୂର୍ବତନ ମୁଖ୍ୟ ଶାସନ ସଚିବ ସୁଧାଂଶୁ ମୋହନ ପଟ୍ଟନାୟକଙ୍କ ଅଧ୍ୟକ୍ଷତାରେ ଯେଉଁ କମିଶନ ଗଠନ କରାଯାଇଥିଲା ତାହାର ରିପୋର୍ଟ ସରକାରଙ୍କର ହସ୍ତଗତ ହୋଇଛି। ସେଥିରେ ସେ

ଧାନର ଅଭାବୀ ବିକ୍ରି, ଶୀତଳ ଭଣ୍ଡାରର ଘୋର ଅଭାବ, ସାର ମୂଲ୍ୟ ବୃଦ୍ଧି, କୃଷି କ୍ଷେତ୍ରରେ ବୈଷୟିକ ଜ୍ଞାନ କୌଶଳ ଅପହଞ୍ଚ ଇତ୍ୟାଦି ସମସ୍ୟା ଓ କୃଷକର ଆତ୍ମହତ୍ୟା ପ୍ରସଂଗ ମଧ୍ୟ ଉଲ୍ଲେଖ କରିଥିବା ଜଣାଯାଏ।

ଉପରେ ବର୍ଣ୍ଣିତ ବିଷୟଗୁଡ଼ିକରୁ ଜଣାଯାଉଛି ଯେ ତ୍ରିନାଥ ପ୍ରଧାନ ଆତ୍ମହତ୍ୟା ପାଇଁ ଚରମ ନିଷ୍ପତ୍ତି କେଉଁ ପରିସ୍ଥିତିରେ ଗ୍ରହଣ କଲା। ସରକାରଙ୍କ ନିର୍ବାଚନ ବର୍ଷରେ ସ୍ୱତନ୍ତ୍ର କୃଷି ବଜେଟ ଉପସ୍ଥାପନା ସ୍ୱାଗତଯୋଗ୍ୟ ହୋଇଥିଲେ ମଧ୍ୟ ଏହା କୃଷି ଓ କୃଷକର ପୁଂଜିଭୂତ ସମସ୍ୟାଗୁଡ଼ିକୁ ସମାଧାନ କରିବାରେ ସହାୟକ ହେବ ବୋଲି ବର୍ତ୍ତମାନଠାରୁ କହିବା ଭୁଲ ହେବ। ଏହି ବଜେଟ କୃଷକମାନଙ୍କର ବିଶ୍ୱାସଭାଜନ ହୋଇଥିବାପରି ମନେହୁଏ ନାହିଁ।

*ସମୟ, ୫.୩.୨୦୧୩*

# ଅବିସ୍ମରଣୀୟ ବିଜୁ ପଟ୍ଟନାୟକ

ବିଜୟାନନ୍ଦ ପଟ୍ଟନାୟକ ଜନ୍ମଗ୍ରହଣ କରିଥିଲେ ୧୯୧୬ ମସିହା ମାର୍ଚ୍ଚ ୫ ତାରିଖରେ କଟକ ସହରର ତୁଳସୀପୁରସ୍ଥ 'ଆନନ୍ଦ ଭବନ'ରେ। ପିଲାଦିନେ ବଂକିମ ଚନ୍ଦ୍ର ଚାଟାର୍ଜୀଙ୍କର 'ଆନନ୍ଦମଠ' ବହିଟି ପଢ଼ି ସେ ପୁଲକିତ ହୋଇଥିଲେ। ସ୍କୁଲରେ ପଢୁଥିବାବେଳେ କୁଳବୃଦ୍ଧ ମଧୁସୂଦନ ଦାସ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ର କରି ଏକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରିବାରେ ଯେଭଳି ଭାବରେ ସାରା ଜୀବନ ସଂଗ୍ରାମ କରି ଧନସଂପତ୍ତିକୁ ଅକାତରରେ ବ୍ୟୟ କରିଥିଲେ ତାହା ତାଙ୍କ ମନରେ ଗଭୀର ରେଖାପାତ କରିଥିଲା। କଟକର ଓଡ଼ିଆ ବଜାରରେ ଜନ୍ମିତ ସୁଭାଷ ଚନ୍ଦ୍ର ବୋଷ ରେଭେନ୍ସା କଲେଜିଏଟ୍ ସ୍କୁଲରେ ପାଠ ପଢ଼ି ଭାରତର ସ୍ୱାଧୀନତା ଆନ୍ଦୋଳନକୁ ଯେଭଳି ଭାବରେ ପ୍ରଭାବିତ କରିଥିଲେ ତାହା ବିଜୁବାବୁଙ୍କ ହୃଦୟରେ ନୂତନ ସ୍ପନ୍ଦନ ଜାଗ୍ରତ କରିଥିଲା। ଆମେ ସବୁ ଏକ ଦୁର୍ଦ୍ଧର୍ଷ ଓ ବୀର ଜାତିର ଉତ୍ତରାଧିକାରୀ, ଆମ ସଂସ୍କୃତି ଶ୍ରେଷ୍ଠ ଓ ଆମର ଐତିହ୍ୟ ବିଶ୍ୱରେ ବିରଳ ବୋଲି ସେ ପିଲାଦିନରୁ ହୃଦୟଙ୍ଗମ କରିଥିଲେ।

ସ୍ୱାଧୀନତା ସଂଗ୍ରାମରେ ବିଜୁବାବୁ ଯେଉଁସବୁ ଦୁଃସାହସିକ କାର୍ଯ୍ୟକରି ଜୟପ୍ରକାଶ ନାରାୟଣ, ରାମ ମନୋହର ଲୋହିଆ, ଅରୁଣା ଆସଫ ଅଲ୍ଲୀ, ଅଚ୍ୟୁତ ପଟ୍ଟବର୍ଦ୍ଧନ ପ୍ରଭୃତି ନେତାମାନଙ୍କୁ ସାହାଯ୍ୟ କରିଥିଲେ ତାହା ସ୍ୱାଧୀନତା ଆନ୍ଦୋଳନରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ। ତାଙ୍କ ଝିଅ ଗୀତା ମେହେଟ୍ଟା ନିଜ ରଚିତ ଇଂରାଜୀ ପୁସ୍ତକ 'Snake and Ladder'ରେ ବିଜୁବାବୁଙ୍କ ଦୁଃସାହସିକ କାର୍ଯ୍ୟ ସମ୍ବନ୍ଧରେ ଉଲ୍ଲେଖ କରିଛନ୍ତି। ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ସାଧନ ପାଇଁ ସେ ସାରାଜୀବନ କାର୍ଯ୍ୟରତ ଥିଲେ। ରାଜ୍ୟର ଭରପୁର ପ୍ରାକୃତିକ ସମ୍ବଳର ସଦ୍‌ବ୍ୟବହାର କରିବା ଉଦ୍ଦେଶ୍ୟରେ ଯୋଜନା ପ୍ରସ୍ତୁତ କରିବାକୁ ଭାରତର ପ୍ରଖ୍ୟାତ ଇଂଜିନିୟର ଡକ୍ଟର ଅଯୋଧ୍ୟାନାଥ ଖୋସଲାଙ୍କୁ ବିଜୁବାବୁ ଓଡ଼ିଶାର ରାଜ୍ୟପାଳ କରି ଆଣିଥିଲେ। ଡକ୍ଟର ଖୋସଲା ଓଡ଼ିଶାର ସମସ୍ତ ପ୍ରକାର ସମ୍ପଦ ଓ ସମ୍ବଳର ସର୍ଭେ କରାଇ ଏକ ସୁଚିନ୍ତିତ

ଯୋଜନା ପ୍ରସ୍ତୁତ କରିଥିଲେ, ଯାହା ତାଙ୍କ ପ୍ରଣୀତ 'Decade of Destiny' ପୁସ୍ତକରେ ଲିପିବଦ୍ଧ ହୋଇଛି ।

୧୯୬୧ରୁ ୬୩ ମସିହା ପର୍ଯ୍ୟନ୍ତ ମାତ୍ର ଦୁଇ ବର୍ଷ ପାଇଁ ମୁଖ୍ୟମନ୍ତ୍ରୀ ଥିଲାବେଳେ କେନ୍ଦ୍ର ସରକାରଙ୍କ ବିନା ସହାୟତାରେ ସେ ପାରାଦ୍ୱୀପ ବନ୍ଦର ନିର୍ମାଣ କରିଥିଲେ । ଦୈତାରୀଠାରୁ ପାରାଦ୍ୱୀପ ପର୍ଯ୍ୟନ୍ତ ୯୧ କି.ମି. ଦୂରତ୍ୱର ଏକ୍ସପ୍ରେସ୍ ହାଇୱେ ଖୁବ୍ ଅଳ୍ପ ସମୟ ମଧ୍ୟରେ ନିର୍ମାଣ କରାଇ ସମସ୍ତଙ୍କୁ ଚକିତ କରିଦେଇଥିଲେ । ସେହି ଦୁଇ ବର୍ଷ ଭିତରେ ରାଜ୍ୟର ଶିଳ୍ପ, ବିଶେଷକରି କୁଟୀରଶିଳ୍ପ, କୃଷି ଓ ଶିକ୍ଷା ଆଦି ପ୍ରତ୍ୟେକ କ୍ଷେତ୍ରରେ ଯଥେଷ୍ଟ ଅଗ୍ରଗତି କରାଇଥିଲେ । ବାଲିମେଳା ନଦୀବନ୍ଧ ଯୋଜନା, ତାଳଚେର ଥର୍ମାଲ ପ୍ରକଳ୍ପ, ସୁନାବେଡ଼ା ମିଗ୍ କାରଖାନା, ବଡ଼ବିଲ ଲୁହା କାରଖାନା, ନାଲକୋ ଆଲୁମିନିୟମ ପ୍ରକଳ୍ପ, ରାଉରକେଲା ଷ୍ଟିଲ ପ୍ଲାଣ୍ଟ ଆଦି ଶିଳ୍ପକାରଖାନା ଏବଂ ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ, ବୁର୍ଲା ଇଂଜିନିୟରିଂ କଲେଜ, ରିଜିଓନାଲ ରିସର୍ଚ୍ଚ ଲାବୋରାଟୋରୀ, ସୈନିକ ସ୍କୁଲ, ଆଞ୍ଚଳିକ ଶିକ୍ଷା ପ୍ରତିଷ୍ଠାନ ଓ ବହୁ ବିଜ୍ଞାନ କଲେଜ ପ୍ରଭୃତି ଅନୁଷ୍ଠାନର ସେ ଥିଲେ ପ୍ରତିଷ୍ଠାତା । ଓଡ଼ିଶା ରାଜ୍ୟ ବିଦ୍ୟୁତ୍ ବୋର୍ଡ, ଓଡ଼ିଶା ଶିଳ୍ପ ବିକାଶ ନିଗମ, ଓଡ଼ିଶା କ୍ଷୁଦ୍ରଶିଳ୍ପ ନିଗମ ଆଦି ବହୁ ନିଗମ ଓ ବୋର୍ଡ ତାଙ୍କରି ସମୟରେ ହିଁ ସ୍ଥାପନ କରାଯାଇଥିଲା ।

୧୯୯୦ ମସିହା ମାର୍ଚ୍ଚ ମାସ ୫ ତାରିଖରୁ ୧୯୯୫ ମସିହା ମାର୍ଚ୍ଚ ମାସ ୧୫ ତାରିଖ ପର୍ଯ୍ୟନ୍ତ ପାଞ୍ଚ ବର୍ଷ ବିଜୁବାବୁ ଦ୍ୱିତୀୟ ଥର ମୁଖ୍ୟମନ୍ତ୍ରୀ ଥିବାବେଳେ ରାଜ୍ୟରେ ବେକାରୀ ଓ ଦାରିଦ୍ର୍ୟ ଦୂରୀକରଣ ପାଇଁ ବହୁ ବୈପ୍ଳବିକ ପଦକ୍ଷେପ ଗ୍ରହଣ କରିଥିଲେ । ଶିକ୍ଷା ବିନା ଦରିଦ୍ର ଜନସାଧାରଣଙ୍କର ଉନ୍ନତି ହୋଇପାରିବ ନାହିଁ ଏହା ଭଲଭାବରେ ହୃଦୟଙ୍ଗମ କରି ସେ ମୁଖ୍ୟମନ୍ତ୍ରୀ ହେବା ସଙ୍ଗେ ସଙ୍ଗେ ଶିକ୍ଷା ବିଭାଗର ବ୍ୟୟବରାଦକୁ ଦ୍ୱିଗୁଣିତ କରିଥିଲେ । ଗରିବ ଲୋକଙ୍କ ହିତ ପାଇଁ ସେ ସବୁକିଛି କରିବାକୁ ପ୍ରସ୍ତୁତ ଥିଲେ । ତାଙ୍କର ମୁଖ୍ୟମନ୍ତ୍ରୀତ୍ୱ ସମୟରେ କ୍ଷୁଦ୍ର ଓ ନାମମାତ୍ର ଚାଷୀଙ୍କୁ ଆର୍ଥିକ ସାହାଯ୍ୟ ଯୋଜନା, ଗ୍ରାମାଞ୍ଚଳରେ ବାସ କରୁଥିବା ଦରିଦ୍ର ଲୋକଙ୍କ ପାଇଁ କଳିଙ୍ଗ କୁଟୀର ଯୋଜନା ଓ ଦିନମଜୁଦରମାନଙ୍କର ସର୍ବନିମ୍ନ ମଜୁରୀ ୧୧ ଟଙ୍କାରୁ ୨୫ ଟଙ୍କାକୁ ବୃଦ୍ଧି ପ୍ରଭୃତି ପ୍ରବର୍ତ୍ତନ କରାଇଥିଲେ । ପଞ୍ଚାୟତ ଓ ମ୍ୟୁନିସିପାଲିଟି ନିର୍ବାଚନରେ ମହିଳାମାନଙ୍କ ପାଇଁ ସେ ଶତକଡ଼ା ୩୩ ଭାଗ ସ୍ଥାନ ସଂରକ୍ଷଣ ବ୍ୟବସ୍ଥା କରିଥିଲେ । ଚାକିରି କ୍ଷେତ୍ରରେ ମଧ୍ୟ ମହିଳାମାନଙ୍କର ନିଯୁକ୍ତି ପାଇଁ ବୟସସୀମା କୋହଳ କରାଇଥିଲେ

ଓ ୩୦ ପ୍ରତିଶତ ସ୍ଥାନ ସଂରକ୍ଷଣ କରାଇଥିଲେ। ଦୁର୍ନୀତି ଦରିଦ୍ର ଲୋକଙ୍କ ପ୍ରଗତିରେ ବାଧକ ସାଜୁଛି ହୃଦ୍‌ବୋଧ ହେବାରୁ ସେ ଦୁର୍ନୀତିଗ୍ରସ୍ତ ଅଫିସରଙ୍କୁ ମାଡ଼ ଦେବାକୁ ଏକ ଅପ୍ରୀତିକର ସତ୍ୟ କହି ବହୁ ବିବାଦର ସମ୍ମୁଖୀନ ହୋଇଥିଲେ।

ଓଡ଼ିଶାର ପୂର୍ବନାମ 'କଳିଙ୍ଗ'କୁ ସେ ବିଶ୍ୱରେ ପୁନଃପ୍ରତିଷ୍ଠା କରିବାକୁ ଜୀବନରେ ଅହରହ ଉଦ୍ୟମ କରିଥିଲେ। ତାଙ୍କ ସ୍ୱଅର୍ଜିତ ଧନରୁ ସେ ଯେଉଁସବୁ ଅନୁଷ୍ଠାନ ପ୍ରତିଷ୍ଠା କରିଥିଲେ, ତାହା ପୂର୍ବରୁ କଳିଙ୍ଗ ଶବ୍ଦଟିକୁ ଯୋଡ଼ିଦେଇ ଗର୍ବ ଅନୁଭବ କରୁଥିଲେ। ବିଶ୍ୱର ଶ୍ରେଷ୍ଠ ବୈଜ୍ଞାନିକଙ୍କ ପାଇଁ ଯେଉଁ ପୁରସ୍କାର ପ୍ରଦାନର ବ୍ୟବସ୍ଥା କଲେ, ତା'ର ନାଁ ଦେଇଥିଲେ 'କଳିଙ୍ଗ ପୁରସ୍କାର'। ଗରିବ ମେଧାବୀ ଛାତ୍ରମାନଙ୍କୁ ଆର୍ଥିକ ସାହାଯ୍ୟ ଦେବାକୁ ଯେଉଁ ଟ୍ରଷ୍ଟ ପ୍ରତିଷ୍ଠା କଲେ ତା' ନାଁ ଦେଇଥିଲେ 'କଳିଙ୍ଗ ଫାଉଣ୍ଡେସନ ଟ୍ରଷ୍ଟ'। ନିଜେ ପ୍ରତିଷ୍ଠା କରିଥିବା ଏୟାରଲାଇନ୍‌ସର ନାମକରଣ କଲେ 'କଳିଙ୍ଗ ଏୟରଲାଇନ୍‌ସ'। ସେହିଭଳି ଅନ୍ୟାନ୍ୟ ପ୍ରତିଷ୍ଠାନର ନାଁଗୁଡ଼ିକ ହେଲା 'କଳିଙ୍ଗ ଆଇରନ୍ ଓ୍ୱାର୍କସ', 'କଳିଙ୍ଗ ଟ୍ୟୁବ୍‌ସ' ଇତ୍ୟାଦି। ଏଭଳିକି ନିଜେ ବ୍ୟବହାର କରୁଥିବା ଗାଡ଼ିଟିକୁ ମଧ୍ୟ 'କଳିଙ୍ଗ ରଥ' ନାମରେ ନାମିତ କରିଥିଲେ। ତେଣୁ କଳିଙ୍ଗର ପୂର୍ବ ଗୌରବ ଫେରାଇ ଆଣିବା ପାଇଁ ତାଙ୍କର ଅବିରତ ଉଦ୍ୟମ ଓ କାର୍ଯ୍ୟାବଳୀକୁ ଲକ୍ଷ୍ୟକରି ଓଡ଼ିଶାର ଲୋକେ ତାଙ୍କୁ 'କଳିଙ୍ଗ ସମ୍ରାଟ' ବୋଲି ସମ୍ବୋଧନ କରୁଥିଲେ।

ବିଜୁ ପଟ୍ଟନାୟକ ଓଡ଼ିଶାର ବିକାଶର ସ୍ୱପ୍ନ ଦେଖି ଦେଖି ୧୯୯୭ ମସିହା ଏପ୍ରିଲ ୧୭ ତାରିଖରେ ଇହଲୀଳା ସମ୍ବରଣ କରିଥିଲେ। ତାଙ୍କ ଜୀବନକାଳରେ ସେ ଯେଉଁସବୁ କାର୍ଯ୍ୟ କରିଗଲେ ତାହା ତାଙ୍କ ଜୀବଦ୍ଦଶାରେ ଓଡ଼ିଶାବାସୀ ଠିକ୍ ଭାବରେ ବୁଝିପାରିନଥିଲେ। କିନ୍ତୁ ତାଙ୍କ ମୃତ୍ୟୁ ପରେ ଓଡ଼ିଶାର କୋଣେ ଅନୁକୋଣେ ଲୋକେ ତାଙ୍କୁ ଝୁରି ହେଉଛନ୍ତି। ବିଜୁବାବୁଙ୍କ ସାହସିକତା, ନିର୍ଭୀକତା, ସ୍ପଷ୍ଟବାଦିତା ଓ ଦେଶପ୍ରେମ ତାଙ୍କୁ ଜନସାଧାରଣଙ୍କ ଆସ୍ଥାଭାଜନ କରାଇଛି। ତାଙ୍କ ନାଁ ବିକି ଲୋକେ ଦଳ ଗଠନ କରି ଓଡ଼ିଶାରେ କ୍ଷମତାସୀନ ହୋଇଛନ୍ତି। କିନ୍ତୁ ଓଡ଼ିଶାବାସୀଙ୍କ ଉନ୍ନତି ପରିବର୍ତ୍ତେ ଓଡ଼ିଶାର ସମସ୍ତ ସମ୍ପଦକୁ ଯୋଜନାବଦ୍ଧଭାବେ ଲୁଟ୍ କରିବାରେ ଲାଗିଛନ୍ତି। ଅନ୍ୟ କେତେକ ବି ବିଜୁଙ୍କ ଯାଦୁକରୀ ନାମକୁ ବ୍ୟବହାର କରି ନିର୍ବାଚନ ବୈତରଣୀ ପାର ହୋଇ କ୍ଷମତା ଦଖଲ କରିବାକୁ ଉଦ୍ୟମ କରୁଛନ୍ତି। ଭବିଷ୍ୟତରେ ମଧ୍ୟ ତାଙ୍କ ନାଁକୁ ବ୍ୟବହାର କରି ତାଙ୍କ ଅଧା ରହିଯାଇଥିବା ସ୍ୱପ୍ନକୁ ପୂରା କରିବାର ଧାରଣା ସୃଷ୍ଟି କରାଇ ନିର୍ବାଚନରେ ଜିତିବାକୁ କୌଶଳ ଅବଲମ୍ବନ କରିବେ ଏହା ନିଃସନ୍ଦେହ।

ଜୀବନରେ ବିଜୁ ପଟ୍ଟନାୟକ ବହୁ ବ୍ୟକ୍ତିଙ୍କ ଦ୍ୱାରା ପ୍ରତାରିତ ହୋଇଛନ୍ତି । ନଚେତ୍ ଏଚ୍. ଡି. ଦେବେଗୌଡ଼ାଙ୍କ ସ୍ଥାନରେ ସେ ଭାରତର ପ୍ରଧାନମନ୍ତ୍ରୀ ହୋଇପାରିଥାନ୍ତେ। ତାଙ୍କ ଜୀବଦ୍ଦଶା ଭିତରେ ତାଙ୍କୁ 'ଭାରତ ରତ୍ନ' ସମ୍ମାନରେ ବିଭୂଷିତ କରାଗଲା ନାହିଁ। ମୃତ୍ୟୁ ପରେ ମଧ୍ୟ ତାଙ୍କୁ ଏହି ସମ୍ମାନ ପ୍ରଦାନ କରିବାକୁ ସରକାରଙ୍କ ପ୍ରଚେଷ୍ଟାର ଘୋର ଅଭାବ ପରିଲକ୍ଷିତ ହୁଏ। ତାଙ୍କ ଜନ୍ମ ଦିବସ ପାଳନର ସାର୍ଥକତା ହେବ ଯଦି ଓଡ଼ିଶାର ଯୁବକମାନେ ତାଙ୍କ ଜୀବନୀକୁ ଅନୁଧ୍ୟାନ କରି ତାଙ୍କ ଭଳି ସ୍ୱାଭିମାନୀ ଓ ଦେଶପ୍ରେମୀ ହୋଇ ଓଡ଼ିଶା ଦରିଦ୍ର ଜନସାଧାରଣଙ୍କ ସେବାରେ ନିଜକୁ ନିୟୋଜିତ କରିବାକୁ ସଂକଳ୍ପବଦ୍ଧ ହେବେ। ବନ୍ଦେ ଉତ୍କଳ ଜନନୀ।

*ଓଡ଼ିଶା ଏକ୍ସପ୍ରେସ, ୫.୩.୨୦୧୩*

# ଆଦର୍ଶର ମୂର୍ତ୍ତିମନ୍ତ ପ୍ରତୀକ : ବିନୟୀ ଅଚ୍ୟୁତ

ଚଳିତ ବର୍ଷ ସାଧାରଣତନ୍ତ୍ର ଦିବସରେ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ରାଜ୍ୟସ୍ତରୀୟ ଆଦିବାସୀ ମେଳା ଉଦ୍‌ଘାଟନ ଉତ୍ସବରେ ଏକ ନିରାଟ ସତ୍ୟକଥା କହିଛନ୍ତି ଯେ, ଶିକ୍ଷା ମାଧ୍ୟମରେ ହିଁ ଆଦିବାସୀ ପିଲାମାନେ ସମାଜର ମୁଖ୍ୟସ୍ରୋତକୁ ଆସି ପାରିବେ। ଏହି ଅବସରରେ ସେ ଘୋଷଣା କରିଛନ୍ତି ଯେ, ଅନୁସୂଚିତ ଜାତି ଓ ଜନଜାତି ଛାତ୍ରଛାତ୍ରୀଙ୍କ ପାଇଁ ମହାବିଦ୍ୟାଳୟ ସ୍ତରରେ ପାଞ୍ଚବର୍ଷ ମଧ୍ୟରେ ପାଞ୍ଚଶହଟି ଛାତ୍ରାବାସ ନିର୍ମାଣ କରାଯିବାର ଯୋଜନା ରହିଛି। ବାର୍ଷିକ ଏଥିପାଇଁ ୧୨୦ କୋଟି ଟଙ୍କା ଖର୍ଚ୍ଚ ହେବ ବୋଲି ସେ ସୂଚନା ପ୍ରଦାନ କରିଛନ୍ତି। ଓଡ଼ିଶାର ଜନସଂଖ୍ୟାର ୨୩ ପ୍ରତିଶତ ହେଉଛନ୍ତି ଆଦିବାସୀ। ଓଡ଼ିଶା ସରକାର ଯେ ଆଦିବାସୀ ପିଲାମାନଙ୍କ ଶିକ୍ଷା ପାଇଁ ବ୍ୟୟବରାଦ କରୁନାହାନ୍ତି ତାହା ନୁହେଁ। କିନ୍ତୁ କେବଳ ଅର୍ଥ ବରାଦ କରିଦେଲେ ଯେ, ପିଲାମାନେ ପଢ଼ିବେ, ସ୍କୁଲ କଲେଜ୍ ଖୋଲିଦେଲେ ଯେ ପିଲାମାନେ ଶିକ୍ଷିତ ହୋଇଯିବେ ଏହା ନିଶ୍ଚିତ ଭାବରେ ଏକ ଭ୍ରମାତ୍ମକ ଧାରଣା। ଆଜି ପର୍ଯ୍ୟନ୍ତ ସରକାରଙ୍କର ଆଦିବାସୀଙ୍କୁ ମୁଖ୍ୟସ୍ରୋତରେ ସାମିଲ୍ କରାଇବା ପ୍ରସଙ୍ଗ କେବଳ ଧ୍ୱନିରେ, ଭାଷଣରେ, କାଗଜକଲମ ପରିସଂଖ୍ୟାନ ଆଦିରେ ସୀମିତ ହୋଇ ରହିଛି। ବାସ୍ତବରେ ଓଡ଼ିଶାରେ ଆଦିବାସୀଙ୍କ ଅନଗ୍ରସରତା ଦୂର କରିବାକୁ ସରକାରଙ୍କର ବିଭିନ୍ନ ଯୋଜନା କୌଣସି ପ୍ରକାର ସହାୟତା କରିପାରୁ ନାହିଁ।

ଏଠାରେ ଉଲ୍ଲେଖ କରିବା ଉଚିତ ହେବ ଯେ, ରାଜ୍ୟ ସରକାରଙ୍କର ପ୍ରାଥମିକ ଶିକ୍ଷାର ଅବସ୍ଥା, ଶିକ୍ଷାଦାନର ମାନ ଓ ପିଲାଙ୍କ ଜ୍ଞାନର ସ୍ତର ଆକଳନ କରାଯାଇ ଆନୁଆଲ ଷ୍ଟାଟସ୍ ଅଫ୍ ଏଜୁକେସନ୍ ରିପୋର୍ଟ (ଅସର) ପ୍ରକାଶ କରାଯାଇଥାଏ। ସଦ୍ୟ ପ୍ରକାଶିତ ଅସର-୨୦୧୨ର ରିପୋର୍ଟ ପଢିଲେ ଯେକୌଣସି ବ୍ୟକ୍ତି ମର୍ମାହତ ହେବ। 'ଅସର' ପ୍ରଦତ୍ତ ତଥ୍ୟ ଅନୁଯାୟୀ, ଅଷ୍ଟମ ଶ୍ରେଣୀରେ ପଢୁଥିବା ୧୨ ପ୍ରତିଶତ ଏଭଳି ଛାତ୍ରଛାତ୍ରୀ ଅଛନ୍ତି ଯେଉଁମାନଙ୍କୁ ପ୍ରଥମ ଶ୍ରେଣୀର ପାଠ ଆସେନାହିଁ। ଅଷ୍ଟମରେ ପଢୁଥିବା ୨୦ ପ୍ରତିଶତ ପିଲା ଇଂରାଜୀ ଅକ୍ଷର ଚିହ୍ନିବାକୁ ମଧ୍ୟ ଅସମର୍ଥ। ସେହିଭଳି ସରକାର ସର୍ବଶିକ୍ଷା ଅଭିଯାନ ପାଇଁ ଚଳିତ ଆର୍ଥିକ ବର୍ଷରେ ୨,୭୭୨ କୋଟି

ଟଙ୍କାର ବ୍ୟୟ ଅଟକଳ କରିଥିଲେ ମଧ୍ୟ ସେଥିରୁ ଡିସେମ୍ବର ମାସ ଶେଷ ସୁଦ୍ଧା ୫୦ ଭାଗ ଅର୍ଥ ବିନିଯୋଗ ହୋଇ ପାରିନାହିଁ। ଶିକ୍ଷାର ପ୍ରସାର ନାମରେ ଅଶିକ୍ଷା ଓ ଅଜ୍ଞାନ ଅନ୍ଧାରର କୁପ୍ରଭାବ ସମାଜକୁ କବଳିତ କରି ରଖିଛି। କିନ୍ତୁ ରାଜ୍ୟ ସରକାର ତାଙ୍କ ଉଦ୍ୟମ ଜାରି ରଖିଛନ୍ତି। ଏଠାରେ ଏକ ଉଦାହରଣ ଦେବା ପ୍ରାସଙ୍ଗିକ ହେବ। ମାଲକାନଗିରି ଜିଲ୍ଲା କାଲିମେଳା ବ୍ଲକ୍‌ର ନାଳଗୁଣ୍ଡି ପଞ୍ଚାୟତ ଅନ୍ତର୍ଗତ ତିନିଶହ ଲୋକସଂଖ୍ୟା ବିଶିଷ୍ଟ ମାନିଗୁଡ଼ା ଗାଁରେ ଗତ ତିନିବର୍ଷ ହେଲା ଗୋଟିଏ ନୂଆ ପ୍ରାଥମିକ ବିଦ୍ୟାଳୟ ଖୋଲିଛି। ପ୍ରଥମରୁ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ୨୨ ଜଣ ପିଲା ଏହି ବିଦ୍ୟାଳୟରେ କୌଣସି ଘର ନ ଥିବାରୁ ସ୍କୁଲ ପରିଚାଳନା କମିଟି ଅଧ୍ୟକ୍ଷ ମାର୍କୋନୀ ଦୁଲ୍ଲାଙ୍କ କୁଡ଼ିଆ ଘରର ବାରଣ୍ଡାରେ ବସି ପାଠ ପଢ଼ନ୍ତି। ପିଲାମାନଙ୍କୁ ପାଠ ପଢ଼ାଇବା ନିମନ୍ତେ ନିଯୁକ୍ତ ଶିକ୍ଷା ସହାୟିକା ବିଦ୍ୟାଳୟ ଠାରୁ ୩୦ କିଲୋମିଟର ଦୂରରେ ରହନ୍ତି। ମାସର ଅଧିକାଂଶ ଦିନ ସେ ଆସୁ ନଥିବାରୁ ସ୍କୁଲରେ ପାଠପଢ଼ା ହୁଏନାହିଁ। ଏହି ଖବର ଏକ ପ୍ରମୁଖ ଦୈନିକ ଓଡ଼ିଆ ସମ୍ବାଦପତ୍ରରେ ପ୍ରକାଶିତ ହୋଇଛି।

ଅପରପକ୍ଷରେ, ଆଦିବାସୀ ଛାତ୍ରଛାତ୍ରୀଙ୍କର ଶିକ୍ଷାର ବିକାଶ ପାଇଁ ଏକ ଆଦର୍ଶ ଅନୁଷ୍ଠାନ ପ୍ରତିଷ୍ଠା କରିଛନ୍ତି ପ୍ରଖ୍ୟାତ ଶିକ୍ଷାବିତ୍, ଅନନ୍ୟ ସଂଗଠକ ଓ ସମାଜସେବୀ ଡକ୍ଟର ଅଚ୍ୟୁତାନନ୍ଦ ସାମନ୍ତ। ତାହା ହେଉଛି କଳିଙ୍ଗ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ସୋସିଆଲ୍ ସାଇନ୍‌ସେସ୍ (କିସ୍)। ଗତ ନଭେମ୍ବର ମାସ ୩୦ ତାରିଖରେ ମାନ୍ୟବର ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଏହି ଅନୁଷ୍ଠାନ ପରିଦର୍ଶନ କରିବାକୁ ଆସିଥିଲେ। ସେଠାରେ ପଢୁଥିବା ୨୦ ହଜାର ଛାତ୍ରଛାତ୍ରୀଙ୍କୁ ମଧ୍ୟ ସମ୍ବୋଧିତ କରିଥିଲେ। ସ୍ୱଚ୍ଛ ସମୟ ରହଣୀ ମଧ୍ୟରେ ଆଦିବାସୀ ପିଲାମାନଙ୍କ ପାଇଁ ରହିବା, ଖାଇବା, ପିନ୍ଧିବା ଓ ପଢ଼ାପଢ଼ି କରିବା ବିଷୟରେ ପିଲାମାନେ ପ୍ରଦାନ କରିଥିବା ବିବରଣୀ ଶୁଣିଲେ, ପଢ଼ିଲେ ଏବଂ ସାଙ୍ଗରେ ନେଇଗଲେ। ଏହି ଅନୁଷ୍ଠାନ ପରିଦର୍ଶନ କରି ଖୁବ୍ ଆନନ୍ଦିତ ହେଲେ। ଗତ ଡିସେମ୍ବର ୨୧ ତାରିଖରେ ଓଡ଼ିଶା ବିଧାନସଭାର ଉପ-ବାଚସ୍ପତି ଓ ୨୨ ଜଣ ଆଦିବାସୀ ବିଧାୟକ ଏବଂ ଡିସେମ୍ବର ୨୬ ତାରିଖରେ ରାଜ୍ୟ ସରକାରଙ୍କର କେତେକ ବରିଷ୍ଠ ମନ୍ତ୍ରୀ ଏହି ଅନୁଷ୍ଠାନକୁ ପରିଦର୍ଶନ କରି ଅଭିଭୂତ ହୋଇ ପଡ଼ିଥିଲେ। ଏହି ଅନୁଷ୍ଠାନରେ ଶିଶୁ ଶ୍ରେଣୀଠାରୁ ଆରମ୍ଭ କରି ସ୍ନାତକୋତ୍ତର ଶ୍ରେଣୀ ପର୍ଯ୍ୟନ୍ତ ପିଲାମାନଙ୍କର ପଢ଼ିବାର ବ୍ୟବସ୍ଥା ରହିଛି। ତା'ଛଡ଼ା ବୈଷୟିକ ଶିକ୍ଷା ଯଥା- ଇଞ୍ଜିନିୟରିଂ, ମେଡ଼ିକାଲ, ନର୍ସିଂ, ଏମ୍.ବି.ଏ. ଶିକ୍ଷା ମଧ୍ୟ ପ୍ରଦାନ କରାଯାଉଛି। ଏଠାରେ କେବଳ ପାଠପଢ଼ା

ନୁହେଁ; ଜୀବିକା ଅର୍ଜନ, ଆତ୍ମନିର୍ଭରଶୀଳତା, ଜନସେବା, ଚରିତ୍ରଗଠନ ଓ ଧନ୍ଦାମୂଳକ ଶିକ୍ଷା ଆଦି ଦିଗଗୁଡ଼ିକ ପ୍ରତି ବିଶେଷ ଦୃଷ୍ଟି ଦିଆଯାଉଛି। ଶିକ୍ଷାର ଆଭିମୁଖ୍ୟ ପୂର୍ଣ୍ଣାଙ୍ଗ ମଣିଷ ଗଢ଼ିବା, ଯାହା 'କିସ୍' ସମ୍ଭବ କରିପାରିଛି। ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବିଷୟଟି ହେଲା ଶିକ୍ଷା ସମାପ୍ତି ପରେ ପ୍ରତ୍ୟେକ ଛାତ୍ରଛାତ୍ରୀଙ୍କ କର୍ମସଂସ୍ଥାନ ବ୍ୟବସ୍ଥା ମଧ୍ୟ ଏହି ଅନୁଷ୍ଠାନ ପକ୍ଷରୁ କରାଯାଉଛି। ଏଠାରୁ ଉତ୍ତୀର୍ଣ୍ଣ ହେଉଥିବା ସମସ୍ତ ଛାତ୍ରଛାତ୍ରୀ ରାଜ୍ୟରେ ତଥା ରାଜ୍ୟ ବାହାରେ ନିଯୁକ୍ତିର ସୁବିଧା ପାଇ ପାରୁଛନ୍ତି।

'କିସ୍' ବର୍ତ୍ତମାନ ବିଶ୍ୱରେ ଏକ ସୁପରିଚିତ ଶିକ୍ଷା ଅନୁଷ୍ଠାନ। 'କିସ୍'ର ଏହି ଅଭୁତପୂର୍ବ ସାଫଲ୍ୟକୁ ଅନୁଭବ କରି ଭାରତର ପାଞ୍ଚୋଟି ରାଜ୍ୟ ଯଥା- ଦିଲ୍ଲୀ, ଛତିଶଗଡ଼, ଝାଡଖଣ୍ଡ, କର୍ଣ୍ଣାଟକ ଏବଂ ମଧ୍ୟପ୍ରଦେଶ 'କିସ୍' ଢାଞ୍ଚାରେ ସେମାନଙ୍କ ରାଜ୍ୟରେ ଅନୁଷ୍ଠାନ ଖୋଲିବାକୁ ଡକ୍ଟର ସାମନ୍ତଙ୍କୁ ଅନୁରୋଧ କରିଛନ୍ତି। ଆମ ରାଜ୍ୟର ଆହୁରି ୨୦ଟି ଜିଲ୍ଲାରେ 'କିସ୍' ପର୍ଯ୍ୟାୟକ୍ରମେ ଆଦିବାସୀ ଛାତ୍ରଛାତ୍ରୀଙ୍କ ଶିକ୍ଷାଦାନ ପାଇଁ ଶାଖାମାନ ଗଠନ କରିବାକୁ ଯୋଜନା କରିଛି।

ପରିତାପର ବିଷୟ ଯେ, ଆଜି ପର୍ଯ୍ୟନ୍ତ ରାଜ୍ୟ ସରକାର କିମ୍ବା କେନ୍ଦ୍ର ସରକାର ଏହି ସଂସ୍ଥାକୁ ଆର୍ଥିକ ଅନୁଦାନ ପ୍ରଦାନ କରିନାହାନ୍ତି। ଦୀର୍ଘ ୨୦ ବର୍ଷ ଧରି ଏହି ସଂସ୍ଥା ଡକ୍ଟର ଅଚ୍ୟୁତ ସାମାନ୍ତଙ୍କର ଉଦ୍ୟମରେ ଚାଲୁଛି। ଦାରିଦ୍ର୍ୟ ସୀମାରେଖା ତଳେ ଥିବା ପରିବାରର ପିଲାମାନେ ଏଠାରେ ପଢୁଥିଲେ ମଧ୍ୟ ରାଜ୍ୟ ସରକାର ଅନ୍ୟମାନଙ୍କୁ ଯୋଗାଇ ଦେଉଥିବା ଦୁଇଟଙ୍କିଆ ଚାଉଳ ମଧ୍ୟ ଏହି ପିଲାମାନଙ୍କୁ ଦିଆଯାଉନାହିଁ। ଓଡ଼ିଶା ସରକାର ଓ କେନ୍ଦ୍ର ସରକାର 'କିସ୍' ଭଳି ଅନୁଷ୍ଠାନକୁ ସ୍ୱତନ୍ତ୍ର ଅନୁଦାନ ପ୍ରଦାନ କରି ଏହି ଅନୁଷ୍ଠାନର ପରିଚାଳନାରେ ଡକ୍ଟର ଅଚ୍ୟୁତ ସାମନ୍ତଙ୍କୁ ପ୍ରୋତ୍ସାହନ ଯୋଗାଇଦେଲେ ରାଜ୍ୟର ଓ ଭାରତର ଆଦିବାସୀ ଛାତ୍ରଛାତ୍ରୀଙ୍କୁ ସମାଜର ମୁଖ୍ୟ ସ୍ରୋତରେ ସାମିଲ୍ କରାଇବା ସହଜ ହେବ।

ଡକ୍ଟର ଅଚ୍ୟୁତ ସାମନ୍ତ ଜଣେ ଅଙ୍ଗୀକାରବଦ୍ଧ, ମାନସିକ ସ୍ତରରେ ଦୃଢ଼ ଓ ଦୂରଦର୍ଶୀ ବ୍ୟକ୍ତି। ଗାନ୍ଧି, ଗୋପବନ୍ଧୁ, ମଧୁସୂଦନଙ୍କ ଆଦର୍ଶରେ ପରିଚାଳିତ ହୋଇ ସମାଜସେବା ମାଧ୍ୟମରେ ସମାଜରେ ଆଖିଦୃଶିଆ ପରିବର୍ତ୍ତନ ଆଣିବାକୁ ସେ କାୟମନବାକ୍ୟରେ ସଂକଳ୍ପବଦ୍ଧ। ବୟସ ପାଖାପାଖି ୪୮ ବର୍ଷ ହେଲେ ମଧ୍ୟ ପୂର୍ବତନ ରାଷ୍ଟ୍ରପତି ଡକ୍ଟର ଏ.ପି.ଜେ. ଅବଦୁଲ କାଲାମ୍‌ଙ୍କ ପରି ଅବିବାହିତ ରହି ନିଜର ସମସ୍ତ ସମୟ ଓ ଶକ୍ତି ବିନିଯୋଗ କରି ସେ ଆଦିବାସୀ ପିଲାମାନଙ୍କୁ ସମାଜର ମୁଖ୍ୟ

ସ୍ରୋତକୁ ଆଣିବାକୁ ଉଦ୍ୟମରତ । ସ୍ୱାମୀ ବିବେକାନନ୍ଦଙ୍କର ଉପଦେଶକୁ ନିଜ ଜୀବନରେ ପ୍ରତିଫଳିତ କରାଇବାକୁ ସେ ସଦାସର୍ବଦା ଚେଷ୍ଟିତ । ସେ ବିଶ୍ୱାସ କରନ୍ତି ଯେ, ସମାଜରେ ଏଭଳି କୌଣସି ସମସ୍ୟା ନାହିଁ ଯାହାର ସମାଧାନରେ ଶିକ୍ଷାର ଭୂମିକା ନାହିଁ । ସବୁ ପ୍ରକାର ସମସ୍ୟାର ମୁକାବିଲା କରିବାକୁ ଶିକ୍ଷା ଏକ ପ୍ରମୁଖ ଅସ୍ତ୍ର । ସ୍ୱାମୀ ଦୟାନନ୍ଦ ସରସ୍ୱତୀ, ପଣ୍ଡିତ ମଦନ ମୋହନ ମାଲବ୍ୟ ବହୁ ବାଧାବିଘ୍ନ ସତ୍ତ୍ୱେ ନିଜର ଜୀବନ ଶିକ୍ଷାର ପ୍ରସାର ପାଇଁ ଉତ୍ସର୍ଗ କରିଥିଲେ । ପ୍ରାଚୀନ ଭାରତରେ ପ୍ରତ୍ୟେକ ମୁନିଋଷିଙ୍କ ଆଶ୍ରମରେ ଦୁସ୍ଥ, ଅବହେଳିତ ବନବାସୀଙ୍କ ପାଇଁ ଶିକ୍ଷାର ବ୍ୟବସ୍ଥା ଥିଲା । ଡକ୍ଟର ଅଚ୍ୟୁତ ସାମନ୍ତ ଜଣେ ବିଜ୍ଞାନର ଛାତ୍ର ହୋଇଥିଲେ ମଧ୍ୟ ଭାରତର ଐତିହ୍ୟ, ସଂସ୍କୃତି ଓ ପରମ୍ପରାରେ ବିଶେଷ ରୁଚି ରଖନ୍ତି । ନିଜର ସରଳ ଜୀବନଯାପନ ଯୋଗୁ ଦେଶବିଦେଶରେ ସେ ଅତ୍ୟନ୍ତ ଲୋକପ୍ରିୟ ଓ ଶ୍ରଦ୍ଧାଭାଜନ ହୋଇ ପାରିଛନ୍ତି । କିନ୍ତୁ ପରିତାପର ବିଷୟ ଯେ, ଆମ ରାଜ୍ୟର ମୁଷ୍ଟିମେୟ ସ୍ୱାର୍ଥାନ୍ୱେଷୀ ବ୍ୟକ୍ତି ତାଙ୍କ ବିରୁଦ୍ଧରେ କୁତ୍ସା ରଟନା କରିବାକୁ ଶତଜିହ୍ୱରେ ଲାଗି ପଡ଼ିଛନ୍ତି । ତିଳକୁ ତାଳ କରି ଗୋଟିଏ ନିର୍ଦ୍ଦିଷ୍ଟ ଘରୋଇ ଟି.ଭି. ଚ୍ୟାନେଲ୍ ତାଙ୍କ ବିରୁଦ୍ଧରେ ନିରନ୍ତର ଅପପ୍ରଚାର କରିଚାଲିଛି । ଏହାଦ୍ୱାରା ରାଜ୍ୟର ସୁନାମରେ ଘୋର ଆଞ୍ଚ୍ ଆସୁଛି । ଏକ ପରଶ୍ରୀକାତର ଜାତି ରୂପେ ଓଡ଼ିଆମାନଙ୍କୁ ବାହାରେ ଚିତ୍ରଣ କରାଯିବାକୁ ଏହା ଖୋରାକ୍ ଯୋଗାଉଛି । ୨୫ ଜାନୁଆରୀରେ 'ପଦ୍ମ ପୁରସ୍କାର' ଭାରତ ସରକାର ଘୋଷଣା କରିବା ପରେ ଦକ୍ଷିଣ ଭାରତର ରାଜ୍ୟମାନେ ସେମାନଙ୍କ ରାଜ୍ୟରୁ ଅଧିକ ଯୋଗ୍ୟ ବ୍ୟକ୍ତି ପୁରସ୍କାର ପାଇବାକୁ ହକଦାର ଥିବା ଦାବି ଜଣାଇଥିଲେ । କିନ୍ତୁ ଆମ ରାଜ୍ୟରେ ଡକ୍ଟର ଅଚ୍ୟୁତ ସାମନ୍ତ ପଦ୍ମ ସମ୍ମାନ ପାଇଁ ମନୋନୀତ ହୋଇଥିଲେ ମଧ୍ୟ ସେ କିଭଳି ପୁରସ୍କାର ନ ପାଇବେ ସେଥିପାଇଁ ଜୋରଦାର ପ୍ରଚାର ଆରମ୍ଭ ହୋଇଯାଇଥିଲା । ଏପରିକି, ଭୁବନେଶ୍ୱରରୁ କିଛି ଲୋକ ଦିଲ୍ଲୀ ଯାଇ ତାଙ୍କ ବିରୁଦ୍ଧରେ ମନଗଢ଼ା ଅଭିଯୋଗମାନ ବାଢ଼ି ତାଙ୍କୁ ପୁରସ୍କାର ନ ଦେବା ପାଇଁ ଲବି କରିଥିଲେ । ଡକ୍ଟର ଅଚ୍ୟୁତ ସାମନ୍ତ କୌଣସି ପଦପଦବୀ, ପୁରସ୍କାର, ସମ୍ମାନ ଲାଳସାରେ ସମାଜସେବା କରିବାକୁ ପାଦ ବଢ଼ାଇ ନାହାନ୍ତି । ଏଭଳି ହୀନମନ୍ୟତା ଠାରୁ ତାଙ୍କର ବ୍ୟକ୍ତିତ୍ୱ ବହୁ ଊର୍ଦ୍ଧ୍ୱରେ । ଯେତେ ଅସୁବିଧା ତାଙ୍କ ପାଇଁ ସୃଷ୍ଟି କରାଗଲେ ମଧ୍ୟ ତାହା ତାଙ୍କୁ ଲକ୍ଷ୍ୟଭ୍ରଷ୍ଟ କରି ପାରିବ ନାହିଁ । କାରଣ ସେ ଜଣେ ପ୍ରତିଭା ସମ୍ପନ୍ନ ବ୍ୟକ୍ତି । କାହାରି ତାଡ଼ନା କିମ୍ବା ଅପ-ପ୍ରଚାରରେ ପ୍ରତିଭା ଶ୍ୱାସରୁଦ୍ଧ ହୁଏନାହିଁ । ପ୍ରତିଭାର ବିଲୟ ମଧ୍ୟ ଘଟେନାହିଁ । ବ୍ୟକ୍ତିଗତ

ଜୀବନରେ ବହୁ ଘାତ ପ୍ରତିଘାତ ଓ ବିପର୍ଯ୍ୟୟକୁ ସମ୍ମୁଖୀନ ହୋଇ ନିଜ ଲକ୍ଷ୍ୟପଥରେ ଅଗ୍ରସର ହେବାକୁ ତାଙ୍କୁ କେହି ପ୍ରତିରୋଧ କରିପାରିବେ ନାହିଁ। ତାଙ୍କର ପ୍ରତିଭା ଜୀବନ୍ତ, ଭାସ୍ୱର ଓ ଶାଶ୍ୱତ। ଡକ୍ଟର ଅଚ୍ୟୁତ ସାମନ୍ତ ଜଣେ ମହତ୍ ଲୋକ ବୋଲି ସର୍ବତ୍ର ପରିଚିତ। ମହାକବି କାଳିଦାସ କହିଛନ୍ତି- "ମହତ୍ ଲୋକଙ୍କର ଯିଏ ନିନ୍ଦାକରେ ସେ ମହାପାପ କରେ। ଯିଏ ଶୁଣି ତାକୁ ସହ୍ୟକରେ ସେ ମଧ୍ୟ ପାପରେ ଭାଗୀହୁଏ।" ଦୁଃଖଲାଗେ ଯେ, ନାଗରିକ ସମାଜ, ବୁଦ୍ଧିଜୀବୀ, ସମାଜସେବୀ, ଛାତ୍ରଛାତ୍ରୀ ସମସ୍ତେ ଡକ୍ଟର ସାମନ୍ତଙ୍କ ବିରୁଦ୍ଧରେ ହେଉଥିବା ଏଭଳି ଅପପ୍ରଚାରରେ ମର୍ମାହତ ହେଉଥିଲେ ମଧ୍ୟ ଖୋଲାଖୋଲି ଭାବରେ ଆଜି ପର୍ଯ୍ୟନ୍ତ ପ୍ରତିବାଦର ସ୍ୱର ଉତ୍ତୋଳନ କରିନାହାନ୍ତି। କିନ୍ତୁ ସମୟ ଆସିଛି, ନୀରବରେ ଏଭଳି କାମଳ ଓ କପୋଳକଳ୍ପିତ ସମ୍ବାଦ ପରିବେଷଣକୁ ମୁକାବିଲା କରି କୁଚକ୍ରୀମାନଙ୍କ ହୀନ ଉଦ୍ଦେଶ୍ୟ ଲୋକମାନଙ୍କ ସାମ୍ନାରେ ପ୍ରତିପାଦନ କରାଯିବ।

*ସମ୍ବାଦ କଳିକା, ୯.୩.୨୦୧୩*

# ଆଗ ପିଇବା ପାଣି

ରାଜ୍ୟର ବିଭିନ୍ନ ଅଞ୍ଚଳରେ ପିଇବା ପାଣିର ଘୋର ସଂକଟ ସୃଷ୍ଟି ହୋଇଥିବା ଖବର ଗଣମାଧ୍ୟମ ଦ୍ୱାରା ପ୍ରତିଦିନ ଲୋକଲୋଚନକୁ ଆସୁଥିଲେ ମଧ୍ୟ ଲୋକଙ୍କୁ କିଭଳି ଚଳିତ ଗ୍ରୀଷ୍ମଋତୁରେ ପିଇବା ପାଣି ଯୋଗାଇ ଦିଆଯିବ ସେଥି ନିମନ୍ତେ ଆମ ସରକାରଙ୍କର ବିଶେଷ ଉଦ୍ୟମ ଦୃଷ୍ଟିଗୋଚର ହେଉନାହିଁ। ବିଗତ କିଛିବର୍ଷ ହେଲା ବିଭିନ୍ନ କଂପାନୀଗୁଡ଼ିକ ହାତରେ ଜଳସଂପଦର ମାଲିକାନାକୁ ଟେକି ଦିଆଯାଇଛି। ମହାନଦୀ, ବ୍ରାହ୍ମଣୀ, ବୈତରଣୀ ପ୍ରଭୃତି ନଦୀର ଜଳକୁ ବିଭିନ୍ନ ଶିଳ୍ପପତି ଗୋଷ୍ଠୀ ଅବିଚାରିତ ଭାବେ ଲୁଣ୍ଠନ କରୁଛନ୍ତି। ଅଥଚ ସାଧାରଣ ଜନତା ପାଣି ଟୋପାଏ ପାଇଁ ଡହଳବିକଳ ହେଉଛନ୍ତି। Integrated Management Information System (IMIS) ଦ୍ୱାରା ହୋଇଥିବା ଏକ ସର୍ଭେରୁ ଜଣାପଡ଼ିଛି ଯେ ଆମ ରାଜ୍ୟର ଗାଁ ଗହଳିରେ ରହିଥିବା ୩୨ ଭାଗ ଲୋକ ପିଇବା ପାଇଁ ବିଶୁଦ୍ଧ ପାଣି ପାଉନାହାନ୍ତି। ରାଜ୍ୟର ମୋଟ ୧,୪୧,୯୨୮ଟି ଜନବସତି ମଧ୍ୟରୁ ୧୪,୮୧୧ଟି ଜନବସତିରେ ମିଳୁଥିବା ପାଣି ଆଦୌ ପିଇବା ପାଇଁ ଉପଯୁକ୍ତ ନୁହେଁ। ସେହି ପାଣିରେ ଲୌହାଂଶ ବା ଅନ୍ୟାନ୍ୟ ଖଣିଜ ଅଂଶ ଅଧିକ ପରିମାଣରେ ଥିବାରୁ ତାହା ସ୍ୱାସ୍ଥ୍ୟ ପାଇଁ ଅତ୍ୟନ୍ତ କ୍ଷତିକାରକ। ତାହା ଜାଣି ମଧ୍ୟ ଅନନ୍ୟୋପାୟ ହୋଇ ଲୋକମାନେ ଏହି ପାଣି ପିଇବାକୁ ବାଧ୍ୟ ହେଉଛନ୍ତି।

ବିଧାନସଭାରେ ନବକିଶୋର ଦାସଙ୍କ ଏକ ପ୍ରଶ୍ନର ଉତ୍ତର ଦେଇ ଗ୍ରାମ ଉନ୍ନୟନ ମନ୍ତ୍ରୀ ବିକ୍ରମ କେଶରୀ ଆରୁଖ ଲିଖିତ ଉତ୍ତର ଦେଇଥିଲେ ଯେ ରାଜ୍ୟର ଗ୍ରାମାଞ୍ଚଳରେ ବାସ କରୁଥିବା ୬୮.୦୯ ପ୍ରତିଶତ ଲୋକଙ୍କୁ ସେମାନଙ୍କ ଆବଶ୍ୟକତା ଅନୁସାରେ ବିଶୁଦ୍ଧ ପାନୀୟ ଜଳ ଯୋଗାଇ ଦିଆଯାଉଛି। ବାକି ୩୧.୯୧ ପ୍ରତିଶତ ଲୋକ ଆଂଶିକ ବିଶୁଦ୍ଧ ପାଣି ପିଉଛନ୍ତି। ବିଶୁଦ୍ଧ ପାଣି ପାଇବାରେ ସବୁଠାରୁ ଦୟନୀୟ ସ୍ଥିତି ହେଉଛି କୋରାପୁଟ ଜିଲ୍ଲାର। ସେଠାରେ ୬୯.୫୪ ପ୍ରତିଶତ ଲୋକ ବିଶୁଦ୍ଧ ପାଣି ପାଉନାହାନ୍ତି। ସେହିଭଳି ବରଗଡ଼ ଜିଲ୍ଲାରେ ୫୯.୦୫ ପ୍ରତିଶତ, ସୁନ୍ଦରଗଡ଼ ଜିଲ୍ଲାରେ ୫୪.୪୭ ପ୍ରତିଶତ, ଅନଗୁଳ ଜିଲ୍ଲାରେ ୪୯.୯୯ ପ୍ରତିଶତ, କଟକ ଜିଲ୍ଲାରେ ୪୮.୮୭ ପ୍ରତିଶତ, କେନ୍ଦୁଝର ଜିଲ୍ଲାରେ ୪୬.୪୧ ପ୍ରତିଶତ, ଖୋର୍ଦ୍ଧା

ଜିଲ୍ଲାରେ ୪୩.୭୮ ପ୍ରତିଶତ ଲୋକ ବିଶୁଦ୍ଧ ପାଣି ପିଇବାକୁ ପାଉନାହାନ୍ତି। ମନ୍ତ୍ରୀ ବିଧାନସଭାରେ ଯାହା ଉତ୍ତର ରଖନ୍ତୁ ନା କାହିଁକି ଚଳିତ ବର୍ଷ ସାରା ରାଜ୍ୟରେ (୩୦ଟି ଜିଲ୍ଲାରେ) ପିଇବା ପାଣି ସମସ୍ୟା ଉତ୍କଟ ହୋଇଛି।

କିଛିଦିନ ତଳେ ଭାରତୀୟ ଜନଗଣନା କେନ୍ଦ୍ର ପକ୍ଷରୁ ପ୍ରକାଶିତ ପରିବାର ସର୍ଭେ ରିପୋର୍ଟରେ ରାଜ୍ୟରେ ପାନୀୟ ଜଳ ଯୋଗାଣ ସ୍ଥିତି ବିଷୟରେ ଅତ୍ୟନ୍ତ ଦୟନୀୟ ଚିତ୍ର ଦେଖିବାକୁ ମିଳିଥିଲା। ଏହି ରିପୋର୍ଟରେ କୁହାଯାଇଛି ଯେ ରାଜ୍ୟରେ ମାତ୍ର ୧୦ ପ୍ରତିଶତ ପରିବାରକୁ ବିଶୁଦ୍ଧ ଜଳ ମିଳୁଛି। ବାକି ୯୦ ପ୍ରତିଶତ ପରିବାର ଅଶୋଧିତ ଜଳ ବ୍ୟବହାର କରିବାକୁ ବାଧ ହେଉଛନ୍ତି। ଦୁଃଖର ବିଷୟ ହେଲା ବିଗତ ୧୦ ବର୍ଷ ଭିତରେ ପାଇପ ଜଳ ଯୋଗାଣ ସୁବିଧା ମାତ୍ର ୬.୧ ଭାଗ ବଢ଼ିଛି। ପାଇପ ପାଣି ଲୋକଙ୍କୁ ଯୋଗାଇବା ନାଁରେ ସ୍ୱଜଳଧାରା ଯୋଜନାରେ କୋଟି କୋଟି ଟଙ୍କା ଖର୍ଚ୍ଚ ହୋଇଥିଲେ ମଧ୍ୟ ଏହା ସମ୍ପୂର୍ଣ୍ଣ ବିଫଳ ହୋଇଛି।

ଓଡ଼ିଶା ସରକାରଙ୍କ ଅର୍ଥନୈତିକ ସର୍ଭେ ରିପୋର୍ଟ ୨୦୧୧-୧୨ରେ ପ୍ରଦତ୍ତ ତଥ୍ୟ ଅନୁଯାୟୀ ରାଜ୍ୟରେ ୧.୨୨ ଲକ୍ଷ ହେକ୍ଟର ପୋଖରୀ, ଗାଡ଼ିଆ, ଜୋର ଓ ପାଟ ଅଛି। ଏହି ଜଳାଶୟଗୁଡ଼ିକ ଜରାଜୀର୍ଣ୍ଣ ଓ ଲୋକଙ୍କର ବ୍ୟବହାର ଉପଯୋଗୀ ନୁହେଁ। ସେହି ଜଳାଶୟଗୁଡ଼ିକରୁ ବଣୁଆ ଘାସ, ଗୁଳ୍ମ ଓ ଦଳ ସଫା କରିବା ସହିତ ପଙ୍କୋଦ୍ଧାର କରି ପୁନର୍ବାର ଖୋଳି ସେଗୁଡ଼ିକ ଚାରିପାଖେ ଠିକ୍ ଭାବରେ ବନ୍ଧ ତିଆରି କରାଗଲେ ସେଥିରେ ଅଧିକ ପରିମାଣରେ ଜଳ ସଂରକ୍ଷିତ ହୋଇ ରହିପାରିବ ଏବଂ ଏହାଦ୍ୱାରା ଗାଈଗୋରୁ, ପଶୁପକ୍ଷୀ ଓ ଲୋକମାନେ ଉପକୃତ ହେବେ। ଚାଷୀମାନେ ମଧ୍ୟ ନିଜ ଜମିରେ ମରୁଡ଼ି ବେଳେ ଏହିସବୁ ଜଳାଶୟରୁ ପାଣି ବ୍ୟବହାର କରିପାରିବେ। ମହାତ୍ମାଗାନ୍ଧି ଗ୍ରାମୀଣ ନିଶ୍ଚିତ କର୍ମନିଯୁକ୍ତି ଯୋଜନାରେ ଭାରତ ସରକାର ଦେଉଥିବା ଅର୍ଥକୁ ଲୋକଙ୍କୁ ମଜୁରୀ ଦେଇ ଏହି ପୁନରୁଦ୍ଧାର କାର୍ଯ୍ୟ ତତ୍କାଳ ଆରମ୍ଭ କରାଯାଇପାରିବ। ଏମ୍.ପି., ଏମ୍.ଏଲ୍.ଏ. ଲ୍ୟାଡ୍ ଅର୍ଥକୁ ମଧ୍ୟ ଏହି ଜଳାଶୟଗୁଡ଼ିକର ସଫେଇ କାର୍ଯ୍ୟରେ ବ୍ୟୟ କରାଯାଉ।

ଜଳାଭାବର ଉତ୍କଟତାକୁ ଉପଲବ୍ଧି କରି ଚଳିତ ବର୍ଷକୁ ଆନ୍ତର୍ଜାତିକ ଜଳ ସହଯୋଗ ବର୍ଷ ଭାବେ ପାଳନ କରାଯାଉଅଛି। ସରକାର ଓ ସାଧାରଣ ଜନତା ଜଳର ଅଭାବ ଯେପରି ନ ହେବ ସେଥିପ୍ରତି ଉପାୟ ବାହାର କରି ଜଳର ବ୍ୟବହାର ବିଜ୍ଞତାର ସହିତ କରିବା ଉଚିତ ହେବ। ଆମ ରାଜ୍ୟର ସାଧାରଣ ଜନତା ନିର୍ବାଚିତ ଲୋକପ୍ରତିନିଧିଙ୍କ ଉପରେ ଚାପ ଦିଅନ୍ତୁ, ସରକାରୀ ଅଫିସର ଯଥା ବି.ଡି.ଓ.,

ତହସିଲଦାର, ଜିଲ୍ଲାପାଳ, ଜନସ୍ୱାସ୍ଥ୍ୟ ବିଭାଗର ଯନ୍ତ୍ରୀମାନଙ୍କ ପାଖକୁ ଯାଇ ସେମାନଙ୍କ ଅଞ୍ଚଳରେ ଜଳାଭାବ କିଭଳି ଦୂର ହେବ ସେଥିପାଇଁ ସ୍ୱଳ୍ପକାଳୀନ ଓ ଦୀର୍ଘମିଆଦି ଯୋଜନାମାନ ଉପସ୍ଥାପନ କରନ୍ତୁ ଏବଂ ଚଳିତ ବର୍ଷ ଲୋକେ କିଭଳି ଜଳାଭାବରୁ ମୁକ୍ତି ପାଇବେ ତାହାର ଉପାୟ ବାହାର କରନ୍ତୁ।

ଗତବର୍ଷ ମେ' ମାସରେ ଟିଟିଲାଗଡ଼, ତାଳଚେର ପ୍ରଭୃତି ଅଞ୍ଚଳର ତାପମାତ୍ରା ୪୪ ଡିଗ୍ରୀରୁ ଉର୍ଦ୍ଧ୍ୱ ଥିଲା। ପ୍ରତିବର୍ଷ ତାପମାତ୍ରା ବଢ଼ି ବଢ଼ି ଚାଲିଛି। ଏ ବର୍ଷ ଏପ୍ରିଲ ଆରମ୍ଭରୁ ଭୁବନେଶ୍ୱର, କଟକ, ବ୍ରହ୍ମପୁର ଓ ରାଜ୍ୟର ସବୁ ଅଞ୍ଚଳରେ ତାପମାତ୍ରା ୪୦ ଡିଗ୍ରୀରୁ ଅଧିକ ରହୁଛି। ପାଣି ସମସ୍ୟା ଅତ୍ୟନ୍ତ ଜଟିଳ ହୋଇପଡ଼ିଛି।

ରାଜଧାନୀ ଭୁବନେଶ୍ୱରରେ ବିଲଡରମାନେ ଏକ ଅଭାବନୀୟ ପରିସ୍ଥିତି ସୃଷ୍ଟି କରିଛନ୍ତି। ସେମାନେ ସରକାରୀ ଜାଗା ଓ ଜଳାଶୟକୁ ଜବରଦଖଲ କରୁଛନ୍ତି ଏବଂ ପ୍ରାକୃତିକ ଜଳଉତ୍ସଗୁଡ଼ିକୁ ପୋତି ସେଗୁଡ଼ିକୁ ପ୍ଲଟିଂ କରି ବିକ୍ରି କରିଦେଉଛନ୍ତି। କିଛି ବର୍ଷ ତଳେ ହାଇଟେକ୍ ଗ୍ରୁପର ମାଲିକ ତିରୁପତି ପାଣିଗ୍ରାହୀ କୁଆଖାଇ ନଦୀର କିଛି ଅଂଶକୁ ପୋତି ସେଠାରେ ମେଡିକାଲ କଲେଜ ଓ ହସପିଟାଲ ଆରମ୍ଭ କରିଥିଲେ। ନଦୀ ଶଯ୍ୟାରେ ଏହି ନିର୍ମାଣ ସଂପୂର୍ଣ୍ଣ ବେଆଇନ ହୋଇଥିଲେ ମଧ୍ୟ ତାଙ୍କ ବିରୁଦ୍ଧରେ ସରକାର କୌଣସି ପଦକ୍ଷେପ ଗ୍ରହଣ କଲେନାହିଁ। ଏହାଦ୍ୱାରା ଅନ୍ୟ ଅସାମାଜିକ ଧନୀ ବ୍ୟକ୍ତିମାନେ ଉତ୍ସାହିତ ହେଲେ ଏବଂ ସଦ୍ୟ ପ୍ରକାଶିତ ଏକ ଖବରରୁ ଜଣାପଡ଼େ ଯେ ଭୁବନେଶ୍ୱରର ବାସୁଆଘାଇ ପଞ୍ଚାୟତ ଅଞ୍ଚଳରେ ଅସାମାଜିକ ବ୍ୟକ୍ତିମାନେ ପ୍ରାକୃତିକ ନାଳ ଓ ଝରଣାକୁ ପୋତିବାକୁ ଉଦ୍ୟମ କରୁଛନ୍ତି।

ଚଳିତ ଏପ୍ରିଲ ୭ ତାରିଖରେ ବିଶ୍ୱ ସ୍ୱାସ୍ଥ୍ୟ ଦିବସ ଅବସରରେ ବିଭିନ୍ନ ଆଲୋଚନା ସମୟରେ ଜଣାପଡ଼ିଲା ଯେ ଭୁବନେଶ୍ୱରର ଭୂତଳ ଜଳ ଦୂଷିତ। ନୂଆଦିଲ୍ଲୀ ସ୍ଥିତ Centre for Science and Environment (CSE) ପକ୍ଷରୁ ହୋଇଥିବା ଗବେଷଣା ମୁତାବକ ଭୁବନେଶ୍ୱର ସହରରେ ଥିବା ୮୮ଟି ଶିଳ୍ପସଂସ୍ଥା ମଧ୍ୟରୁ ୩୪ଟି ଶିଳ୍ପ ଜଳ ପ୍ରଦୂଷଣ ପାଇଁ ଦାୟୀ। ସେମାନଙ୍କ ପାଇଁ ସହରର ଭୂତଳ ଜଳ ବିଷମୟ ହେବାରେ ଲାଗିଛି। ଏ ଅବସ୍ଥା ଜାରି ରହିଲେ ଖୁବ୍ ଶୀଘ୍ର ଭୁବନେଶ୍ୱରର ଭୂତଳ ଜଳ ପାନୀୟ ଅଯୋଗ୍ୟ ହୋଇପଡ଼ିବ ବୋଲି CSE ତାଙ୍କ ରିପୋର୍ଟରେ ଦର୍ଶାଇଛନ୍ତି। ଏଠାରେ ଉଲ୍ଲେଖ କରିବା ସମୀଚୀନ ହେବ ଯେ ଭୁବନେଶ୍ୱରରେ ଦୈନିକ ପ୍ରାୟ ୨୫ କୋଟି ଲିଟର ଜଳ ଆବଶ୍ୟକ ହୋଇଥାଏ ଏବଂ ଏଥିରୁ ୫ କୋଟି ଲିଟର ଭୂତଳ ଜଳ। ବଳକା ୨୦ କୋଟି ଲିଟର କୁଆଖାଇ ନଦୀ (୧୨

କୋଟି ଲିଟର)ରୁ, ମହାନଦୀ (୬ କୋଟି ଲିଟର)ରୁ ଓ ଦୟା ନଦୀ (୨ କୋଟି ଲିଟର)ରୁ ଆସିଥାଏ।

ସରକାରୀ ପ୍ରକଳ୍ପଗୁଡ଼ିକ ମଧ୍ୟ ଠିକ୍ ଭାବରେ କାର୍ଯ୍ୟକାରୀ ହେଉ ନଥିବାରୁ ସମସ୍ୟା ଅଧିକ ଗୁରୁତର ହେଉଛି। ଉଦାହରଣସ୍ୱରୂପ ୨ ବର୍ଷ ତଳେ ଭୁବନେଶ୍ୱର ବ୍ଲକ ପାତ୍ରପଡ଼ା ପଞ୍ଚାୟତର ସିଜୁଆ ଗ୍ରାମ୍ୟ ପାଇପ ଜଳଯୋଗାଣ ପ୍ରକଳ୍ପ ଆରମ୍ଭ ହୋଇଥିଲା। କିନ୍ତୁ ଅଦ୍ୟାବଧି ଯନ୍ତ୍ରୀମାନଙ୍କ ବେପରୁଆ ମନୋଭାବ ଯୋଗୁଁ ଏହି ପ୍ରକଳ୍ପ କାର୍ଯ୍ୟକାରୀ ହୋଇପାରି ନାହିଁ। ଅନ୍ୟ ଏକ ପ୍ରକଳ୍ପ ଲିଙ୍ଗରାଜ ବିହାରବାସୀଙ୍କ ଜଳ ସମସ୍ୟା ଦୂର କରିବାକୁ ନରାଜରୁ ଜଳ ଯୋଗାଣ ପ୍ରକଳ୍ପ ମୁଖ୍ୟମନ୍ତ୍ରୀ ଆରମ୍ଭ କରିଥିଲେ ମଧ୍ୟ ଆଜିଯାଏ ତାହା କାର୍ଯ୍ୟକ୍ଷମ ହୋଇପାରି ନାହିଁ। ବି.ଡି.ଏ. ଓ ଜନସ୍ୱାସ୍ଥ୍ୟ ବିଭାଗ ମଧ୍ୟରେ ଚାଲିଥିବା ଟଣାଓଟରାରେ ଲିଙ୍ଗରାଜ ବିହାରବାସୀ ପିଇବା ପାଣି ପାଇବାରୁ ବଞ୍ଚିତ ହୋଇଛନ୍ତି।

ଅନଗୁଳ ଜିଲ୍ଲାରେ ଜିନ୍ଦଲ ଷ୍ଟିଲ ଆଣ୍ଡ ପାୱାର ଲିମିଟେଡ ବେଆଇନ ଭାବେ ଭୂତଳ ଜଳ ଓ ପରଜଂଗ କ୍ଷୁଦ୍ର ଜଳସେଚନ ପ୍ରକଳ୍ପରୁ ପାଣି ଲୁଟ୍ କରୁଥିବାର ଅଭିଯୋଗମାନ ଜଳସେଚନ ନିର୍ବାହୀ ଯନ୍ତ୍ରୀ ସରକାରଙ୍କ ଦୃଷ୍ଟିକୁ ଆଣିଥିଲେ ମଧ୍ୟ ଏହି କମ୍ପାନୀ ବିରୋଧରେ ସରକାର କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିନାହାନ୍ତି। କେବଳ ଜିନ୍ଦଲ ନୁହେଁ ଓଡ଼ିଶାରେ କାର୍ଯ୍ୟରତ ଥିବା ୫୯ଟି ଘରୋଇ କମ୍ପାନୀ ସରକାରଙ୍କର ଜଳକର ବାବଦରେ ହଜାର ହଜାର କୋଟି ଟଙ୍କା ବାକି ରଖିଛନ୍ତି।

ଜଳସଂକଟର ମୁକାବିଲା କରିବାକୁ ହେଲେ ଜଳ ପରିଚାଳନାର ଉନ୍ନତି ସର୍ବାଦୌ କର୍ତ୍ତବ୍ୟ। ଜଳର ସଂଚୟ ଓ ମିତବ୍ୟୟୀ ହେବା ଅତ୍ୟନ୍ତ ଆବଶ୍ୟକ। ଆମ ରାଜ୍ୟରେ ବର୍ଷା ଜଳର ପ୍ରାୟ ୭୦ ଭାଗ ସମୁଦ୍ରକୁ ଚାଲିଯାଏ। ଆସନ୍ତାବର୍ଷଠାରୁ ବଡ଼ ବଡ଼ ଜଳଭଣ୍ଡାର ନିର୍ମାଣ କରି ବର୍ଷା ଜଳକୁ ସଂଚୟ କରି ରଖିଲେ ଜନସାଧାରଣ ଉପକୃତ ହୁଅନ୍ତେ। କିନ୍ତୁ ଚଳିତ ବର୍ଷ ଆପାତକାଳୀନ ଭିତ୍ତିରେ ଜରାଜୀର୍ଣ୍ଣ ଜଳାଶୟଗୁଡ଼ିକୁ ପୁନରୁଦ୍ଧାର କରାଯାଉ ଏବଂ ନୂତନ ଜଳାଶୟ ସୃଷ୍ଟି କରାଯାଉ। ଅଚଳ ହୋଇଥିବା ନଳକୂପ ଗୁଡ଼ିକୁ ଯୁଦ୍ଧକାଳୀନ ଭିତ୍ତିରେ ସଜାଡ଼ି କାର୍ଯ୍ୟକ୍ଷମ କରନ୍ତୁ। ଯେଉଁ ସରକାରୀ କର୍ମଚାରୀ ଓ ଠିକାଦାରମାନେ ସେମାନଙ୍କ କାର୍ଯ୍ୟରେ ଅବହେଳା କରିବେ ସେମାନଙ୍କୁ ଦୃଷ୍ଟାନ୍ତମୂଳକ ଶାସ୍ତି ଦିଆଯାଉ। ଜନସାଧାରଣଙ୍କର ପିଇବା ପାଣି ସମସ୍ୟାକୁ ସରକାର ଅବିଳମ୍ବେ ଦୂର କରିବାକୁ ସର୍ବୋଚ୍ଚ ପ୍ରାଥମିକତା ଦିଅନ୍ତୁ।

*ସମାଜ, ୨୪.୪.୨୦୧୩*

# ପ୍ରାଣୀର ଆରତ ଦୁଃଖ ଅପ୍ରମିତ

ଆଜିକାଲି ପ୍ରତିଦିନ ଖବରକାଗଜ ପୃଷ୍ଠା ଲେଉଟାଇଲେ ଦୃଷ୍ଟି ପଡୁଛି ରାଜ୍ୟର କେଉଁଠାରେ ଧାନର ଅଭାବୀ ବିକ୍ରି ହେଉଛି ତ କେଉଁଠି ବିଲାତି ବାଇଗଣ ଅପର୍ଯ୍ୟାପ୍ତ ପରିମାଣରେ ଉତ୍ପାଦନ କରିଥିବା ବ୍ୟକ୍ତିଟି ଉତ୍ପାଦିତ ଦ୍ରବ୍ୟ ବିକ୍ରି କରିନପାରି ମୁଣ୍ଡରେ ହାତ ଦେଇ ବସିଛି। ଆଉ କେଉଁଠି ଅଦିନିଆ ବର୍ଷାରେ ଖଳାରେ ଧାନ ଗଜା ହୋଇଯାଉଛି ତ କେଉଁଠି ବିହନର ଅଭାବ, ପୁଣି କେଉଁଠି କୀଟନାଶକ ଔଷଧ ମିଳୁନାହିଁ। ସବୁକ୍ଷେତ୍ରରେ ଚାଷୀଟି କ୍ଷତିଗ୍ରସ୍ତ ହେଉଛି। ବିପତ୍ତିରୁ ରକ୍ଷା ପାଇବା ପାଇଁ ସେ ସହାୟତା ପାଉନାହିଁ। କୃଷକମାନେ ଉତ୍ପାଦିତ ଦ୍ରବ୍ୟର ଉଚିତ ମୂଲ୍ୟ ପାଇପାରୁ ନାହାନ୍ତି। ଓଡ଼ିଶାର କୃଷକ ମହାସଂଘ ବହୁ ବର୍ଷ ହେଲା ସରକାରଙ୍କ ପାଖରେ ଦାବୀ ରଖିଛନ୍ତି ଯେ, ଶସ୍ୟ ସଂରକ୍ଷଣ ପାଇଁ ସରକାର ଶୀତଳଭଣ୍ଡାର ଓ ମଣ୍ଡି ନିର୍ମାଣ କରନ୍ତୁ ଏବଂ ଖାଦ୍ୟପ୍ରକ୍ରିୟାକରଣ ଶିଳ୍ପ ପ୍ରତିଷ୍ଠାକୁ ଗୁରୁତ୍ୱ ଦିଅନ୍ତୁ। କିନ୍ତୁ ଏହି ଦାବୀ ପ୍ରତି ସରକାର ନଜରଅନ୍ଦାଜ କରିଆସୁଛନ୍ତି।

ଓଡ଼ିଶା ସରକାର ୨୦୧୩-୧୪ ଆର୍ଥିକ ବର୍ଷରେ ସ୍ୱତନ୍ତ୍ର କୃଷି ବଜେଟ ପ୍ରସ୍ତୁତ କରି ଚାଷ ଓ ଚାଷୀକୁ ଗୁରୁତ୍ୱ ଦେଉଛନ୍ତି ବୋଲି ଏକ ଧାରଣା ସୃଷ୍ଟି କରିଛନ୍ତି। ଆମ ଦେଶରେ କର୍ଣ୍ଣାଟକ ପରେ ଓଡ଼ିଶା ଦ୍ୱିତୀୟ ରାଜ୍ୟ ଯେଉଁଠାରେ କୃଷକମାନଙ୍କ ହିତ ପାଇଁ ସରକାର ଏକ ସ୍ୱତନ୍ତ୍ର ବଜେଟ ପ୍ରସ୍ତୁତ କରିଥିବା କଥା କହୁଛନ୍ତି। କର୍ଣ୍ଣାଟକ ସରକାର ତାଙ୍କ ୨୦୧୧-୧୨ ମସିହାର ସମୁଦାୟ ବଜେଟ ଅଟକଳ ୬୫,୦୩୪ କୋଟି ଟଙ୍କା ମଧ୍ୟରୁ କୃଷି ଓ ଆନୁଷଙ୍ଗିକ କ୍ଷେତ୍ର ନିମନ୍ତେ ୧୯,୬୫୯ କୋଟି (ଅର୍ଥାତ୍ ବଜେଟର ଶତକଡ଼ା ୩୦ ପ୍ରତିଶତ) ବ୍ୟୟବରାଦ କରି ଏକ ସ୍ୱତନ୍ତ୍ର କୃଷି ବଜେଟ ପ୍ରସ୍ତୁତ କରିଥିଲେ। କିନ୍ତୁ ଓଡ଼ିଶା ସରକାର ୨୦୧୩-୧୪ ଆର୍ଥିକ ବର୍ଷ ପାଇଁ ସମୁଦାୟ ବଜେଟ ଅଟକଳ ୬୦,୩୨୬ କୋଟି ଟଙ୍କା ମଧ୍ୟରୁ କୃଷି ଓ କୃଷକ ସମ୍ବନ୍ଧୀୟ ବିଭିନ୍ନ କ୍ଷେତ୍ର ପାଇଁ ମୋଟ ୭,୧୬୧ କୋଟି ଟଙ୍କା (ଅର୍ଥାତ୍ ବଜେଟର ମାତ୍ର ଶତକଡ଼ା ୧୨ ପ୍ରତିଶତ) ବ୍ୟୟବରାଦ କରି ଏହାକୁ ଏକ ସ୍ୱତନ୍ତ୍ର ବଜେଟ ବୋଲି ଦାବୀ କରୁଛନ୍ତି। କୃଷି ବଜେଟରେ ରହିଥିବା ବ୍ୟୟବରାଦ କେବଳ କୃଷିପାଇଁ

ଉଦ୍ଦିଷ୍ଟ ହୋଇନାହିଁ। ଏଥିରେ ପଶୁସଂପଦ, ସମବାୟ, ଜଳସେଚନ ଆଦି ପାଞ୍ଚଟି ବିଭାଗକୁ ମିଶାଇ ଦିଆଯାଉଛି। ତେଣୁ ବାସ୍ତବରେ ହିସାବ କଲେ କୃଷି ପାଇଁ ବ୍ୟୟବରାଦ ପୂର୍ବବର୍ଷଠାରୁ ମଧ୍ୟ କମ୍ ହେବ।

ଏଠାରେ ଉଲ୍ଲେଖ କଲେ ଉଚିତ ହେବ ଯେ ଏହି ସ୍ୱତନ୍ତ୍ର କୃଷି ବଜେଟରେ ୭,୧୬୧ କୋଟି ଟଙ୍କା ମଧ୍ୟରୁ ୪,୦୨୫ କୋଟି ଟଙ୍କା କେବଳ ଜଳସେଚନ ଯୋଜନାରେ ବ୍ୟୟ ହେବାପାଇଁ ଧାର୍ଯ୍ୟ କରାଯାଇଅଛି। ଜଳସେଚନ ବିଭାଗର ପୂର୍ବ ଦୁଇ ବର୍ଷରେ ହୋଇଥିବା ଖର୍ଚ୍ଚରୁ ଜଣାପଡ଼େ ଯେ ୨୦୧୦-୧୧ ଆର୍ଥିକ ବର୍ଷଠାରୁ ୨୦୧୨-୧୩ ଆର୍ଥିକ ବର୍ଷ ପର୍ଯ୍ୟନ୍ତ ୪,୯୦୮ଟି ଚେକଡ୍ୟାମ ୫୫୩ କୋଟି ଟଙ୍କା ବ୍ୟୟରେ ନିର୍ମାଣ କରି ୨୮ ହଜାର ହେକ୍ଟର ଜମିକୁ ଜଳ ସେଚିତ କରିବାର ଲକ୍ଷ୍ୟ ଥିଲା। କିନ୍ତୁ ଜଳସେଚନ ବିଭାଗ ଦ୍ୱାରା ମାତ୍ର ୧,୬୯୮ଟି ଚେକଡ୍ୟାମର ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇପାରିଛି। ୨୮ ହଜାର ହେକ୍ଟର ଜମିକୁ ଜଳ ଯୋଗାଇଦେବାର ଲକ୍ଷ୍ୟ ହାସଲ ହୋଇପାରି ନାହିଁ। ତେଣୁ ଚଳିତ ବର୍ଷ ବରାଦ ହୋଇଥିବା ଅର୍ଥକୁ ଜଳସେଚନ ବିଭାଗ ବ୍ୟୟ କରିପାରିବ ସେଥିରେ ଘୋର ସନ୍ଦେହ ରହିଛି।

ଓଡ଼ିଶାରେ କୃଷକ ଓ କୃଷି କିପରି ଘୋର ଅବହେଳାର ଶିକାର ହେଉଛି ଏହି ବିଭାଗରେ ଖାଲି ପଡ଼ିଥିବା ପଦବୀ ଗୁଡ଼ିକ ବିଷୟ ଉଲ୍ଲେଖ କଲେ ସେକଥା ଜଳଜଳ ହୋଇ ଦିଶିବ।

ଚଳିତ ମାସ ୪ ତାରିଖରେ ଏକ ପ୍ରଖ୍ୟାତ ଓଡ଼ିଆ ଦୈନିକ ଖବରକାଗଜରେ ଏକ ସମ୍ବାଦ 'କୃଷି ବିଭାଗରେ ୩ ହଜାର ପଦ ଖାଲି' ଶିରୋନାମାରେ ପ୍ରକାଶିତ ହୋଇଛି, ଯେ କୃଷି ବିଭାଗର ଶାସନ ସଚିବଠାରୁ ଆରମ୍ଭ କରି ସଚିବାଳୟରେ ସହକାରୀ ସେକସନ ଅଫିସର ପର୍ଯ୍ୟନ୍ତ ଅଧିକାଂଶ ପଦବୀ ଖାଲି ପଡ଼ିଛି। ସେହିଭଳି କୃଷି ନିର୍ଦ୍ଦେଶାଳୟ ଓ ଏହାର ଅଧସ୍ତନ ଅଫିସ ଗୁଡ଼ିକରେ ବହୁ ପଦବୀରେ କେହି ନିଯୁକ୍ତ ପାଇନଥିବାରୁ ଅଫିସଗୁଡ଼ିକ ଅଚଳ ପ୍ରାୟ ଅବସ୍ଥାରେ ରହିଅଛି। ଏକମାତ୍ର ଅତିରିକ୍ତ କୃଷି ନିର୍ଦ୍ଦେଶକ ପଦବୀ ପୂରଣ ହୋଇନାହିଁ। ସମଗ୍ର ରାଜ୍ୟରେ ଜଣେ ହେଲେ ଜିଲ୍ଲା କୃଷି ଅଧିକାରୀ ନାହାନ୍ତି। ୧୦୦ଟି ଯାକ କୃଷି ବିଶେଷଜ୍ଞ ପଦବୀରେ ଜଣେହେଲେ ନାହାନ୍ତି। ୯୦୨ଟି କୃଷି ଅଧିକାରୀ ପଦ ମଧ୍ୟରୁ ୪୫୫ଟି ପଦ ଖାଲି ପଡ଼ିଥିବାବେଳେ ୨୭୧ଟି କୃଷି ଓଭରସିୟର ଓ ୫୪୫ଟି ଭି.ଏ.ଡବ୍ଲ୍ୟୁ. ପଦବୀ ଖାଲି ରହିଅଛି। ଉଦ୍ୟାନ ନିର୍ଦ୍ଦେଶାଳୟ ଓ ମୃତ୍ତିକା ସଂରକ୍ଷଣ ନିର୍ଦ୍ଦେଶାଳୟର ପରିସ୍ଥିତି

ମଧ୍ୟ କୃଷି ନିର୍ଦ୍ଦେଶାଳୟ ଠାରୁ ଭିନ୍ନ ନୁହେଁ। ଉଦ୍ୟାନ ନିର୍ଦ୍ଦେଶାଳୟରେ ଭାରତୀୟ ଫରେଷ୍ଟ ସର୍ଭିସ୍‌ର ଜଣେ ଅଫିସର୍ ଦୀର୍ଘଦିନ ହେଲା ରାଜୁତି କରୁଛନ୍ତି। ସେଠାରେ ୨୩ଟି ଉପ-ନିର୍ଦ୍ଦେଶକ ଓ ୬୩ଟି ସହକାରୀ ନିର୍ଦ୍ଦେଶକ ପଦ ଖାଲି ପଡ଼ିଛି। ୬୯ଟି ସହକାରୀ ଉଦ୍ୟାନ ଅଧିକାରୀ ପଦବୀରେ କେହି ନିଯୁକ୍ତି ପାଇନାହାନ୍ତି। ଅନ୍ୟାନ୍ୟ ତୃତୀୟ ଓ ଚତୁର୍ଥ ଶ୍ରେଣୀ କର୍ମଚାରୀ ପଦବୀ ଅଧାଅଧି ଖାଲି ପଡ଼ିଛି। ମୃତ୍ତିକା ସଂରକ୍ଷଣ ନିର୍ଦ୍ଦେଶକ ପଦବୀ ଓ ଏକମାତ୍ର ଯୁଗ୍ମ ନିର୍ଦ୍ଦେଶକ ପଦବୀ ଖାଲି ରହିଛି। ଏହି ନିର୍ଦ୍ଦେଶାଳୟର ୧୫ଟି ଉପ ନିର୍ଦ୍ଦେଶକ, ୩୫ଟି ସହକାରୀ ନିର୍ଦ୍ଦେଶକ ଓ ୧୦୦ଟି କନିଷ୍ଠ ମୃତ୍ତିକା ସଂରକ୍ଷଣ ଅଧିକାରୀ ପଦ ଖାଲି ଅଛି। କୃଷି ଉଦ୍ୟାନ ଓ ମୃତ୍ତିକା ସଂରକ୍ଷଣ ବିଭାଗରେ ବହୁବର୍ଷ ଧରି ପ୍ରତ୍ୟକ୍ଷ ନିଯୁକ୍ତି ହେଉନାହିଁ। ବହୁ ଅଭିଜ୍ଞ ଓ ଦକ୍ଷ ଅଧିକାରୀ ଥିଲେ ମଧ୍ୟ ସେମାନଙ୍କୁ ଖାଲି ପଡ଼ିଥିବା ସ୍ଥାନଗୁଡ଼ିକରେ ପଦୋନ୍ନତି ଦିଆଯାଉନାହିଁ। ଏହି ଦୁଇଟି ନିର୍ଦ୍ଦେଶାଳୟର କାର୍ଯ୍ୟ ଅଚଳପ୍ରାୟ ଅବସ୍ଥାରେ ପହଞ୍ଚିଛି। ଏହି କର୍ମଚାରୀମାନଙ୍କର ଅନୁପସ୍ଥିତିରେ କୃଷକମାନଙ୍କୁ କେହି ପରାମର୍ଶ ଦେବାକୁ ନାହାନ୍ତି ଓ ତାଙ୍କର ଅଭିଯୋଗ ଶୁଣିବାକୁ ନାହାନ୍ତି। ସେମାନେ ନିଜ କପାଳକୁ ଆଦରି ବହୁ ହୀନସ୍ଥା ହେଉଛନ୍ତି।

ଆମ ରାଜ୍ୟର ଜନସଂଖ୍ୟାର ପାଖାପାଖି ୭୦ ଭାଗ ଲୋକ କୃଷି କାର୍ଯ୍ୟରେ ନିୟୋଜିତ ଅଛନ୍ତି। ଏହାକୁ ଦୃଷ୍ଟିରେ ରଖି ଚଳିତ ବର୍ଷ ୨୦୧୩-୧୪ ଆର୍ଥିକ ବର୍ଷ ପାଇଁ ପ୍ରଥମଥର ପାଇଁ ଏକ ସ୍ୱତନ୍ତ୍ର କୃଷି ବଜେଟ ରାଜ୍ୟ ଅର୍ଥ ମନ୍ତ୍ରୀ ଉପସ୍ଥାପନ କରିଥିଲେ ଓ "ଏହି କୃଷି ବଜେଟ କୃଷକମାନଙ୍କ କଲ୍ୟାଣ ପାଇଁ ସମର୍ପିତ" ବୋଲି ଘୋଷଣା କରିଥିଲେ। ରାଜ୍ୟ ସରକାର ମେ' ମାସ ୧୩ ତାରିଖ ଅକ୍ଷୟ ତୃତୀୟାଠାରୁ ରାଜ୍ୟର 'କୃଷି ନୀତି ୨୦୧୩' ଘୋଷଣା କରିଛନ୍ତି। ୨୦୦୮ରେ ମଧ୍ୟ ନବୀନ ପଟ୍ଟନାୟକ ସରକାର ଏକ କୃଷିନୀତି ଘୋଷଣା କରିଥିଲେ ଯାହା କୃଷି କ୍ଷେତ୍ରରେ ଉପୁଜିଥିବା ସମସ୍ୟାର ସମାଧାନ କରିବାରେ ସଫଳ ହୋଇନଥିଲା।

ଭାରତରେ ଥିବା ବିଶ୍ୱବ୍ୟାଙ୍କର ମୁଖ୍ୟ ଅଧିକାରୀ ମିଷ୍ଟର ରବର୍ଟ ଜାଘା ଏକ ସାକ୍ଷାତକାରରେ କହିଛନ୍ତି ଯେ ବିହାର ଓ ଓଡ଼ିଶାରେ କୃଷିର ଉନ୍ନତିର ବହୁ ସମ୍ଭାବନା ଥିଲେ ମଧ୍ୟ ଜଳସେଚନ, ଗମନାଗମନ ଓ କୃଷକମାନଙ୍କୁ ବୈଜ୍ଞାନିକ ପଦ୍ଧତିରେ ତାଲିମ ଦେବା କ୍ଷେତ୍ରରେ ଓଡ଼ିଶା ବହୁ ପଛରେ ଥିବାରୁ କୃଷି ଉତ୍ପାଦନ କମିଯାଉଛି। ରାଜ୍ୟରେ ବର୍ଷକୁ ବର୍ଷ ଖାଦ୍ୟଶସ୍ୟ ଉତ୍ପାଦନ ହ୍ରାସ ପାଇବାରେ ଲାଗିଛି। ଓଡ଼ିଶାରେ

୨୦୦୭-୦୮ରେ ୯୨ ଲକ୍ଷ ଟନ୍ ଖାଦ୍ୟଶସ୍ୟ ଉତ୍ପାଦନ ହୋଇଥିବାବେଳେ ୨୦୦୯-୧୦ ବର୍ଷରେ ଏହା କମିଯାଇ ୮୬.୫ ଟନ୍ ଉତ୍ପାଦିତ ହୋଇଛି। ଏହି ଧାରା ପରବର୍ତ୍ତୀ ବର୍ଷମାନଙ୍କରେ ଜାରି ରହିଛି।

୨୦୦୮ ମସିହାକୁ ରାଜ୍ୟ ସରକାର 'ଜଳସେଚନ ବର୍ଷ' ବୋଲି ଘୋଷଣା କରି ରାଜ୍ୟର ପ୍ରତି ବ୍ଲକରେ ୩୫ ପ୍ରତିଶତ ଚାଷଜମିକୁ ଜଳସେଚିତ କରିବାକୁ ସଂକଳ୍ପ କରିଥିଲେ। କିନ୍ତୁ ୨୦୧୩ ମସିହା ସୁଦ୍ଧା ୫ ବର୍ଷ ବିତିଥିଲେ ମଧ୍ୟ ୫ ପ୍ରତିଶତ ଅତିରିକ୍ତ ଜଳସେଚନ ବ୍ୟବସ୍ଥା ହୋଇପାରିନାହିଁ ଏବଂ ଆଜି ମଧ୍ୟ କୃଷି କାର୍ଯ୍ୟରେ ନିୟୋଜିତ ଅଧିକାଂଶ ଲୋକ ବର୍ଷାଜଳ ଉପରେ ସମ୍ପୂର୍ଣ୍ଣ ନିର୍ଭର କରୁଛନ୍ତି। କୃଷକମାନେ ବଞ୍ଚିବା ପାଇଁ ଆପ୍ରାଣ ଉଦ୍ୟମ କରି ଋଣ ଜାଲରେ ଏଭଳି ଛନ୍ଦି ହୋଇପଡ଼ିଛନ୍ତି ଯେ ସେଥିରୁ ମୁକୁଳିବାର ଉପାୟ ନ ଦେଖି ହତୋତ୍ସାହ ହୋଇ ଆତ୍ମହତ୍ୟାର ପନ୍ଥା ବାଛି ନେଉଛନ୍ତି। ୧୯୯୫ରୁ ୨୦୧୦ ଏହି ଷୋହଳ ବର୍ଷ ମଧ୍ୟରେ ସାରା ଦେଶରେ ମୋଟ ୨,୫୬,୯୧୩ ଜଣ କୃଷକ ଆତ୍ମହତ୍ୟା କରିଛନ୍ତି। ଆମ ରାଜ୍ୟରେ କୃଷକମାନଙ୍କର ଆତ୍ମହତ୍ୟା ଘଟଣା ମଧ୍ୟ ବଢ଼ି ବଢ଼ି ଚାଲିଛି। ୨୦୦୯ ନଭେମ୍ବର ୨୧ରେ ତତ୍କାଳୀନ କୃଷି ମନ୍ତ୍ରୀ ଦାମୋଦର ରାଉତ ବିଧାନସଭାରେ ପ୍ରକାଶ କରିଥିଲେ ଯେ ୧୧ ବର୍ଷ ମଧ୍ୟରେ ଓଡ଼ିଶାରେ ମୋଟ ୩,୫୦୯ ଜଣ କୃଷକ ଆତ୍ମହତ୍ୟା କରିଛନ୍ତି। ସରକାରୀ ରିପୋର୍ଟ ଅନୁଯାୟୀ ଆମ ରାଜ୍ୟରେ ପ୍ରତିବର୍ଷ ହାରାହାରି ୩୨୮ ଜଣ ଚାଷୀ ଆତ୍ମହତ୍ୟା କରୁଛନ୍ତି। ସରକାରଙ୍କ ଦୂରଦୃଷ୍ଟି ଅଭାବରୁ ଜଳସେଚନ ସୁବିଧା ନଥିବାରୁ ଚାଷଜମି ଛଅ ମାସ ପଡ଼ିଆ ପଡୁଛି ଏବଂ ଲକ୍ଷ ଲକ୍ଷ ନାମମାତ୍ର ଚାଷୀ, କ୍ଷୁଦ୍ର ଚାଷୀ ଓ କୃଷି ଶ୍ରମିକ ଦାଦନ ଖଟିବାକୁ ବାହାର ରାଜ୍ୟକୁ ଯିବାକୁ ବାଧ୍ୟ ହେଉଛନ୍ତି। ସରକାର ଯଦି ଉଠା ଜଳସେଚନ, କ୍ଷୁଦ୍ର ଜଳସେଚନ, ଭୂତଳ ଜଳ ବିନିଯୋଗକୁ କ୍ରିୟାଶୀଳ କରିବାକୁ ଯୋଜନା କରିଥାନ୍ତେ ତେବେ ବର୍ଷସାରା କୃଷକ ତା' କ୍ଷେତରେ କିଛିନା କିଛି ଉତ୍ପାଦନ କରୁଥାଆନ୍ତା। ଏହାଦ୍ୱାରା କୃଷି ଉତ୍ପାଦନ ବୃଦ୍ଧି ପାଇବା ସଂଗେ ସଂଗେ ଦାଦନ ଖଟିବାକୁ ଯାଉଥିବା ଲୋକମାନଙ୍କୁ ରାଜ୍ୟରେ ରୋଜଗାର ଉପଲବ୍ଧ ହୋଇପାରନ୍ତା। କିନ୍ତୁ ଘୋଷିତ କୃଷିନୀତିରେ ଏସବୁ ପ୍ରସଙ୍ଗକୁ ଗୁରୁତ୍ୱ ଦିଆଯାଇନାହିଁ। ରାଜ୍ୟ ସରକାର ୬ ହଜାର କୋଟି ଟଙ୍କା ୨ ପ୍ରତିଶତ ସୁଧରେ କୃଷି ଋଣ କୃଷକମାନଙ୍କୁ ପ୍ରଦାନ କରିବେ ବୋଲି ଘୋଷଣା କରିଛନ୍ତି। କିନ୍ତୁ ଏହାଦ୍ୱାରା ଭାଗଚାଷୀମାନେ କୌଣସି ସୁବିଧା ପାଇବେ ନାହିଁ। କେବଳ

ଜମିମାଲିକମାନେ ଏହି ଋଣ ନେଇ କୃଷି ବ୍ୟତୀତ ଅନ୍ୟାନ୍ୟ କାର୍ଯ୍ୟରେ ବ୍ୟବହାର କରିବେ। ଭାଗଚାଷୀମାନଙ୍କୁ ପଡ଼ୋଶୀ ରାଜ୍ୟ ଆନ୍ଧ୍ର ଭଳି ଚିହ୍ନଟ କରି ସେମାନଙ୍କୁ ପରିଚୟପତ୍ର ପ୍ରଦାନ କଲେ ସେମାନେ ମଧ୍ୟ ବ୍ୟାଙ୍କ ଓ ସମବାୟ ସଂସ୍ଥାମାନଙ୍କରୁ ଋଣ ପାଇବାକୁ ଯୋଗ୍ୟ ବିବେଚିତ ହେବେ।

ଆମ ରାଜ୍ୟରେ ୫୪.୦୯ ଲକ୍ଷ ହେକ୍ଟର ଚାଷ ପାଇଁ ଉପଯୋଗୀ ଜମି ରହିଥିବାବେଳେ ୬.୩୮ ଲକ୍ଷ ହେକ୍ଟର ପତିତ କିସମର ଜମି ରହିଛି। ସରକାର ଏହି ପତିତ ଜମିକୁ ଚାଷୋପଯୋଗୀ କରାଇବାକୁ ପଦକ୍ଷେପ ନେବାରେ ଅବହେଳା ପ୍ରଦର୍ଶନ କରୁଛନ୍ତି। ଚଳିତ ବର୍ଷ ବଜେଟରେ ଏଥିପାଇଁ ଆଦୌ ବ୍ୟୟବରାଦ କରଯାଇନାହିଁ। ସରକାରଙ୍କର ୨୦୧୨-୧୩ ଅର୍ଥନୈତିକ ସର୍ଭେ ରିପୋର୍ଟରେ ଦର୍ଶାଯାଇଛି ଯେ ୨୦୧୧-୧୨ରେ ଚାଷ ଜମି ୫୨.୯୨ ଲକ୍ଷ ହେକ୍ଟରକୁ ହ୍ରାସ ପାଇଛି। ଚାଷୋପଯୋଗୀ ଜମିରେ ଶିଳ୍ପ ସଂସ୍ଥାଗୁଡ଼ିକ ଗଢ଼ି ଉଠୁଥିବାରୁ ଓ ତା'ର କିସମ ପରିବର୍ତ୍ତନ କରି ଘରବାଡ଼ି ନିର୍ମାଣ କରିବାକୁ ଅନୁମତି ଦିଆଯାଉଥିବାରୁ ଚାଷଜମି କମିବାରେ ଲାଗିଛି। ଆଜି ରାଜ୍ୟର କୃଷି ବ୍ୟବସ୍ଥା ଓ କୃଷକର ଦୟନୀୟ ଅବସ୍ଥା ପାଇଁ ରାଜ୍ୟ ସରକାରଙ୍କର ଅପରିଣାମଦର୍ଶିତା ସମ୍ପୂର୍ଣ୍ଣ ରୂପେ ଦାୟୀ। ବି.ପି.ଏଲ୍. ପରିବାର ପାଇଁ ଚାଉଳ ଦର କିଲୋପ୍ରତି ୨ ଟଙ୍କାରୁ ୧ ଟଙ୍କାକୁ କମାଇଦେଇ ଓ ଚାଷୀକୁ ମୋବାଇଲ ବଣ୍ଟନ କଲେ ସେମାନଙ୍କର ସମସ୍ୟା ଦୂର ହେବ ନାହିଁ। ଦେଶରେ ଚାଷୀର ଦୂରବସ୍ଥାକୁ ଲକ୍ଷ୍ୟକରି ବିଶିଷ୍ଟ ଅର୍ଥନୀତିଜ୍ଞ ଉଷା ପଟ୍ଟନାୟକ ଦେଶକୁ ରିପବ୍ଲିକ୍ ଅଫ୍ ହଙ୍ଗର ବୋଲି ଆଖ୍ୟା ଦେଲେଣି। ରାଜ୍ୟ ସରକାର ଯୁବକମାନଙ୍କୁ ନିକମା କରିସାରିଲେଣି। ଲୋକେ ଆଉ କାମ କରିବାକୁ ପ୍ରସ୍ତୁତ ନାହାଁନ୍ତି। ଗାଁରେ ଶତକଡ଼ା ୧୫ ଭାଗ ଜମି ପଡ଼ିଆ ପଡ଼ିଲାଣି। ଏସବୁ ଦେଖି ସନ୍ଥକବି ଭୀମଭୋଇଙ୍କର ସେଇ ଉକ୍ତି "ପ୍ରାଣୀର ଆରତ ଦୁଃଖ ଅପ୍ରମିତ ଦେଖୁଦେଖୁ କେବା ସହୁ, ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ" ମନେପଡ଼ିଯାଉଛି।

*ସମୟ, ୧୨.୭.୨୦୧୩*

# ଏକ ନିଆରା ଉପନ୍ୟାସ 'କୋଟ୍ଟା'ର ଲୋକାର୍ପଣ ଉତ୍ସବ

ଜୁଲାଇ ୨୮ ତାରିଖ ହୋଟେଲ ମ୍ୟାରିଅନ ସମ୍ମିଳନୀ କକ୍ଷରେ କେନ୍ଦ୍ର ମନ୍ତ୍ରୀ ତଥା ବିଶିଷ୍ଟ କନ୍ନଡ ସାହିତ୍ୟିକ ଏମ୍ ବିରାପ୍ପା ମୋଇଲିଙ୍କ ଦ୍ୱାରା ଲିଖିତ ଏବଂ ଓଡ଼ିଆ ଭାଷାରେ ମହେନ୍ଦ୍ର ପ୍ରସାଦଙ୍କ ଦ୍ୱାରା ଅନୂଦିତ କୋଟ୍ଟା ପୁସ୍ତକର ଲୋକାର୍ପଣ ଉତ୍ସବ ଅନୁଷ୍ଠିତ ହୋଇଥିଲା । ଏହି ଉତ୍ସବରେ ମାନ୍ୟବର ଓଡ଼ିଶା ରାଜ୍ୟପାଳ ଡକ୍ଟର ଏସ. ସି. ଜମିର ମୁଖ୍ୟ ଅତିଥି, ଆସାମର ମାନ୍ୟବର ରାଜ୍ୟପାଳ ତଥା ସୁସାହିତ୍ୟିକ ଜାନକୀ ବଲ୍ଲଭ ପଟ୍ଟନାୟକ ଉନ୍ମୋଚକ, ଚନ୍ଦ୍ରେଶ କୁମାରୀ କଟୋଚ, କେନ୍ଦ୍ର ସଂସ୍କୃତି ବିଭାଗ ମନ୍ତ୍ରୀ ଅଧ୍ୟକ୍ଷ ଭାବେ ଯୋଗ ଦେଇଥିଲେ । ଡକ୍ଟର ଏମ୍ ବିରାପ୍ପା ମୋଇଲି ତାଙ୍କର ଲେଖକୀୟ ବକ୍ତବ୍ୟ ରଖିଥିବାବେଳେ କିଟ୍ ଓ କିସ୍‌ର ପ୍ରତିଷ୍ଠାତା ଅଧ୍ୟକ୍ଷ ଡକ୍ଟର ଅଚ୍ୟୁତ ସାମନ୍ତ ଅତିଥି ପରିଚୟ ଓ ସ୍ୱାଗତ ଭାଷଣ ପ୍ରଦାନ କରିଥିଲେ । ବିଶିଷ୍ଟ କବି ପଦ୍ମଭୂଷଣ ରମାକାନ୍ତ ରଥଙ୍କ ଦ୍ୱାରା ପ୍ରେରିତ ଲିଖିତ ଭାଷଣକୁ ସାହିତ୍ୟିକା ପାରମିତା ଶତପଥି ଉପସ୍ଥାପନା କରିବା ସହ ସଭାଟିକୁ ସଂଯୋଜନା କରିଥିଲେ । ଏଭଳି ଏକ ସାହିତ୍ୟ ଉତ୍ସବ ଯେଉଁଥିରେ ଦୁଇ ଜଣ ରାଜ୍ୟପାଳ, ଦୁଇ ଜଣ କେନ୍ଦ୍ର ମନ୍ତ୍ରୀ, ବିଶିଷ୍ଟ ଶିକ୍ଷାବିତ୍ ଓ ସମାଜସେବୀ ଡକ୍ଟର ଅଚ୍ୟୁତ ସାମନ୍ତ ଆଦି ମଞ୍ଚ ମଣ୍ଡନ କରିବା ସହ ସଭାକକ୍ଷରେ ୩୦୦ରୁ ଊର୍ଦ୍ଧ୍ୱ ସାହିତ୍ୟିକ, ପ୍ରଶାସକ, ବୁଦ୍ଧିଜୀବୀମାନଙ୍କ ଉପସ୍ଥିତି ପୁସ୍ତକଟିର ଲୋକାର୍ପଣ ଉତ୍ସବକୁ ମର୍ଯ୍ୟାଦାବନ୍ତ କରିଥିଲା । 'କୋଟ୍ଟା' ଉପନ୍ୟାସଟି କର୍ଣ୍ଣାଟକର ଅରଣ୍ୟାଞ୍ଚଳରେ ବସବାସ କରୁଥିବା କୋରଗ ଆଦିମ ଅଧିବାସୀ ସଂପ୍ରଦାୟର ସଂସ୍କୃତି ଓ ଜୀବନଚର୍ଯ୍ୟା ସହିତ ସେମାନଙ୍କ ଶୋଷଣ କଷଣ ଓ ଅଭାବଗ୍ରସ୍ତ ଜୀବନ ସଂଗ୍ରାମର ବର୍ଣ୍ଣିତ ଏକ ମାର୍ମିକ ଚିତ୍ର । ଏହି ଉପନ୍ୟାସରେ ଦେଶର ସ୍ୱାଧୀନତା ପରଠାରୁ ସରକାର ଆଦିବାସୀମାନଙ୍କ ବିକାଶ ପାଇଁ ବହୁବିଧ ଯୋଜନା କରିଥିଲେ ମଧ୍ୟ ସ୍ୱାର୍ଥପର ରାଜନେତା ଦୁର୍ନୀତିଗ୍ରସ୍ତ ଅଧିକାରୀଙ୍କ ଅନୈତିକ ମେଣ୍ଟ ଯୋଗୁ ଆଦିବାସୀମାନଙ୍କର ଆଖିଦୃଶିଆ ଉନ୍ନତି ଏଯାବତ ହୋଇପାରି ନାହିଁ ବୋଲି ଉପନ୍ୟାସଟିରେ ବର୍ଣ୍ଣିତ । ଔପନ୍ୟାସିକ ବିରାପ୍ପା ମୋଇଲି ଜନଜାତିମାନଙ୍କର ଅଭାବୀ ଜୀବନକୁ ନିଖୁଣଭାବେ ବର୍ଣ୍ଣନା କରିଛନ୍ତି ।

ଆମ ଭାଷା ସାହିତ୍ୟର ସୁପରିଚିତ କଥାକାର, ଫିଚର୍ ଲେଖକ ତଥା ଅନୁବାଦକ ମହେନ୍ଦ୍ର ପ୍ରସାଦ 'କୋଚ୍ଚା' ପୁସ୍ତକକୁ ଇଂରାଜୀ ସଂସ୍କରଣରୁ ଓଡ଼ିଆ ଭାଷାରେ ଅତି ନିଖୁଣ ଭାବେ ଅନୁବାଦ କରିବାରେ ସଫଳକାମୀ ହୋଇଛନ୍ତି। ଆଦିବାସୀମାନଙ୍କର କଷ୍ଟକର ଜୀବନ ସଂଗ୍ରାମ କର୍ଣ୍ଣାଟକ ହେଉ କି ମହାରାଷ୍ଟ୍ର, ମଧ୍ୟପ୍ରଦେଶ ହେଉ କି ଓଡ଼ିଶା ଉଣା ଅଧିକେ ପ୍ରାୟତଃ ସମାନ। (ଏହି ଶୋଷିତ ଆଦିବାସୀମାନେ ଦେଶର ସଭ୍ୟସମାଜଠାରୁ ନ୍ୟାୟ ସମତା ବିକାଶ ଓ ଯୋଜନାଗତ ସୁଫଳ ପାଇବାରେ ହତୋତ୍ସାହ ହୋଇ ପରିଶେଷରେ ନକ୍ସଲବାଦ ଭଳି ଏକ ଦୁସ୍ତର ପଥକୁ ବାଛି ନେବାରେ ବୋଧେ ଆଦୌ ଦ୍ୱିଧାବୋଧ କରୁନାହାନ୍ତି ବୋଲି ସାଂପ୍ରତିକ ପରିସ୍ଥିତିରୁ ଧାରଣାଟିଏ ଜନ୍ମେ) !

ମହେନ୍ଦ୍ର ପ୍ରସାଦ ଏହି ପୁସ୍ତକଟିକୁ ଓଡ଼ିଶାରେ ଆଦିବାସୀମାନଙ୍କୁ ଶିକ୍ଷା ମାଧ୍ୟମରେ ସମାଜର ମୁଖ୍ୟ ସ୍ରୋତରେ ସାମିଲ କରିବାକୁ ଆପ୍ରାଣ ଉଦ୍ୟମରତ ଡକ୍ଟର ଅଚ୍ୟୁତ ସାମନ୍ତଙ୍କୁ ସମର୍ପଣ କରି କୋଚ୍ଚା ପୁସ୍ତକର ଗରିମାକୁ ମହିମାମଣ୍ଡିତ କରିଛନ୍ତି। ଡକ୍ଟର ମୋଇଲି ତାଙ୍କ ଅଭିଭାଷଣରେ ନିଜ ପୁସ୍ତକର ବିଭିନ୍ନ ଚରିତ୍ରମାନଙ୍କ ସଂପର୍କରେ ବର୍ଣ୍ଣନା କରିବା ସହ ଆଦିବାସୀ ଅଧ୍ୟୁଷିତ ଓଡ଼ିଶାରେ ଡକ୍ଟର ସାମନ୍ତଙ୍କ ଦ୍ୱାରା ପ୍ରତିଷ୍ଠିତ କିସ୍ ସଂପର୍କରେ ସବିଶେଷ ବର୍ଣ୍ଣନା କରିଥିଲେ। ଲୋକଲୋଚନରୁ ଦୂରରେ ରହି ସଦାସର୍ବଦା ଶୋଷଣ ଶିକାର ହୋଇ ହାହୁତାସରେ ଜୀବନଯାପନ କରୁଥିବା ଆଦିବାସୀ ପିଲାଙ୍କୁ ଆଣି ସେମାନଙ୍କ ରହିବା, ଖାଇବା ଶିକ୍ଷାଦାନ ଦେବାର ସମସ୍ତ ଦାୟିତ୍ୱ ବହନ ସହ ସେମାନଙ୍କୁ ସ୍ୱାବଲମ୍ବୀ କରିବାରେ ଯେଉଁ ପ୍ରଗାଢ଼ ଉଦ୍ୟମ ଡକ୍ଟର ସାମନ୍ତ କରୁଛନ୍ତି ତାହା ଆମ ଦେଶରେ ଏକ ନିଆରା ଆଦର୍ଶ ସୃଷ୍ଟି କରିଛି ବୋଲି ସେ ଦୃଢ଼ତାର ସହ କହିଥିଲେ। ଉଲ୍ଲେଖନୀୟ ଯେ ୨୭ ଜୁଲାଇ ଦିନ ଶ୍ରୀ ମୋଇଲି କିଟ୍ ଓ କିସ୍ ପରିଦର୍ଶନ କରି ଆଦିବାସୀ ପିଲାମାନଙ୍କୁ ଯୋଗାଇ ଦିଆଯାଉଥିବା ଅତ୍ୟାଧୁନିକ ସୁବିଧାସୁଯୋଗ ସହ ଶ୍ରେଣୀ ଶିକ୍ଷା ଓ ଧନ୍ଦାମୂଳକ ଶିକ୍ଷା ବ୍ୟବସ୍ଥାକୁ ଦେଖି ଅଭିଭୂତ ହୋଇଯାଇଥିଲେ ଏବଂ କିସ୍ ଭଳି ଏକ ଅନୁଷ୍ଠାନ ଦୀର୍ଘ ୨୦ ବର୍ଷ ହେବ ପ୍ରତିଷ୍ଠିତ ହୋଇ ଏବେ ୨୦ ହଜାର ପିଲାଙ୍କର ସର୍ବାଙ୍ଗୀଣ ବିକାଶରେ ବ୍ରତୀ ହୋଇଥିବାରୁ ପ୍ରତିଷ୍ଠାତା ଡକ୍ଟର ସାମନ୍ତଙ୍କୁ ଜଣେ ଦୂରଦୃଷ୍ଟିସମ୍ପନ୍ନ ନିରବ ସାଧକ ବୋଲି କହି ଭୂୟସୀ ପ୍ରଶଂସା କରିଥିଲେ।

ଆସାମର ମାନ୍ୟବର ରାଜ୍ୟପାଳ ତଥା ସୁସାହିତ୍ୟିକ ଜାନକୀ ବଲ୍ଲଭ ପଟ୍ଟନାୟକ ତାଙ୍କ ବକ୍ତବ୍ୟରେ 'କୋଚା' ଉପନ୍ୟାସ ଭଳି ଆମ ରାଜ୍ୟର ପ୍ରବୀଣ ସାରସ୍ୱତ ସାଧକ ଗୋପିନାଥ ମହାନ୍ତି ମଧ ଦରିଦ୍ର ଆଦିବାସୀମାନଙ୍କର ଅବହେଳିତ ଜୀବନଚର୍ଯ୍ୟାକୁ ତାଙ୍କ ରଚିତ ପରଜା ଓ ଅନ୍ୟାନ୍ୟ ପୁସ୍ତକମାନଙ୍କରେ ଅତି ନିଖୁଣ ଭାବେ ବର୍ଣ୍ଣନା କରିଛନ୍ତି ବୋଲି କହିଥିଲେ। କିନ୍ତୁ ଡକ୍ଟର ସାମନ୍ତ ହେଉଛନ୍ତି ଜଣେ ନିଃସ୍ୱାର୍ଥପର ସମାଜସେବୀ ଯିଏ କି ବିଗତ ୨୦ ବର୍ଷ ଧରି ଶିକ୍ଷା ମାଧ୍ୟମରେ ଆଦିବାସୀମାନଙ୍କୁ ସଚେତନ ପୂର୍ବକ ସେମାନଙ୍କର ମୌଳିକ ସୁବିଧା ସୁଯୋଗ ପ୍ରାପ୍ତିର ମାର୍ଗ ଦର୍ଶନ କରାଇବାରେ ସହାୟକ ହୋଇଛନ୍ତି। କିସ୍ ଅନୁଷ୍ଠାନ ବର୍ତ୍ତମାନ କେବଳ ଆମ ଦେଶରେ ନୁହେଁ ଏହା ସମଗ୍ର ବିଶ୍ୱରେ ଏକ ଆଦର୍ଶ ଅନୁଷ୍ଠାନ ଭାବେ ପରିଗଣିତ ହୋଇଛି ବୋଲି ସେ କହିଥିଲେ। ଯାହା ଫଳରେ ହଜାର ହଜାର ଆଦିବାସୀ ଯୁବକ ଯୁବତୀ ଆଜି ଶିକ୍ଷିତ ହୋଇ ଦେଶର ବିଭିନ୍ନ କ୍ଷେତ୍ରରେ କାର୍ଯ୍ୟରତ ଅଛନ୍ତି।

ଉତ୍ସବର ମୁଖ୍ୟ ଅତିଥି ମାନ୍ୟବର ରାଜ୍ୟପାଳ ଡକ୍ଟର ଏସ୍. ସି. ଜମିର୍ ନିଜେ ଜଣେ ଆଦିବାସୀ ସଂପ୍ରଦାୟର ବ୍ୟକ୍ତି ଓ ସେ ଆଦିବାସୀମାନଙ୍କର ଦୁଃଖ ଦୁର୍ଦ୍ଦଶାକୁ ଭଲଭାବରେ ଜାଣନ୍ତି ବୋଲି କହିଥିଲେ। ପଣ୍ଡିତ ନେହେରୁ ଜଣେ ଆଦର୍ଶ ଜନନାୟକ ଭାବେ ଦିନେ ଆଦିବାସୀ ଜନଜାତିଙ୍କୁ ସମାଜର ମୁଖ୍ୟ ସ୍ରୋତରେ ସାମିଲ କରିବାକୁ ପ୍ରଗାଢ଼ ଉଦ୍ୟମ କରିଥିଲେ। କୋଚା ପୁସ୍ତକରେ ଆଦିବାସୀମାନଙ୍କ ନିଛକ ଜୀବନ କାହାଣୀ ବିଶିଷ୍ଟ ସାରସ୍ୱତ ସାଧକ ଓ ଜନନେତା ଡକ୍ଟର ବିରାପା ମୋଇଲିଙ୍କ ଦ୍ୱାରା ଲିଖିତ ପୁସ୍ତକଟିକୁ ଓଡ଼ିଆରେ ଡକ୍ଟର ମହେନ୍ଦ୍ର ପ୍ରସାଦ ଅନୁଦିତ କରିଥିବାରୁ ସେ ଖୁବ ଆନନ୍ଦିତ ବୋଲି କହିଥିଲେ।

କେନ୍ଦ୍ର ସଂସ୍କୃତି ବିଭାଗ ମନ୍ତ୍ରୀ ଚନ୍ଦ୍ରେଶ କୁମାରୀ କଟୋଚ ନିଜ ଅଭିଭାଷଣରେ ଦେଶର ଐକ୍ୟ ପ୍ରତିଷ୍ଠାରେ ଲେଖକମାନଙ୍କର ପ୍ରମୁଖ ଭୂମିକା ରହିଛି ବୋଲି ଦୃଢ଼ୋକ୍ତି କରିଥିଲେ। ମହେନ୍ଦ୍ର ପ୍ରସାଦ କୋଚା ଭଳି ଏକ ଲୋକପ୍ରିୟ ପୁସ୍ତକକୁ ଅନୁବାଦ କରି ଓଡ଼ିଆ ଭାଷା ସାହିତ୍ୟକୁ ସମୃଦ୍ଧ କରିଛନ୍ତି। ସେ ଡକ୍ଟର ସାମନ୍ତଙ୍କ କିସ୍ ଭଳି ଏକ ଅନୁଷ୍ଠାନ ପ୍ରତିଷ୍ଠାରେ ଖୁବ୍ ଆନନ୍ଦିତ ଓ ସେ ଜଣେ ଆଦର୍ଶ ବ୍ୟକ୍ତିତ୍ୱ ବୋଲି ବର୍ଣ୍ଣନା କରିଥିଲେ। ଏହି ଅବସରରେ ଓଡ଼ିଆଭାଷା ଆଗାମୀ ଏକ ମାସ ମଧ୍ୟରେ ଶାସ୍ତ୍ରୀୟ ଭାଷାର ମାନ୍ୟତା ପାଇବ ବୋଲି ଉଭୟ କେନ୍ଦ୍ର ମନ୍ତ୍ରୀ ନିଜ ଭାଷଣରେ ପ୍ରକାଶ କରିଥିଲେ।

'କୋଟ୍ଟା' ଅନୁବାଦ ପୁସ୍ତକର ପ୍ରକାଶକ ତଥା ପକ୍ଷୀଘର ପ୍ରକାଶନୀର ସ୍ୱତ୍ୱାଧିକାରୀ ବନୋଜ ତ୍ରିପାଠୀ ଏହି ସୁଦୃଶ୍ୟ ପୁସ୍ତକଟିକୁ ବହୁ ଶ୍ରମଦାନ କରି ପ୍ରକାଶନ କରିଥିବାରୁ ସେ ମଧ ଧନ୍ୟବାଦର ପାତ୍ର। ଶେଷରେ ପୁସ୍ତକର ପ୍ରକାଶକ ବନୋଜ ତ୍ରିପାଠୀ ଆନୁଷ୍ଠାନିକ ଧନ୍ୟବାଦ ଅର୍ପଣ କରିଥିଲେ। କୋଟ୍ଟା ପୁସ୍ତକଟି ପ୍ରଥମେ କନ୍ନଡ ଭାଷାରେ ରଚିତ ହୋଇଥିଲେ ମଧ ସମୟ କ୍ରମେ ତାହା ଇଂରାଜୀ ଓ ଅନ୍ୟାନ୍ୟ ପ୍ରାନ୍ତୀୟ ଭାଷାରେ ଅନୁଦିତ ହୋଇଛି। ଓଡ଼ିଆରେ ଏଭଳି ମାର୍ମିକ ଅନୁବାଦ ପୁସ୍ତକ ପ୍ରାୟତଃ ବିରଳ। ଉତ୍ସବର ବିଶେଷତ୍ୱ ହେଲା ପୁସ୍ତକ ସମ୍ବନ୍ଧରେ କହିଲାବେଳେ ବକ୍ତାଗଣ କିସ୍ ଭଳି ଅନୁଷ୍ଠାନ ଓ ଏହାର ପ୍ରତିଷ୍ଠାତା ଡକ୍ଟର ସାମନ୍ତଙ୍କୁ ଜଣେ ବିଶିଷ୍ଟ ବ୍ୟକ୍ତି ଭାବେ ବର୍ଣ୍ଣନା କରି ଉତ୍ସବର ଗରିମାକୁ ଆହୁରି ବୃଦ୍ଧି କରିଥିଲେ।

*ସମ୍ବାଦ କଳିକା, ୩୧.୭.୨୦୧୩*

# ଓଡ଼ିଆକୁ ଶାସ୍ତ୍ରୀୟ ମାନ୍ୟତା : ସ୍ଥିତି ଓ ଗତି

ଭାରତରେ ବର୍ତ୍ତମାନ ୨୨ ଗୋଟି ଭାଷାକୁ ସରକାରୀ ଭାଷା ରୂପେ ସ୍ୱୀକୃତି ଦିଆଯାଇ ସମ୍ବିଧାନର ଅଷ୍ଟମ scheduleରେ ରଖାଯାଇଛି । ଓଡ଼ିଆ ଭାଷା ତା ମଧ୍ୟରୁ ଅନ୍ୟତମ । ଭାରତୀୟ ଭାଷାମାନଙ୍କ ମଧ୍ୟରେ ସଂସ୍କୃତ ଓ ତାମିଲକୁ ବାଦ୍ ଦେଲେ ଓଡ଼ିଆ ଭାଷା ସର୍ବ ପ୍ରାଚୀନ । ଏହି ୨୨ଟି ଭାଷା ମଧ୍ୟରୁ ଷଷ୍ଠ ଭାଷା ରୂପେ ଓଡ଼ିଆ ଭାଷା ଶାସ୍ତ୍ରୀୟ ମାନ୍ୟତା ପାଇବ, ଏହା ଗତ ୨୮ ଜୁଲାଇରେ କେନ୍ଦ୍ର ସଂସ୍କୃତି ମନ୍ତ୍ରୀ ଚନ୍ଦ୍ରେଶ କୁମାରୀ କାଟୋଚ୍ ଓ କେନ୍ଦ୍ରର ଅନ୍ୟ ଜଣେ ବରିଷ୍ଠ ମନ୍ତ୍ରୀ ଏମ୍. ବିରାପ୍ପା ମୋଇଲି ସର୍ବସାଧାରଣରେ ଘୋଷଣା କରିଛନ୍ତି । ପୂର୍ବରୁ ୨୦୦୪ ମସିହାରେ ତାମିଲ ଭାଷା, ୨୦୦୫ରେ ସଂସ୍କୃତ ଓ ତେଲୁଗୁ ଭାଷା, ୨୦୦୮ରେ କନ୍ନଡ଼ ଭାଷା ଏବଂ ୨୦୧୩ ମସିହାରେ ମାଲାୟାଲମ୍ ଭାଷା ଶାସ୍ତ୍ରୀୟ ମାନ୍ୟତା ପାଇସାରିଛନ୍ତି । ଓଡ଼ିଆ ଭାଷା ଶାସ୍ତ୍ରୀୟ ଭାଷାର ମାନ୍ୟତା ପାଇବା ପୂର୍ବରୁ ଆମ ସାହିତ୍ୟିକ ଓ ନେତାମାନଙ୍କ ମଧ୍ୟରେ କିଏ ଏହାର ଶ୍ରେୟ ନେବ ସେଥିପାଇଁ ଟଣାଓଟରା ଆରମ୍ଭ ହୋଇଯାଇଛି ।

ପ୍ରଫେସର ବିଶ୍ୱନାଥ ପ୍ରସାଦ ତିୱାରୀଙ୍କ ଅଧ୍ୟକ୍ଷତାରେ କେନ୍ଦ୍ର ସାହିତ୍ୟ ଏକାଡେମୀର ୧୧ ଜଣିଆ ବିଶେଷଜ୍ଞ କମିଟି ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ପ୍ରଦାନ କରିବାକୁ ୨୩ ଜୁଲାଇରେ କେନ୍ଦ୍ର ସଂସ୍କୃତି ବିଭାଗକୁ ସୁପାରିଶ କରିଛନ୍ତି । ଆଉ ଦୁଇଟି ଭାଷା ମରାଠି ଓ ବଙ୍ଗାଳୀ ଶାସ୍ତ୍ରୀୟ ମାନ୍ୟତା ପାଇଁ ଉଦ୍ୟମ କରୁଥିଲା ବେଳେ ଓଡ଼ିଆ ସପକ୍ଷରେ ସୁପାରିଶ ଏକ ବିଶେଷ ସଫଳତା । ହିନ୍ଦୀ ଭାଷା ମଧ୍ୟ ଅଦ୍ୟାବଧି ଶାସ୍ତ୍ରୀୟ ଭାଷାର ମାନ୍ୟତା ପାଇ ନାହିଁ ।

କେନ୍ଦ୍ର ସାହିତ୍ୟ ଏକାଡେମୀର ଭାଷା ବିଶେଷଜ୍ଞ କମିଟିର ବୈଠକରେ ପ୍ରଫେସର ଦେବୀପ୍ରସନ୍ନ ପଟ୍ଟନାୟକ ଓ ଦିଲ୍ଲୀ ବିଶ୍ୱବିଦ୍ୟାଳୟର ଆଧୁନିକ ଭାରତୀୟ ଭାଷା ଅଧ୍ୟୟନ ବିଭାଗର ପ୍ରଫେସର ପ୍ରକାଶଚନ୍ଦ୍ର ପଟ୍ଟନାୟକ ଉପସ୍ଥିତ ରହି ଓଡ଼ିଆ ଭାଷାର ଶାସ୍ତ୍ରୀୟ ମାନ୍ୟତା ପାଇବାର ଯୋଗ୍ୟତା ସମ୍ବନ୍ଧରେ ସମସ୍ତ ତଥ୍ୟ ବିଶେଷଜ୍ଞ କମିଟିକୁ ଅବଗତ କରାଇଥିଲେ । ସେମାନଙ୍କର ଅକାଟ୍ୟ ପ୍ରମାଣକୁ ଗ୍ରହଣ କରି କେନ୍ଦ୍ର ସାହିତ୍ୟ ଏକାଡେମୀ ଓଡ଼ିଆ ଭାଷା ଶାସ୍ତ୍ରୀୟ ଭାଷାର ମାନ୍ୟତା ପାଇବାକୁ ହକ୍‌ଦାର ବୋଲି କେନ୍ଦ୍ର ସଂସ୍କୃତି ବିଭାଗକୁ ସୁପାରିଶ କରିଛନ୍ତି । କେନ୍ଦ୍ର ସଂସ୍କୃତି ବିଭାଗ ମଧ୍ୟ କାଳ

ବିଳମ୍ବ ନ କରି ଏହି ପ୍ରସ୍ତାବକୁ କେନ୍ଦ୍ର କ୍ୟାବିନେଟ ମଞ୍ଜୁରୀ ପାଇଁ ପଠାଇ ଦେଲେଣି ବୋଲି ବୋଲି ୨୭ ଜୁଲାଇରେ କାଟୋଚ୍ ଭୁବନେଶ୍ୱରରେ ପ୍ରକାଶ କରିଛନ୍ତି।

ଶ୍ରୀ ରାମଚନ୍ଦ୍ର ଖୁଣ୍ଟିଆ ଏକ ସାମ୍ବାଦିକ ସମ୍ମିଳନୀରେ କହିଛନ୍ତି ଯେ, ଦେବୀପ୍ରସନ୍ନ ପଟ୍ଟନାୟକ ଓଡ଼ିଆ ଅଧ୍ୟୟନ ଓ ଗବେଷଣା କେନ୍ଦ୍ର ପକ୍ଷରୁ ପ୍ରତିନିଧିତ୍ୱ କରୁଥିଲେ ଓ ପ୍ରଫେସର ପ୍ରକାଶଚନ୍ଦ୍ର ପଟ୍ଟନାୟକ କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ନିମନ୍ତ୍ରିତ ହୋଇ ସେଠାରେ ଆଲୋଚନାରେ ଭାଗ ନେଇଥିଲେ। ଶ୍ରୀଯୁକ୍ତ ଖୁଣ୍ଟିଆ ଅଭିଯୋଗ କରିଛନ୍ତି ଯେ କେନ୍ଦ୍ର ସାହିତ୍ୟ ଏକାଡେମୀର ଭାଷା ବିଶେଷଜ୍ଞ କମିଟିର ବୈଠକ ବସିବାର ମାତ୍ର ଅଳ୍ପ ସମୟ ପୂର୍ବରୁ ରାଜ୍ୟ ସରକାରଙ୍କ ପକ୍ଷରୁ ଓଡ଼ିଶା ସାହିତ୍ୟ ଏକାଡେମୀର ସଚିବ ବିଜୟ ନାୟକ ଓ ଓଡ଼ିଶା ଭାଷା ପ୍ରତିଷ୍ଠାନର ନିର୍ଦ୍ଦେଶକ ଡକ୍ଟର ପ୍ରସନ୍ନ ମହାନ୍ତି ରାଜ୍ୟ ସରକାରଙ୍କ ଦ୍ୱାରା ପ୍ରସ୍ତୁତ ୩୬୬ ପୃଷ୍ଠାର ଭିତ୍ତିପତ୍ର ସେଠାରେ ପ୍ରଦାନ କରିଥିଲେ। ଅପର ପକ୍ଷରେ ଓଡ଼ିଆ ଅଧ୍ୟୟନ ଓ ଗବେଷଣା କେନ୍ଦ୍ର ଦ୍ୱାରା ପ୍ରସ୍ତୁତ ହୋଇଥିବା ୪୯୬ ପୃଷ୍ଠା ସମ୍ବଳିତ (କ୍ଲାସିକାଲ ଓଡ଼ିଆ) ଭିତ୍ତିପତ୍ରକୁ ଗତ ମେ' ୮ ତାରିଖରେ ୧୫ ଜଣ ସାଂସଦଙ୍କ ଦସ୍ତଖତ ସହ କେନ୍ଦ୍ର ସାହିତ୍ୟ ଏକାଡେମୀ ସଚିବଙ୍କୁ ପ୍ରଦାନ କରାଯାଇଥିଲା। ଏହା ସତ୍ୟ ହେଲେ ମଧ୍ୟ ଯଦି ଓଡ଼ିଶା ସରକାରଙ୍କ ତରଫରୁ ୨୩ ଜୁଲାଇ ଦିନ କେନ୍ଦ୍ର ସାହିତ୍ୟ ଏକାଡେମୀରେ ସରକାରଙ୍କ ଦ୍ୱାରା ପ୍ରସ୍ତୁତ ରିପୋର୍ଟ ଦାଖଲ କରାଯାଇ ନଥାନ୍ତା ତେବେ କେନ୍ଦ୍ର ସାହିତ୍ୟ ଏକାଡେମୀ କର୍ତ୍ତୃପକ୍ଷ ବୋଧହୁଏ ସେହିଦିନ ସେମାନଙ୍କର ନିଷ୍ପତ୍ତି ନେବାରେ ସମର୍ଥ ହୋଇନଥାନ୍ତେ। ତେଣୁ ଓଡ଼ିଶା ସରକାରଙ୍କୁ ତାଙ୍କ ସମୟୋପଯୋଗୀ ପଦକ୍ଷେପ ଯୋଗୁଁ ଧନ୍ୟବାଦ ଦେବା କଥା। ସରକାରୀ ଉଦ୍ୟମ ବ୍ୟତୀତ ବେସରକାରୀ ସ୍ତରରେ ବିଭିନ୍ନ ଅନୁଷ୍ଠାନ, ବ୍ୟକ୍ତିବିଶେଷ ଓ ବୁଦ୍ଧିଜୀବୀମାନେ ଓଡ଼ିଆ ଭାଷାର ଶାସ୍ତ୍ରୀୟ ମାନ୍ୟତା ପାଇବା ଯୋଗ୍ୟତା ସମ୍ପର୍କରେ କାର୍ଯ୍ୟରତ ଥିଲେ। ଓଡ଼ିଶାର ତିନି ଜଣ ସାଂସଦ— ପ୍ରଥମେ ରାମଚନ୍ଦ୍ର ଖୁଣ୍ଟିଆ ରାଜ୍ୟସଭାରେ ମାର୍ଚ୍ଚ ୧୨ ତାରିଖ ୨୦୧୨ରେ ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ଭାଷାର ମାନ୍ୟତା ଦାବୀରେ ସ୍ପେଶାଲ ମେନଶନ୍ ଜରିଆରେ ପ୍ରଶ୍ନ କରିଥିଲେ। ପରବର୍ତ୍ତୀ ସମୟରେ ସାଂସଦ ଶଶିଭୂଷଣ ବେହେରା ଓ ସାଂସଦ ବୈଷ୍ଣବ ଚରଣ ପରିଡ଼ା ମଧ୍ୟ ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ଦେବାକୁ ରାଜ୍ୟସଭାରେ ଦାବୀ ରଖିଥିଲେ।

ମୁଁ ଜାଣିବାରେ ଓଡ଼ିଶାର ଯଶସ୍ୱୀ ସାହିତ୍ୟିକ ତଥା ମୁକ୍ତବୃତ୍ତ ସ୍ତମ୍ଭକାର ବରେନ୍ଦ୍ର କୃଷ୍ଣ ଧଳ ୨୦୦୯ ମସିହାରେ ତାଙ୍କର 'ଖୋଲାବିଚାର' ସ୍ତମ୍ଭରେ ୨୦ ଅକ୍ଟୋବର, ୨୭ ଅକ୍ଟୋବର, ୩ ଡିସେମ୍ବର, ୧୨ ଅକ୍ଟୋବର ୨୦୧୦, ୧୯ ଅକ୍ଟୋବର

୨୦୧୦ରେ କ୍ରମାଗତ ଭାବେ 'ଓଡ଼ିଆକୁ ଶାସ୍ତ୍ରୀୟ ଭାଷାର ମାନ୍ୟତା-ବାଧା କେଉଁଠି', 'ଓଡ଼ିଶାରେ ଓଡ଼ିଆ ଭାଷାର ସ୍ଥିତି କ'ଣ', 'ଏବେ ଓଡ଼ିଶାର ସରକାରୀ ଭାଷା କ'ଣ', 'ଓଡ଼ିଆର ଶାସ୍ତ୍ରୀୟ ମାନ୍ୟତା', 'ଓଡ଼ିଆର ଶାସ୍ତ୍ରୀୟତା ଓ ସରକାର' ପ୍ରଭୃତି ଚିନ୍ତାଉଦ୍ରେକକାରୀ ପ୍ରବନ୍ଧମାନ ଲେଖି ସାଧାରଣରେ ଏକ ଆଲୋଡ଼ନ ସୃଷ୍ଟି କରିଥିଲେ। ଅନ୍ୟମାନଙ୍କ ମଧ୍ୟରେ ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ର, ପ୍ରଫେସର ଡକ୍ଟର ନଟବର ଶତପଥୀ, ଡକ୍ଟର ସୁବ୍ରତ କୁମାର ପୃଷ୍ଟି, ପ୍ରଫେସର ବସନ୍ତ କୁମାର ପଣ୍ଡା ପ୍ରଭୃତି ବିଶିଷ୍ଟ ବୁଦ୍ଧିଜୀବୀମାନେ ବିଭିନ୍ନ ପତ୍ରପତ୍ରିକାରେ ଓଡ଼ିଆ ଭାଷା ଶାସ୍ତ୍ରୀୟ ମାନ୍ୟତା ପାଇବାକୁ ହକ୍‌ଦାର ବୋଲି ଦର୍ଶାଇ ଆସୁଥିଲେ। ସୁବ୍ରତ ପୃଷ୍ଟିଙ୍କ ରଚିତ 'ଭାଷା ଓ ଜାତୀୟତା' ଶୀର୍ଷକ ଏକ ପୁସ୍ତକରେ ଓଡ଼ିଆ ଭାଷାର ପ୍ରାଚୀନତା ଉପରେ ବହୁ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ପ୍ରଦାନ କରାଯାଇଛି। ପଦ୍ମଶ୍ରୀ ଦେବୀପ୍ରସନ୍ନ ପଟ୍ଟନାୟକ ୨୦୦୪ ମସିହା ପରଠାରୁ ଓଡ଼ିଆ ଭାଷାର ଶାସ୍ତ୍ରୀୟ ମାନ୍ୟତା ସମ୍ପର୍କରେ ବହୁ ଆଲୋଚନାଚକ୍ରରେ ନିଜ ମତ ପ୍ରକାଶ କରିଛନ୍ତି। ସରକାରଙ୍କ ଉଦ୍ୟମ ବିନା ଏହା ସମ୍ଭବ ନୁହେଁ ବୋଲି ସବୁବେଳେ କହିଆସିଛନ୍ତି। ଶ୍ରୀ ରାମଚନ୍ଦ୍ର ଖୁଣ୍ଟିଆ ଓ ପୂର୍ବତନ ମନ୍ତ୍ରୀ ଶେଖ୍ ମତଲୁବ୍ ଅଲ୍ଲୀଙ୍କ ଉଦ୍ୟମ ପରେ ବିଳମ୍ବରେ ହେଉ ପଛେ ସରକାର ଚେତିଲେ ଏବଂ ଗତ ଜାନୁୟାରୀ ମାସରେ ଏକ ବିଶେଷଜ୍ଞ କମିଟି ଗଠନ କରିଥିଲେ, ଯେଉଁଥିରେ ପ୍ରଫେସର ଦେବୀପ୍ରସନ୍ନ ପଟ୍ଟନାୟକ ମଧ୍ୟ ସଭ୍ୟ ଥିଲେ। ପ୍ରଫେସର ପଟ୍ଟନାୟକ ତାଙ୍କ ଦ୍ୱାରା ପ୍ରସ୍ତୁତ ପୂର୍ବ ଭିତ୍ତିପ୍ରବନ୍ଧକୁ ଆଧାର କରି ଅଧିକ ତଥ୍ୟ ଓ ପ୍ରମାଣ ମିଶାଇ ଏକ ରିପୋର୍ଟ ପ୍ରସ୍ତୁତ କରିଥିଲେ ଯାହାକୁ କି ଓଡ଼ିଶା ସରକାର ଗତ ମାସରେ କେନ୍ଦ୍ର ସଂସ୍କୃତି ବିଭାଗରେ ଦାଖଲ କରିଥିଲେ। ତେଣୁ ସରକାରଙ୍କ ଦ୍ୱାରା ପ୍ରଦତ୍ତ ଓ ଓଡ଼ିଆ ଅଧ୍ୟୟନ ଓ ଗବେଷଣା ସଂସ୍ଥା ଦ୍ୱାରା ପ୍ରଦତ୍ତ ତଥ୍ୟ ଊଣାଅଧିକେ ସମାନ। ଓଡ଼ିଶାର ବୁଦ୍ଧିଜୀବୀମାନେ ଏକ ସ୍ୱରରେ ସ୍ୱୀକାର କରୁଛନ୍ତି ଯେ ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକଙ୍କର ଭୂମିକା ଓଡ଼ିଆ ଶାସ୍ତ୍ରୀୟ ଭାଷାର ମାନ୍ୟତା ପାଇବାରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ।

ଶାସ୍ତ୍ରୀୟ ମାନ୍ୟତା ପାଇଁ ଯେଉଁ ମାନଦଣ୍ଡ ରହିଛି ସେଥିରୁ ଗୋଟିଏ ହେଲା ଅତି କମ୍‌ରେ ଭାଷାର ୧୫୦୦ରୁ ୨୦୦୦ ବର୍ଷର ଇତିହାସ ଥିବା ଆବଶ୍ୟକ। ଓଡ଼ିଆ ଭାଷା ୨୫୦୦ ବର୍ଷ ପୁରୁଣା। ବିଶେଷଜ୍ଞ କମିଟିର ପ୍ରଦତ୍ତ ତଥ୍ୟ ଅନୁଯାୟୀ ଖ୍ରୀ.ପୂ. ୪ର୍ଥ ଶତାବ୍ଦୀର ଭରତମୁନିଙ୍କ 'ନାଟ୍ୟଶାସ୍ତ୍ର'ରେ ଓଡ଼ିଆ ଉଲ୍ଲେଖ କରାଯାଇଥିଲା। ଖ୍ରୀ.ପୂ. ୩ୟ ଶତାବ୍ଦୀରେ ସମ୍ରାଟ ଅଶୋକଙ୍କ ଧଉଳି ଓ ଜଉଗଡ଼ ଶିଳାଲେଖରୁ ଓଡ଼ିଆ

ଭାଷାର କ୍ରମବିକାଶର ପ୍ରମାଣ ମିଳେ। ବୌଦ୍ଧ, ଜୈନ, ସଂସ୍କୃତ ଓ ବୈଦିକ ସାହିତ୍ୟରେ ଓଡ଼ିଆର ଉଲ୍ଲେଖ ଭାଷାର ପ୍ରାଚୀନତାକୁ ପ୍ରମାଣ କରେ। ଶୂଦ୍ରମୁନି ସାରଳା ଦାସଙ୍କ ରଚିତ ମହାଭାରତଠାରୁ ଆଧୁନିକ ଓଡ଼ିଆ ସାହିତ୍ୟରେ ମୌଳିକ ଧାରା ଓ ଉନ୍ନତ ପରମ୍ପରା ଓଡ଼ିଆ ଭାଷାକୁ ଗୌରବାନ୍ୱିତ କରିଛି। ଉଇକିପେଡିଆ, The Free Encyclopaediaରେ ଓଡ଼ିଆ ଭାଷା ଓ ଲିପିର ପ୍ରାଚୀନତା ସମ୍ପର୍କରେ ସପ୍ତମ ଶତାବ୍ଦୀରେ ଓ ଦଶମ ଶତାବ୍ଦୀରେ ଓଡ଼ିଆ ଶବ୍ଦ ଓ ବାକ୍ୟ ଶିଳାଲିପିରେ ବ୍ୟବହୃତ ହୋଇଥିବା ଦେଖାଯାଇଅଛି। ତେଣୁ ଓଡ଼ିଆ ଭାଷାର ପ୍ରାଚୀନତା ସମ୍ପର୍କରେ ସନ୍ଦେହର ଅବକାଶ ନାହିଁ।

ଓଡ଼ିଆ ଭାଷା ଶାସ୍ତ୍ରୀୟ ମାନ୍ୟତା ପାଇଲେ ରାଜ୍ୟ ସରକାର କେନ୍ଦ୍ର ସରକାରଙ୍କଠାରୁ ଏକକାଳୀନ ୧୦୦ କୋଟି ଟଙ୍କାର ଅନୁଦାନ ପାଇବେ ଓ ବାର୍ଷିକ ୫ କୋଟି ଟଙ୍କାର ଅନୁଦାନ ମଧ୍ୟ ପାଇବେ। ଏହି ଅର୍ଥ ଓଡ଼ିଆ ଭାଷାର ଉନ୍ନତି କଳ୍ପେ, ଗବେଷଣା ଓ ପ୍ରକାଶନ ପ୍ରଭୃତିରେ ଖର୍ଚ୍ଚ ହେବ। ବର୍ତ୍ତମାନ ସମୟ ଆସିଛି ଯେ ଓଡ଼ିଶା ସରକାର ଏକ ଓଡ଼ିଆ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରି ଓଡ଼ିଆ ଭାଷାର ବିକାଶ ପାଇଁ ଯତ୍ନବାନ ହୁଅନ୍ତୁ। ପ୍ରତ୍ୟେକ ଓଡ଼ିଆକୁ ଶପଥ ନେବାକୁ ହେବ ଯେ ସେମାନେ ଓଡ଼ିଆ ଭାଷା ପ୍ରଚାର, ପ୍ରସାର ଓ ସୁରକ୍ଷା ପାଇଁ ଚେଷ୍ଟିତ ହେବେ। ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ମିଳିବା ନେଇ ଅଯଥା ଦ୍ୱନ୍ଦ୍ୱ ନ କରି କିମ୍ବା କିଏ ଉଦ୍ୟମ କଲା ନ କଲା ସେଥିରେ ମୁଣ୍ଡ ନ ପୂରାଇ ବର୍ତ୍ତମାନ ଓଡ଼ିଆ ଭାଷାକୁ ବିଶ୍ୱ ଦରବାରରେ ଶ୍ରେଷ୍ଠ ଭାଷା କରିବାକୁ ସମସ୍ତେ ଉଦ୍ୟମ କରିବାକୁ ସଂକଳ୍ପ ନେବା ଉଚିତ୍।

ଓଡ଼ିଆ ଭାଷା ଶାସ୍ତ୍ରୀୟ ମାନ୍ୟତା ପାଇବା ପରେ ଏବେ ପ୍ରଶ୍ନ ଉଠୁଛି ସରକାରଙ୍କ କର୍ତ୍ତବ୍ୟ କ'ଣ? ୧୯୫୪ରେ ପୁଣ୍ୟାତ୍ମା ନବକୃଷ୍ଣ ଚୌଧୁରୀ ଓଡ଼ିଆକୁ ସରକାରୀ ଭାଷା କରିବା ପାଇଁ ବିଧାନସଭାରେ ଏକ ବିଲ୍ ପାଶ୍ କରିଥିଲେ। ୧୯୮୫ରେ ଜାନକୀ ବଲ୍ଲଭ ପଟ୍ଟନାୟକ ସରକାରୀ ସ୍ତରରେ ଏହାର ପ୍ରଚଳନ କରିଥିଲେ। କିନ୍ତୁ ନବୀନ ପଟ୍ଟନାୟକଙ୍କ ସମୟରେ ଏହା ସମ୍ପୂର୍ଣ୍ଣ ବନ୍ଦ ହୋଇଗଲା। ଏବେ ନବୀନ ବାବୁ ଓଡ଼ିଆ ଭାଷାର ଶାସ୍ତ୍ରୀୟ ମାନ୍ୟତା ପାଇଁ ଆଗ୍ରହ ପ୍ରକାଶ କରିଥିବା ବେଳେ ସରକାରୀ ସ୍ତରରେ ଓଡ଼ିଆ ଭାଷା ପ୍ରଚଳନ ପାଇଁ ବ୍ୟବସ୍ଥା ଗ୍ରହଣ କରିବେ କି?

*ସମାଜ, ୧୪.୮.୨୦୧୩*

# ବି.ପି.ୟୁ.ଟି. ସଂଶୋଧନ ବିଲ୍ ଓ ଡିମ୍‌ଡ ବିଶ୍ୱବିଦ୍ୟାଳୟ

ରାଷ୍ଟ୍ରୀୟ ଜ୍ଞାନ ଆୟୋଗ (Knowledge Commission)ର ଅଧ୍ୟକ୍ଷ ଶ୍ୟାମ୍ ପିତ୍ରୋଡ଼ା ଜାତୀୟ ସ୍ତରରେ ଉଚ୍ଚ ବୈଷୟିକ ଶିକ୍ଷାର ଉନ୍ନତି ପାଇଁ ରଚନାତ୍ମକ ଯୋଜନା ପ୍ରସ୍ତୁତ କରୁଥିଲାବେଳେ ଆମ ରାଜ୍ୟ ସରକାର ସେଥିପ୍ରତି ଧ୍ୟାନ ଦେଉ ନାହାନ୍ତି। ଚଳିତ ମାସ ୭ ତାରିଖରେ ବୈଷୟିକ ଶିକ୍ଷା ଓ ତାଲିମ ମନ୍ତ୍ରୀ ପ୍ରତାପ କେଶରୀ ଦେବ ବିଧାୟକ କରେନ୍ଦ୍ର ମାଝିଙ୍କର ପ୍ରଶ୍ନର ଉତ୍ତର ଦେଇ କହିଥିଲେ ଯେ ବି.ପି.ୟୁ.ଟି. ବହୁ ଅବ୍ୟବସ୍ଥା ମଧ୍ୟରେ ପରିଚାଳିତ ହେଉଥିବାରୁ ଏହି ସଂସ୍ଥାର ସୁପରିଚାଳନା ପାଇଁ ପ୍ରଚଳିତ ଥିବା ବି.ପୁ.ୟୁ.ଟି. ଆଇନର ସଂଶୋଧନ କରିବା ଜରୁରୀ ହୋଇପଡ଼ିଛି। ଏହି ଆଇନଟି ୨୦୦୨ରେ ପାରିତ ହୋଇଥିଲା। ରାଜ୍ୟର ଡିମ୍‌ଡ ବିଶ୍ୱବିଦ୍ୟାଳୟ ସମ୍ପର୍କିତ ଅନ୍ୟ ଏକ ପ୍ରଶ୍ନର ଉତ୍ତର ଦେଇ ମନ୍ତ୍ରୀ ଶ୍ରୀଯୁକ୍ତ ପ୍ରତାପ କେଶରୀ ଦେବ କହିଥିଲେ ଯେ ଡିମ୍‌ଡ ବିଶ୍ୱବିଦ୍ୟାଳୟମାନଙ୍କ ଯୋଗୁଁ ବୈଷୟିକ ଶିକ୍ଷା ବ୍ୟବସ୍ଥା ଉପରେ ପ୍ରତିକୂଳ ପ୍ରଭାବ ପଡୁଛି। ସେମାନଙ୍କ ଉପରେ ରାଜ୍ୟ ସରକାରଙ୍କ ନିୟନ୍ତ୍ରଣ ରହୁନାହିଁ। ତେଣୁ ଡିମ୍‌ଡ ବିଶ୍ୱବିଦ୍ୟାଳୟ ମାନ୍ୟତା ପାଇଁ ଆବେଦନ କରିଥିବା ୨୬ଟି ଅନୁଷ୍ଠାନ ମଧ୍ୟରୁ କୌଣସି ଅନୁଷ୍ଠାନକୁ ସରକାର ଡିମ୍‌ଡ ବିଶ୍ୱବିଦ୍ୟାଳୟ ପାଇଁ ସୁପାରିଶ କରିନାହାନ୍ତି। ଆବେଦନକାରୀ ସଂସ୍ଥାମାନଙ୍କର ଡିମ୍‌ଡ ବିଶ୍ୱବିଦ୍ୟାଳୟ ପାଇଁ ଆବଶ୍ୟକ ଯୋଗ୍ୟତାର ବିଚାର କୌଣସି ବୈଷୟିକ କମିଟି ଦ୍ୱାରା ନକରି ଏକତରଫା ଭାବେ ଏଭଳି ନିଷ୍ପତ୍ତି ନେବା ଉଚ୍ଚ ବୈଷୟିକ କ୍ଷେତ୍ରରେ କ୍ଷତିକାରକ ହେବ। ଆବେଦନକାରୀ ସଂସ୍ଥାମାନଙ୍କ ଭିତରେ C.V. Raman Institute of Engineering & Technology, Synergy Institute of Engineering & Technology ଓ Dhaneswar Rath Institute of Engineering & Management Studies ଭଳି ସଂସ୍ଥା ମଧ୍ୟ ଅଛନ୍ତି ଯାହାର ଡିମ୍‌ଡ ବିଶ୍ୱବିଦ୍ୟାଳୟ ମାନ୍ୟତା ପାଇବା ପାଇଁ ସବୁ ପ୍ରକାର ଯୋଗ୍ୟତା ରହିଛି। ଡିମ୍‌ଡ ବିଶ୍ୱବିଦ୍ୟାଳୟ

ସମ୍ପର୍କରେ ପ୍ରାୟ ୩୮ ମିନିଟ୍ ଧରି ସରଗରମ ଆଲୋଚନା ହୋଇଥିବା ଏକ ସମ୍ବାଦରୁ ପ୍ରକାଶ। ମନ୍ତ୍ରୀ ଶ୍ରୀ ଦେବ୍ କହିଥିଲେ ଯେ କିଟ୍ ଓ ସୋଆ ଡିମ୍‌ଡ ବିଶ୍ୱବିଦ୍ୟାଳୟ ଉପରେ ସରକାରଙ୍କ କୌଣସି କର୍ତ୍ତୃତ୍ୱ ନାହିଁ ଏବଂ ସେମାନେ ଆଇନର ଗୁରୁତର ଅପବ୍ୟବହାର କରୁଥିବା ସମ୍ପର୍କରେ ରାଜ୍ୟ ସରକାର ମାନବ ସମ୍ବଳ ବିକାଶ ଓ ୟୁ.ଜି.ସି.ଠାରୁ କେତେକ ସ୍ପଷ୍ଟୀକରଣ ଚାହିଁଛନ୍ତି। ବର୍ତ୍ତମାନ ଦେଶର ୫୨୭ ବିଶ୍ୱବିଦ୍ୟାଳୟ ମଧ୍ୟରୁ ୧୩୨ଟି ଡିମ୍‌ଡ ବିଶ୍ୱବିଦ୍ୟାଳୟ ରହିଛି। ତାମିଲନାଡୁରେ ୨୯ଟି ଡିମ୍‌ଡ ବିଶ୍ୱବିଦ୍ୟାଳୟ ଓ ଦିଲ୍ଲୀ ଭଳି ଏକ କ୍ଷୁଦ୍ର ରାଜ୍ୟରେ ୧୧ଟି ଡିମ୍‌ଡ ବିଶ୍ୱବିଦ୍ୟାଳୟ କାର୍ଯ୍ୟ କରୁଥିବାବେଳେ ଓଡ଼ିଶାରେ ମାତ୍ର ୨ଟି ଡିମ୍‌ଡ ବିଶ୍ୱବିଦ୍ୟାଳୟ କାର୍ଯ୍ୟ କରୁଛି। ଏହି ଦୁଇଟି ବିଶ୍ୱବିଦ୍ୟାଳୟ ମଧ୍ୟରୁ କିଟ୍ ବିଶ୍ୱବିଦ୍ୟାଳୟର ଭିତ୍ତିଭୂମି ଓ ପାଠ୍ୟକ୍ରମ ବିଶ୍ୱସ୍ତରୀୟ ବୋଲି ଏଠାକୁ ବିଭିନ୍ନ ସମୟରେ ପରିଦର୍ଶନରେ ଆସିଥିବା ଭାରତର ପୂର୍ବତନ ରାଷ୍ଟ୍ରପତି ଏ.ପି.ଜେ. ଅବଦୁଲ କଲାମ, ପ୍ରଧାନମନ୍ତ୍ରୀ ଡକ୍ଟର ମନମୋହନ ସିଂହ, କେନ୍ଦ୍ର ମାନବ ସମ୍ବଳ ବିକାଶ ମନ୍ତ୍ରୀ କପିଲ ଶିବଲ୍, ଆଠ ଜଣ ନୋବେଲ ପ୍ରାଇଜ ବିଜେତା ଓ ଶତାଧିକ ଦେଶ ବିଦେଶର ରାଜନେତା, ପ୍ରଶାସକ ଓ ଶିକ୍ଷାବିତ୍‌ମାନେ ଉଲ୍ଲେଖ କରିଛନ୍ତି। ୨୦୧୨ ମସିହାରେ ଏହି ବିଶ୍ୱବିଦ୍ୟାଳୟରେ ୯୯ତମ ଭାରତୀୟ ବିଜ୍ଞାନ କଂଗ୍ରେସ (Indian Science Congress)ର ଅଧିବେଶନ ଅନୁଷ୍ଠିତ ହେବାପରେ ଏହି ଅନୁଷ୍ଠାନର ସମ୍ମାନ ଭାରତ ତଥା ବିଶ୍ୱରେ ବୃଦ୍ଧି ପାଇଛି।

ବି.ପି.ୟୁ.ଟି.ରେ ଶିକ୍ଷାଦାନରେ ଅବହେଳା, ପରୀକ୍ଷା ପରିଚାଳନାରେ ବହୁ ତ୍ରୁଟିବିଚ୍ୟୁତି ଓ ପରୀକ୍ଷା ଫଳ ପ୍ରକାଶନରେ ଅହେତୁକ ବିଳମ୍ବ ଯୋଗୁଁ ଏହାର ପ୍ରତିଷ୍ଠା ପରଠାରୁ ଅନେକ ସମୟରେ ଛାତ୍ର ଆନ୍ଦୋଳନ ଦେଖାଦେଇଛି। ଏହି ବିଶ୍ୱବିଦ୍ୟାଳୟ ସହିତ ସହବନ୍ଧିତ ହୋଇଥିବା ୮୬ଟି ଇଞ୍ଜିନିୟରିଂ କଲେଜରୁ କେତେକରେ ଉପଯୁକ୍ତ ମାନର ବୈଷୟିକ ଶିକ୍ଷକମାନଙ୍କର ଅଭାବ ରହିଛି। ସେହିଭଳି Laboratory ମାନଙ୍କରେ ଆବଶ୍ୟକୀୟ ଯନ୍ତ୍ରପାତିର ଅଭାବ ରହିଛି। ବି.ପି.ୟୁ.ଟି.କୁ ସରକାର ଏହାର ପ୍ରତିଷ୍ଠା ପରଠାରୁ ଅବହେଳା କରିଆସୁଛନ୍ତି। ବି.ପି.ୟୁ.ଟି.ରେ ବର୍ତ୍ତମାନ ୮୬ଟି ଇଞ୍ଜିନିୟରିଂ କଲେଜ ଅନୁବନ୍ଧିତ ଅଛନ୍ତି। ସବୁବେଳେ ନୀତିଗତ କାରଣରୁ କୌଣସି ନା କୌଣସି କଲେଜର ସରକାରଙ୍କ ସହିତ ମତଭେଦ ରହିଆସୁଛି। ଏବେ ଲେଡ଼ିଗୁଡ଼ କହୁଣିକୁ ବୋହିଯିବା ପରେ ସବୁ ଦୋଷ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କ

ଉପରେ ଲଦିଦେଇ ବୈଷୟିକ ଶିକ୍ଷାକୁ ସୁପରିଚାଳିତ କରିବା ପ୍ରକ୍ରିୟାରେ ଦୁଇଟି ଡିମ୍‌ଡ ବିଶ୍ୱବିଦ୍ୟାଳୟକୁ ରାଜ୍ୟ ସରକାର ନିଜ ଅକ୍ତିଆରକୁ ଆଣିବାର ପ୍ରଚେଷ୍ଟା ଆଦୌ ସ୍ପୃହଣୀୟ ନୁହେଁ।

ଦୁଇଟି ଡିମ୍‌ଡ ବିଶ୍ୱବିଦ୍ୟାଳୟରେ ବିଶେଷକରି କିଟ୍‌ରେ ଦେଶର ବିଭିନ୍ନ ରାଜ୍ୟରୁ ଉପଯୁକ୍ତ ଯୋଗ୍ୟତା ସମ୍ପନ୍ନ ବୈଷୟିକ ଶିକ୍ଷକମାନଙ୍କୁ ନିଯୁକ୍ତି ଦିଆଯାଇ, ସେମାନଙ୍କ ଚାହିଦା ମୁତାବକ ସୁବିଧା ସୁଯୋଗ ଯୋଗାଇ ଦେଇ ଶିକ୍ଷାର ଉଚ୍ଚ ମାନ ବଜାୟ ରଖାଯାଇଛି। ଯାହା ଫଳରେ ଏଠାରେ ଛାତ୍ର ବିଶୃଙ୍ଖଳା କେବେ ବି ଦେଖାଯାଇନି। ସର୍ବଭାରତୀୟ ପ୍ରବେଶିକା ପରୀକ୍ଷା କରାଯାଇ କିଟ୍‌ରେ ଛାତ୍ରଛାତ୍ରୀ ଗ୍ରହଣ କରାଯାଇଥାଏ। କିନ୍ତୁ ଏଠାରେ ୨୫ ପ୍ରତିଶତ ସ୍ଥାନ ଓଡ଼ିଶାର ଛାତ୍ରଛାତ୍ରୀମାନଙ୍କ ପାଇଁ ସଂରକ୍ଷିତ ରହିଅଛି। ସରକାରଙ୍କ ଅଭିଯୋଗ ଯେ, ଏହି ଦୁଇଟି ବିଶ୍ୱବିଦ୍ୟାଳୟ ମନଇଚ୍ଛା ସିଟ୍ ସଂଖ୍ୟା ବୃଦ୍ଧି କରୁଛନ୍ତି। ଏହାର କାରଣ ହେଲା ଏଠାରେ ଗୁଣାତ୍ମକ ଶିକ୍ଷା ଦିଆଯାଉଥିବାରୁ ଏହି ବିଶ୍ୱବିଦ୍ୟାଳୟଗୁଡ଼ିକରେ ବହୁସଂଖ୍ୟକ ଛାତ୍ରଛାତ୍ରୀ ପଢ଼ିବାକୁ ଆଗ୍ରହ ପ୍ରକାଶ କରିଥାନ୍ତି। ଏହା ବ୍ୟତୀତ ପାଠ୍ୟକ୍ରମ ସମାପ୍ତି ପରେ Campus interview ମାଧ୍ୟମରେ ନିଯୁକ୍ତିର ସୁବିଧା ମିଳୁଥିବାରୁ ଏହା ଛାତ୍ରଛାତ୍ରୀଙ୍କୁ ଆକୃଷ୍ଟ କରୁଛି। କିଟ୍ ବିଶ୍ୱବିଦ୍ୟାଳୟ ଅଧୀନରେ ବର୍ତ୍ତମାନ ପ୍ରାୟ ୨୦୫୦୦ ଛାତ୍ରଛାତ୍ରୀ ଅଧ୍ୟୟନରତ ଥିବା ଜଣାଯାଏ।

ସରକାର ବୈଷୟିକ ଉଚ୍ଚ ଶିକ୍ଷାନୁଷ୍ଠାନଗୁଡ଼ିକର ସବୁପ୍ରକାର ଅଭାବ ଅସୁବିଧାର ସମାଧାନ ପାଇଁ ସହୃଦୟତାର ସହିତ ପଦକ୍ଷେପ ନେବା ଉଚିତ୍। ଏଠାରେ ତିନୋଟି ଅତ୍ୟନ୍ତ ଜରୁରୀ ପଦକ୍ଷେପ ଉଲ୍ଲେଖ କରିବା ସମୀଚୀନ ହେବ। (୧) ବି.ପି.ୟୁ.ଟି.କୁ ଭିତ୍ତିଭୂମି ଗଠନ ପାଇଁ ପର୍ଯ୍ୟାପ୍ତ ଆର୍ଥିକ ସହାୟତା ଯୋଗାଇଦେବା, (୨) ସରକାର ଉଚ୍ଚ ବୈଷୟିକ ଶିକ୍ଷା କ୍ଷେତ୍ରରେ ସମାଜର ଦୁର୍ବଳ ଶ୍ରେଣୀ ଛାତ୍ରଛାତ୍ରୀଙ୍କ ପାଇଁ ସ୍ୱତନ୍ତ୍ର ପଦକ୍ଷେପ ନେବା ଓ ସେମାନଙ୍କୁ ପ୍ରବେଶିକା ପରୀକ୍ଷା ପୂର୍ବରୁ ହେଉଥିବା ତାଲିମ୍ ପ୍ରଶିକ୍ଷଣ ପାଇଁ ଯେଉଁ ଅର୍ଥର ଆବଶ୍ୟକତା ଅଛି ତାହାକୁ ଯୋଗାଇଦେବା, (୩) ବେସରକାରୀ ବୈଷୟିକ ଅନୁଷ୍ଠାନମାନଙ୍କରେ କାର୍ଯ୍ୟରତ ଶିକ୍ଷକମାନଙ୍କ ପ୍ରଚଳିତ ବେତନ ହାର ବୃଦ୍ଧି କରି ଉଚ୍ଚ ବୈଷୟିକ ଯୋଗ୍ୟତାସମ୍ପନ୍ନ ମେଧାବୀ ଛାତ୍ରମାନଙ୍କୁ ଶିକ୍ଷକ ରୂପେ ନିଯୁକ୍ତି ଦେବାକୁ ସରକାର ସୁନିଶ୍ଚିତ କରିବା।

ଓଡ଼ିଶାରେ ଶିକ୍ଷା କ୍ଷେତ୍ରରେ ପ୍ରାଥମିକଠାରୁ ଆରମ୍ଭ କରି ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ ଶିକ୍ଷାୟତନମାନ ବହୁ ଅଭାବ ଅସୁବିଧ୍ୟରେ ଗତି କରୁଥିବା ସମସ୍ତେ ଅନୁଭବ କରୁଛନ୍ତି। ଓଡ଼ିଶା ଛାତ୍ର ପିଛା ଶିକ୍ଷା ବ୍ୟୟରେ ଅନ୍ୟ ବହୁ ରାଜ୍ୟଠାରୁ ପଛରେ ଅଛି। ଶିକ୍ଷା ବ୍ୟବସ୍ଥା ଉପରେ ଓଡ଼ିଶାରେ ପ୍ରାୟ ୩୦ଟି ଅଧ୍ୟୟନ ଓ ସର୍ବେକ୍ଷଣ ହୋଇସାରିଲାଣି। କିନ୍ତୁ ଏହାଦ୍ୱାରା ଶିକ୍ଷା ବ୍ୟବସ୍ଥାର କିଛି ଉନ୍ନତି ହୋଇପାରିନି। ଭାରତରେ ଯେଉଁ ଆଠଟି ରାଜ୍ୟ ଶିକ୍ଷା ଦୃଷ୍ଟିରୁ ପଛୁଆ ସେମାନଙ୍କ ଭିତରେ ଓଡ଼ିଶା ଅନ୍ୟତମ। ବର୍ତ୍ତମାନ ବୈଷୟିକ ଶିକ୍ଷା କ୍ଷେତ୍ରରେ, ବି.ପି.ୟୁ.ଟି.ରେ ହୋଇଥିବା ଅବ୍ୟବସ୍ଥାକୁ ସୁଧାର କରିବା ପାଇଁ ଏହାର ଆଇନ ସଂଶୋଧନ କରିବା ଆଳରେ ଡିମ୍ଡ ବିଶ୍ୱବିଦ୍ୟାଳୟର ପରିଚାଳନାରେ ହସ୍ତକ୍ଷେପ କରିବା ଓ ନୂତନ ଡିମ୍ଡ ବିଶ୍ୱବିଦ୍ୟାଳୟ ରାଜ୍ୟରେ ପ୍ରତିଷ୍ଠା କରାଇ ନ ଦେବାର ମାନସିକତା ବୈଷୟିକ ଉଚ୍ଚଶିକ୍ଷାର ଉନ୍ନତିରେ ଅନ୍ତରାୟ ହେବ।

ବମ୍ବେ IITର ପ୍ରାକ୍ତନ ଛାତ୍ର ତଥା Imfosysର ପୂର୍ବତନ ମୁଖ୍ୟ ନନ୍ଦନ ନିଲେକାନୀ ତାଙ୍କ ରଚିତ ପୁସ୍ତକ Imagining India - Ideas for the New Centuryରେ ବ୍ୟକ୍ତିଗତ ଅଭିଜ୍ଞତାରୁ ଲେଖିଛନ୍ତି ଯେ ନିଜ ପ୍ରଚେଷ୍ଟାରେ IIT, Bombayରେ ୧୦୦୦ ରୁମ୍ ବିଶିଷ୍ଟ ଦୁଇଟି ଅତ୍ୟାଧୁନିକ ଛାତ୍ରାବାସ ନିର୍ମାଣ କରେଇଥିଲେ। କିନ୍ତୁ ଏହି କାର୍ଯ୍ୟକୁ ମାନବ ସମ୍ବଳ ବିଭାଗର ତତ୍କାଳୀନ ମନ୍ତ୍ରୀ ମୁରଲୀ ମନୋହର ଜୋଷୀ ପସନ୍ଦ କରିନଥିଲେ। ଏପରିକି ବମ୍ବେ IITର ଏକ ଶାଖା ଗୁଜୁରାଟ୍‌ରେ ପ୍ରତିଷ୍ଠା ପ୍ରସ୍ତାବକୁ ତାଙ୍କ ପରବର୍ତ୍ତୀ ମନ୍ତ୍ରୀ ଅର୍ଜୁନ ସିଂ ନାନା ଆଳରେ ବିରୋଧ କରିଥିଲେ। ଆମ ସରକାର ବର୍ତ୍ତମାନ ଉଚ୍ଚ ବୈଷୟିକ ଶିକ୍ଷାଦାନରେ ଓଡ଼ିଶାର ଡିମ୍ଡ ବିଶ୍ୱବିଦ୍ୟାଳୟର ଭୂମିକାକୁ ପ୍ରୋତ୍ସାହନ ଦେବା ପରିବର୍ତ୍ତେ ନଗନ୍ୟ ଭାବେ ଚିତ୍ରିତ କରୁଛନ୍ତି ଯାହାକି ଅତ୍ୟନ୍ତ କ୍ଷୋଭର ବିଷୟ। ସେଥିରୁ ସରକାର ବିରତ ରହିବା ଉଚିତ।

*ସମାଜ, ୧୭.୧୨.୨୦୧୩*

# ସେନାରେ କ୍ରମବର୍ଦ୍ଧିଷ୍ଣୁ ଦୁର୍ନୀତି ଓ ବିଶୃଙ୍ଖଳା

୨୦୧୦ ମସିହାରେ ଅବସରଗ୍ରହଣ କରିଥିବା ଭାରତର ଚିଫ୍ ଭିଜିଲାନ୍ସ କମିଶନର ପ୍ରତ୍ୟୁଷ ସିହ୍ନା ମତ ଦେଇଥିଲେ ଯେ ଆମ ଦେଶରେ ପ୍ରତି ୩ ଜଣରେ ଜଣେ ଦୁର୍ନୀତିଗ୍ରସ୍ତ। ଆମ ଦେଶର ସମସ୍ତ ସରକାରୀ ବିଭାଗରେ ଦୁର୍ନୀତି ବ୍ୟାଧିର ଭୂତାଣୁ କର୍କଟ ରୋଗ ଭଳି ବ୍ୟାପିବାରେ ଲାଗିଛି।

ଡିସେମ୍ବର ୨୦୧୩ ମସିହାରେ ପ୍ରକାଶିତ ଟ୍ରାନ୍ସପାରେନ୍ସି ଇଣ୍ଟରନ୍ୟାଶନାଲ୍‌ର ରିପୋର୍ଟ ଅନୁଯାୟୀ ୧୭୭ଟି ଦେଶ ମଧ୍ୟରେ ଦୁର୍ନୀତିରେ ଭାରତବର୍ଷର ସ୍ଥାନ ୯୪। ଚାଇନାଠାରୁ ଭାରତବର୍ଷ ବେଶୀ ଦୁର୍ନୀତିଗ୍ରସ୍ତ ଏହି ତଥ୍ୟରୁ ଜଣାଯାଏ। ଦୁର୍ନୀତି ସବୁସ୍ତରରେ ବ୍ୟାପକ, କିନ୍ତୁ ସୈନ୍ୟବାହିନୀରେ ଏହାର ବ୍ୟାପକତା ଦେଶପାଇଁ ଉଦ୍‌ବେଗଜନକ।

୨୦୧୨ ମସିହା ମେ ୩୧ ତାରିଖରେ ଅବସର ଗ୍ରହଣ କରିଥିବା ସେନାଧକ୍ଷ ଜେନେରାଲ ଭି. କେ. ସିଂହ ପ୍ରତିରକ୍ଷା ବାହିନୀ ସମ୍ପର୍କରେ କେତେକ ଗୁରୁତ୍ୱପୂର୍ଣ୍ଣ ବିଷୟରେ ମାର୍ଚ୍ଚ ମାସରେ ଏକ ଚିଠି ଲେଖି ପ୍ରଧାନମନ୍ତ୍ରୀ ଡକ୍ଟର ମନମୋହନ ସିଂହଙ୍କ ଦୃଷ୍ଟିକୁ ଆଣିଥିଲେ। ସେଥିମଧ୍ୟରେ ପ୍ରତିରକ୍ଷା ବିଭାଗର ଦୁର୍ନୀତି ସମ୍ବନ୍ଧରେ ଯେଉଁ ଉଲ୍ଲେଖ କରିଛନ୍ତି ତାହା ସୂଚାଇ ଦେଉଛି ଯେ ବର୍ତ୍ତମାନଠାରୁ ତାହାର ନିରାକରଣ ନକଲେ ଏହା ବିସ୍ଫୋରକ ପରିସ୍ଥିତି ସୃଷ୍ଟି କରିବ। ଜେନେରାଲ ସିଂହ ନିଜର ପ୍ରତ୍ୟକ୍ଷ ଅନୁଭୂତି ବର୍ଣ୍ଣନା କରି କହିଛନ୍ତି ଯେ ୬୦୦ ନିମ୍ନମାନର ଟାଟା ଟ୍ରକ କିଣିବାକୁ ତାଙ୍କୁ ଅବସରପ୍ରାପ୍ତ ଲେଫ୍‌ଟନାଣ୍ଟ ଜେନେରାଲ୍ ତେଜିନ୍ଦର ସିଂ ୧୪ କୋଟି ଟଙ୍କା ଲାଞ୍ଚ ଯାଚିଥିଲେ ଯାହାକୁ ସେ ପ୍ରତ୍ୟାଖ୍ୟାନ କରି ମୌଖିକ ଭାବେ ପ୍ରତିରକ୍ଷା ମନ୍ତ୍ରୀ ଏ. କେ. ଆଣ୍ଟୋନିଙ୍କୁ ଜଣାଇଥିଲେ। ତେଜିନ୍ଦର ସିଂ ଏହି ଅଭିଯୋଗ ବିରୁଦ୍ଧରେ କୋର୍ଟର ଦ୍ୱାରସ୍ଥ ହୋଇଛନ୍ତି। କିନ୍ତୁ ସେ ଜଣେ ନିର୍ମଳ ଭାବମୂର୍ତ୍ତିର ଅଫିସର ନୁହନ୍ତି ତାହା ତାଙ୍କର ବମ୍ବେସ୍ଥିତ ଆଦର୍ଶ ହାଉସିଂ କମ୍ପ୍ଲେକ୍ସରେ ଏକ ଫ୍ଲାଟ ନେବାଦ୍ୱାରା ପ୍ରମାଣିତ ହୋଇଛି। ଏହି ଜଣେ ଅବସରପ୍ରାପ୍ତ ଲେଫ୍‌ଟନାଣ୍ଟ ଜେନେରାଲ ନୁହନ୍ତି ପ୍ରତିରକ୍ଷା ବାହିନୀର ଅନେକ ଅବସରପ୍ରାପ୍ତ ଉଚ୍ଚପଦସ୍ଥ ଅଫିସର ଯୁଦ୍ଧ

ଉପକରଣ କିଣିବା ପ୍ରକ୍ରିୟାରେ ବିଦେଶୀ କମ୍ପାନୀମାନଙ୍କର ପ୍ରତିନିଧି ଭାବେ କାର୍ଯ୍ୟ କରୁଛନ୍ତି ।

ଦୁର୍ନୀତି ସେନାବାହିନୀରେ ୧୯୪୮ ମସିହାରୁ ଆରମ୍ଭ ହୋଇଛି । ଭାରତର ସେନାବାହିନୀ ପାଇଁ ଇଂଲଣ୍ଡରେ ଅବସ୍ଥାପିତ ତତ୍‌କାଳୀନ ହାଇକମିଶନର ଭି. କେ. କ୍ରିଷ୍ଣମେନନ ୮୦ ଲକ୍ଷ ଟଙ୍କାର ଜିପ୍ କିଣିଥିଲେ । ପରେ ଜଣାପଡ଼ିଲା ଏହି ଜିପ୍‌ଗୁଡ଼ିକ ଦ୍ୱିତୀୟ ବିଶ୍ୱଯୁଦ୍ଧରେ ବ୍ରିଟିଶ୍ ସେନାବାହିନୀ ଦ୍ୱାରା ବ୍ୟବହୃତ ହୋଇଥିଲା ଯାହାକୁ କ୍ରିଷ୍ଣମେନନ୍ ନୂଆ ଜିପ୍‌ର ଦାମ୍ ଦେଇ କିଣିଥିଲେ । ସେତେବେଳେ ଦେଶରେ ଏହି ଘଟଣା ଆଲୋଡ଼ନ ସୃଷ୍ଟି କରିଥିଲା । ତେଣୁ ପ୍ରଧାନମନ୍ତ୍ରୀ ଜବାହରଲାଲ୍ ନେହେରୁ ମେନନ୍‌ଙ୍କୁ ତାଙ୍କ ପଦବୀରୁ ହଟାଇ ଦେଇଥିଲେ । ଦ୍ୱିତୀୟ ବଡ଼ ଦୁର୍ନୀତି ୧୯୮୭ ମସିହାରେ ବୋଫର୍ସ କମାଣ ଯୋଗାଇଦେବାକୁ ସୁଇଜରଲ୍ୟାଣ୍ଡର ବୋଫର୍ସ କମ୍ପାନୀ ଭାରତର ବିଭିନ୍ନ ସଂସ୍ଥାକୁ ୬୪ କୋଟି ଟଙ୍କା ଲାଞ୍ଚ ଦେଇଥିବା ଜଣାପଡ଼ିଥିଲା । ସେହି ଲାଞ୍ଚ ଅର୍ଥ ତିନିଜଣ ମୁଖ୍ୟତଃ ଭାଗକରି ନେଇଥିବା ଅଭିଯୋଗ ହୋଇଥିଲା । ସେମାନେ ହେଲେ ସୋନିଆ ଗାନ୍ଧୀଙ୍କ ସମ୍ପର୍କୀୟ ଅଟାଭିଓ କ୍ୱାଟ୍ରୋକି, ଲଣ୍ଡନସ୍ଥିତ ଭାରତୀୟ ବ୍ୟବସାୟୀ ହିନ୍ଦୁଜା ଓ ଭାରତର ତତ୍କାଳୀନ ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧି । ସି.ବି.ଆଇ. ଅଭିଯୋଗ ଦାଖଲ କରିଥିଲା, ବହୁବର୍ଷ ଧରି ବିଚାର ଚାଲିଥିଲା, କିନ୍ତୁ ପ୍ରମାଣ ଅଭାବରୁ ଅଭିଯୋଗ ସାବ୍ୟସ୍ତ ହୋଇପାରିଲାନି । ୧୯୮୭ ମସିହାରେ ଆଉ ଏକ ସ୍ପର୍ଶକାତର ଘଟଣାରେ ଏଚ.ଡି.ଡବ୍ଲୁ. ସବମେରାଇନ୍ ଜର୍ମାନରୁ କିଣିବାକୁ ଏକ ପ୍ରତିରକ୍ଷା ଫାର୍ମଠାରୁ ଉତ୍କୋଚ ନେବା ଅଭିଯୋଗରେ ପୂର୍ବତନ ନୌବାହିନୀର ମୁଖ୍ୟ ଏସ୍. ଏମ୍. ନନ୍ଦାଙ୍କୁ ଅଭିଯୁକ୍ତ କରାଯାଇଥିଲା । ଏହି କାରବାରରେ ସ୍ୱର୍ଗତ ସଞ୍ଜୟ ଗାନ୍ଧି, ଲଣ୍ଡନସ୍ଥିତ ଭାରତୀୟ ବ୍ୟବସାୟୀ ସ୍ୱରାଜ ପାଲ ଏବଂ ହିନ୍ଦୁଜା କମ୍ପାନୀର ମଧ୍ୟ ସଂପୃକ୍ତି ଥିଲା ବୋଲି ଅଭିଯୋଗ ହୋଇଥିଲା । ସ.ବି.ଆଇ. ଅନ୍ୟାନ୍ୟ ଅଭିଯୁକ୍ତଙ୍କ ସହିତ ଆଡମିରାଲ୍ ନନ୍ଦାଙ୍କ ଘରେ ମଧ୍ୟ ଚଢ଼ାଉ କରିଥିଲେ କିନ୍ତୁ ଉପଯୁକ୍ତ ପ୍ରମାଣ ଅଭାବରୁ ଏହି ମାମଲାଟିକୁ ବନ୍ଦ କରିଦିଆଗଲା । ଜର୍ଜ ଫର୍ଣ୍ଣାଣ୍ଡିସ ପ୍ରତିରକ୍ଷା ମନ୍ତ୍ରୀ ଥିଲାବେଳେ ବାରାକ୍ ମିଜାଇଲ୍ ଖର୍ଦି ଓ କାରଗିଲ ଯୁଦ୍ଧରେ ମୃତକଙ୍କ ପାଇଁ ଆମେରିକାରୁ କଫିନ୍ କିଣା ଦୁର୍ନୀତିରେ ଜଡ଼ିତ ଥିଲେ ବୋଲି ଅଭିଯୋଗ ହୋଇଥିଲା ।

ପ୍ରତିରକ୍ଷା ବିଶେଷଜ୍ଞମାନେ କହୁଛନ୍ତି ଯେ ୨୦୦୭ରୁ ୨୦୧୧ ମସିହା ମଧ୍ୟରେ ଭାରତ ବିଶ୍ୱର ସବୁଠାରୁ ବଡ଼ ଯୁଦ୍ଧ ସରଞ୍ଜାମ ଖରିଦଦାରରେ ପରିଣତ

ହୋଇଛି । ୨୦୧୨-୧୩ରେ ଦେଶର ପ୍ରତିରକ୍ଷା ବଜେଟ ୧ ଲକ୍ଷ ୯୩ ହଜାର କୋଟିକୁ ବୃଦ୍ଧି ପାଇଛି ଯାହାର ସିଂହଭାଗ ବିଦେଶରୁ ଯୁଦ୍ଧ ସରଞ୍ଜାମ କିଣିବା ପାଇଁ ଉଦ୍ଦିଷ୍ଟ । ପ୍ରତିରକ୍ଷା ବାହିନୀର ଯୁଦ୍ଧାସ୍ତ୍ର କିଣିବାରେ, ପ୍ରତିରକ୍ଷା ବିଭାଗର ଜମିକୁ ଚକ୍ରାନ୍ତ କରି ହସ୍ତାନ୍ତର କରିବାରେ, ମିଲିଟାରି ଇଞ୍ଜିନିୟର ସର୍ଭିସର କୋଠାବାଡ଼ି ଇତ୍ୟାଦି ନିର୍ମାଣ କରିବାରେ, ଆର୍ମି ସର୍ଭିସ କୋର ଦ୍ୱାରା ଖାଦ୍ୟ ସାମଗ୍ରୀ ଖରିଦରେ ଦୁର୍ନୀତି ବିଶେଷ ଭାବରେ ପରିଲକ୍ଷିତ ହେଉଛି । ନିକଟ ଅତୀତରେ ୱାର ରୁମ୍ ଲିକ୍ କେସ୍ ଯେଉଁଥିରେ ଯୁଦ୍ଧ ସରଞ୍ଜାମ କାରବାର କରୁଥିବା ଅଭିଷେକ ଶର୍ମାକୁ ସି.ବି.ଆଇ. ସରକାରୀ ଅଫିସରଙ୍କୁ ଲାଞ୍ଚ ଦେବା ଅଭିଯୋଗରେ ଗିରଫ କରିଛି । ତାଙ୍କଠାରୁ ଜବତ ହୋଇଥିବା କାଗଜପତ୍ରରୁ ବହୁ ସଂଖ୍ୟାରେ ସ୍ଥଳସେନା, ବାୟୁସେନା ଓ ନୌସେନାର ଅଫିସରମାନେ ସଂପୃକ୍ତ ଥିବାର ପ୍ରମାଣ ମିଳିଛି ।

୨୦୦୮ ମସିହାରେ ପଶ୍ଚିମବଙ୍ଗ ସିଲିଗୁଡ଼ି ନିକଟରେ ପ୍ରତିରକ୍ଷା ବିଭାଗର ସୁକ୍‌ନା ମିଲିଟାରୀ ଷ୍ଟେସନ ସଂଲଗ୍ନ ୭୧ ଏକର ଜମି ବେଆଇନ ଭାବେ ଏକ ଘରୋଇ କମ୍ପାନୀକୁ ହସ୍ତାନ୍ତର କରିଥିବା ଅଭିଯୋଗରେ ଆର୍ମି ହେଡ୍‌କ୍ୱାର୍ଟରଠାରେ ଅବସ୍ଥାପିତ ପୂର୍ବତନ ମିଲିଟାରୀ ସେକ୍ରେଟେରୀ ଲେଫ୍‌ଟନାଣ୍ଟ ଜେନେରାଲ ଅଭଦେଶ ପ୍ରକାଶଙ୍କୁ ଚାକିରିରୁ ବରଖାସ୍ତ କରାଯାଇଛି । ଏହି ଜମି ହସ୍ତାନ୍ତର କରିବାକୁ ଏନ୍.ଓ.ସି. ଦେଇଥିବା ଅଭିଯୋଗରେ ୩୩ କୋର ହେଡକ୍ୱାର୍ଟରର ତତ୍କାଳୀନ କମାଣ୍ଡିଙ୍ଗ ଅଫିସର ଲେଫ୍‌ଟନାଣ୍ଟ ଜେନେରାଲ ପି. କେ. ରଥଙ୍କୁ ମଧ୍ୟ ଦୋଷୀ ସାବ୍ୟସ୍ତ କରାଯାଇ ଦଣ୍ଡିତ କରାଯାଇଛି । ଏହି ସୁକ୍‌ନା ଜମି ଦୁର୍ନୀତି ମାମଲା ଲେଫ୍‌ଟନାଣ୍ଟ ଜେନେରାଲ ରମେଶ ଆଲଗାଲି ପ୍ରଥମେ ପ୍ରତିରକ୍ଷା ବିଭାଗର ଉଚ୍ଚ କର୍ତ୍ତୃପକ୍ଷଙ୍କ ଦୃଷ୍ଟିକୁ ଆଣିଥିଲେ ।

ନ୍ୟାଶନାଲ ଡିଫେନ୍ସ ଏକାଡେମୀ (ଏନ୍.ଡି.ଏ.)ରେ ଚତୁର୍ଥ ଶ୍ରେଣୀ କର୍ମଚାରୀ ନିଯୁକ୍ତି ବେଳେ ଲାଞ୍ଚ ଗ୍ରହଣ କରିଥିବା ଅଭିଯୋଗରେ ସି.ବି.ଆଇ. କାର୍ଯ୍ୟରତ ଦୁଇଜଣ କର୍ଣ୍ଣେଲ ଓ ଅନ୍ୟ ୬ ଜଣ କର୍ମଚାରୀଙ୍କୁ ଗିରଫ କରି ସେମାନଙ୍କଠାରୁ ଏକ କୋଟି ୭୬ ଲକ୍ଷ ଟଙ୍କା ଜବତ କରିଥିଲା ଏବଂ ଏ ଖବର ଜଣାପଡ଼ିବା ପରେ ପ୍ରତିରକ୍ଷା ମନ୍ତ୍ରୀ ଏ. କେ. ଆଣ୍ଟୋନି ଏନ୍.ଡି.ଏ.ର କମାଣ୍ଡେଣ୍ଟ ଲେଫ୍‌ଟନାଣ୍ଟ ଜେନେରାଲ ଜିତେନ୍ଦ୍ର ସିଂଙ୍କୁ ସେଠାରୁ ହଟାଇ ଦେଇଥିଲେ ।

୨୦୦୯ ମସିହାରେ ଅର୍ଡିନାନ୍ସ କାରଖାନା ବୋର୍ଡର ଚେୟାରମ୍ୟାନ ସୁଦୀପ୍ତ ଘୋଷ ଏବଂ ତାଙ୍କର କେତେକ ସହକର୍ମୀ ପ୍ରତିରକ୍ଷା ସାମଗ୍ରୀ କିଣିବାରେ ଦୁର୍ନୀତି

କରିଥିବା ସି.ବି.ଆଇ. ପ୍ରମାଣ ପାଇ ସେମାନଙ୍କ ବିରୁଦ୍ଧରେ ମାମଲା ରୁଜୁ କରିବା ସଂଗେ ସଂଗେ ଯେଉଁ କମ୍ପାନୀମାନେ ଲାଞ୍ଚ ଦେଇଥିଲେ ସେମାନଙ୍କୁ ସରକାର କଳା ତାଲିକାଭୁକ୍ତ କରିଥିଲେ ।

୨୦୧୦ ଫେବୃଆରୀରେ ଇଟାଲୀର ଗୋଟିଏ ଯୁଦ୍ଧସାମଗ୍ରୀ ଉତ୍ପାଦନକାରୀ ସଂସ୍ଥା (FIN MECCA NICA)ଠାରୁ 12 AW-101 ୧୨ଟି ହେଲିକପ୍ଟର ୩,୫୪୬ କୋଟି ଟଙ୍କାରେ କିଣିବା ପାଇଁ ଚୁକ୍ତି ହୋଇଥିଲା । ୨୦୧୨ ମସିହାରେ ଏହି କାରବାରରେ ଦୁର୍ନୀତି ହୋଇଥିବା ଅଭିଯୋଗ ହେବା ପରେ ପ୍ରତିରକ୍ଷା ମନ୍ତ୍ରୀ ଏ. କେ. ଆଣ୍ଟୋନି ସି.ବି.ଆଇ.କୁ ଏହାର ତଦନ୍ତ ପାଇଁ ନିର୍ଦ୍ଦେଶ ଦେଇଥିଲେ । ସି.ବି.ଆଇ. ତଦନ୍ତ କରି ପୂର୍ବତନ ବାୟୁସେନା ମୁଖ୍ୟ ଏୟାର ଚିଫ୍‌ମାର୍ଶାଲ ଏସ୍. ପି. ତ୍ୟାଗୀ ଏବଂ ତାଙ୍କ ଭାଇ ସଞ୍ଜୀବ, ସଂଦୀପ ଓ ଡୋକ୍ସା ତ୍ୟାଗୀଙ୍କ ବିରୁଦ୍ଧରେ ପ୍ରମାଣ ପାଇ ସେମାନଙ୍କୁ ଗିରଫ କରି ମୋକଦ୍ଦମା ଦାୟର କରିଛନ୍ତି ।

ଏହି ସମୟରେ ଲେଫ୍‌ଟନାଣ୍ଟ ଜେନେରାଲ ଏସ୍. କେ. ସାହାଣୀଙ୍କୁ ସୈନ୍ୟମାନଙ୍କ ନିମନ୍ତେ ଉଦ୍ଦିଷ୍ଟ ଖାଦ୍ୟପଦାର୍ଥ ଓ ଅନ୍ୟାନ୍ୟ ସାମଗ୍ରୀର ବେଆଇନ କାରବାର ଅଭିଯୋଗରେ ଦଣ୍ଡିତ କରାଯାଇଛି । ଗୋଟିଏ ବର୍ଷ ଭିତରେ ପ୍ରତିରକ୍ଷା ବାହିନୀର ୪ ଜଣ ଅତି ଉଚ୍ଚପଦସ୍ଥ ଅଫିସର ଦୁର୍ନୀତି ଅଭିଯୋଗରେ ଦଣ୍ଡିତ ହେବା ଭାରତୀୟ ସୈନ୍ୟବାହିନୀର ମେରୁଦଣ୍ଡକୁ ଦୋହଲାଇ ଦେଇଛି ।

ଡିସେମ୍ବର ୨୦୧୩ରେ ପୁନା କାଣ୍ଟନମେଣ୍ଟରେ ପ୍ରତିରକ୍ଷା ବାହିନୀ ଜମି କଳ୍ପତରୁ ବିଲଡରଙ୍କୁ ହସ୍ତାନ୍ତର କରିବା ଚକ୍ରାନ୍ତ ଅଭିଯୋଗରେ ପୂର୍ବତନ ଆର୍ମି ଭାଇସ୍ ଚିଫ୍ ଲେଫ୍‌ଟନାଣ୍ଟ ଜେନେରାଲ ନୋବଲ ଥମ୍ବୁରାଜଙ୍କ ବିରୁଦ୍ଧରେ ସି.ବି.ଆଇ. ମାମଲା ଦାୟର କରିଛି । ଏହି କଳ୍ପତରୁ ବିଲ୍‌ଡରକୁ ପ୍ରତିରକ୍ଷା ସାମଗ୍ରୀ ଉତ୍ପାଦନର ପୂର୍ବତନ ମନ୍ତ୍ରୀ ରାଓ ଇନ୍ଦରଜିତ୍ ସିଂ ଓ ପୂର୍ବତନ ସେନାମୁଖ୍ୟ ଜେନେରାଲ ଦୀପକ କାପୁର ବମ୍ବେର କାଣ୍ଡାଭାଲି ଅଞ୍ଚଳରେ ଏକ ମୂଲ୍ୟବାନ ପ୍ରତିରକ୍ଷା ଜମି ହଡ଼ପ କରିବାରେ ସାହାଯ୍ୟ କରିଥିବା ଅଭିଯୋଗରେ ସି.ବି.ଆଇ.ଏକ ମାମଲା ଦାୟର କରିବାକୁ ପ୍ରସ୍ତୁତ ଚଳାଇଛନ୍ତି । ବମ୍ବେର ଆଦର୍ଶ ହାଉସିଂ ସ୍କାଣ୍ଡାଲ ମାମଲାରେ ଦୁଇଜଣ ପୂର୍ବତନ ସେନାମୁଖ୍ୟ ଓ ଜଣେ ନୌସେନା ମୁଖ୍ୟଙ୍କ ସଂପୃକ୍ତି ଜଣାପଡ଼ିବା ପରେ ଭାରତରେ ସର୍ବତ୍ର ଜନମାନସରେ ସେନାବାହିନୀ ଯେ ଚରମ ଦୁର୍ନୀତିଗ୍ରସ୍ତ ହେଲାଣି ଏଭଳି ଧାରଣା ସୃଷ୍ଟି ହୋଇଛି ।

ପ୍ରତିରକ୍ଷା ବାହିନୀର ଉପରସ୍ତରରେ ଏଭଳି ଦୁର୍ନୀତିର ବହୁଘଟଣା ଦୃଷ୍ଟିକୁ ଆସିଛି। କିନ୍ତୁ ଏହା ଯେ ତଳସ୍ତରରେ ଆହୁରି ବ୍ୟାପକ ହେଉଛି, ଏହାର ଏକ ସଦ୍ୟ ଉଦାହରଣ ୪ ଡିସେମ୍ବର ୨୦୧୩ ମସିହାରେ ଟାଇମ୍ସ ଅଫ୍ ଇଣ୍ଡିଆରେ ପ୍ରକାଶିତ ଏକ ଆଲେଖ୍ୟରୁ ଜଣାପଡ଼େ। ସୈନ୍ୟବାହିନୀରେ ଜବାନ୍ ଭାବେ ଯୋଗଦେଇ ମାତୃଭୂମିକୁ ରକ୍ଷା କରିବା ପାଇଁ ଗଡ଼ୱାଲ ହିଲ୍‌ର ଜଣେ ଯୁବକ ସବୁଦୃଷ୍ଟିରୁ ଯୋଗ୍ୟ ବିବେଚିତ ହୋଇଥିଲେ ମଧ୍ୟ ଏକ ଲକ୍ଷ ପାଞ୍ଚ ହଜାର ଟଙ୍କା ଲାଞ୍ଚ ଦେଇ ନପାରିବାରୁ ସୈନ୍ୟବାହିନୀରେ ଭର୍ତ୍ତି ହୋଇପାରିଲା ନାହିଁ। କେବଳ ଗଡ଼ୱାଲର ଏହି ଯୁବକ ନୁହନ୍ତି, ଭାରତର ବିଭିନ୍ନ ସ୍ଥାନରେ ସୈନ୍ୟବାହିନୀରେ ଯୋଗଦେବାବେଳେ ଅନେକ ସ୍ଥାନରେ ରିକ୍ରୁଟିଙ୍ଗ୍ ଅଫିସରମାନେ ଘୁଷ୍ ନେଉଥିବାର ଅଭିଯୋଗମାନ ପ୍ରକାଶିତ ହେଉଛି। ଷ୍ଟେଟ୍ସମ୍ୟାନରେ ପ୍ରକାଶିତ ଏକ ସମ୍ବାଦରୁ ଜଣାଯାଏ ଯେ ଆର୍ମି ମେଡିକାଲ କୋରର ଜଣେ ମେଜର ମେଡିକାଲ ଫିଟ୍‌ନେସ୍ ସାର୍ଟିଫିକେଟ ଦେବାପାଇଁ ଉତ୍କୋଚ ଦାବି କରି ଧରା ପଡ଼ିଛନ୍ତି।

୧୨ ଜୁଲାଇ ୨୦୧୩ରେ ଇଣ୍ଡିଆନ୍ ଡିଫେନ୍ସ ରିଭ୍ୟୁରେ ପ୍ରକାଶିତ ଏକ ପ୍ରବନ୍ଧରେ ପୂର୍ବତନ ଡେପୁଟି ଚିଫ୍ ଅଫ୍ ଆର୍ମି ଷ୍ଟାଫ୍ ଲେଫ୍ଟନାଣ୍ଟ ଜେନେରାଲ ହରୱନ୍ତ ସିଂହ ଲେଖିଛନ୍ତି ଯେ ପ୍ରତିରକ୍ଷା ବାହିନୀରେ କେତେକ ଉଚ୍ଚପଦସ୍ଥ ଅଫିସର ନିଜର ଚାଲିଚଳନ, ଚରିତ୍ର, ବ୍ୟବହାର ଦ୍ୱାରା ଉଚ୍ଚ ଆଦର୍ଶ ସୃଷ୍ଟି ନକରି ଲୋଭ, ସ୍ୱାର୍ଥପରତା ଓ ବିଳାସପୂର୍ଣ୍ଣ ଜୀବନକୁ ଆଦରି ନେଇ ସାମରିକ ବାହିନୀର ମର୍ଯ୍ୟାଦାକୁ ଭୂଲୁଣ୍ଠିତ କରୁଛନ୍ତି। ଏହିଭଳି ଆଚରଣ ଯୁବପିଢ଼ିକୁ ଦେଶପ୍ରେମରେ ଉଦ୍‌ବୁଦ୍ଧ କରିପାରୁନାହିଁ ଏବଂ ବର୍ତ୍ତମାନ ସାମରିକ ବାହିନୀରେ ଅନ୍ୟୁନ ବାର ହଜାର ଅଫିସର ପଦବୀ ଖାଲି ପଡ଼ିଛି।

୧୯୭୧ ବାଂଲାଦେଶ ଯୁଦ୍ଧ ସମୟରେ କେତେକ ଆର୍ମି ଅଫିସର ବାଂଲାଦେଶରେ ବ୍ୟାପକ ଲୁଟତରାଜ କରିଥିଲେ। ଜଣେ ମେଜର ଜେନେରାଲଙ୍କ ଅଧକ୍ଷତାରେ କମିଟି ଗଠିତ ହୋଇ ଏହି ଅଫିସରମାନଙ୍କ ରହିବା ସ୍ଥଳ ଖାନତଲାସ ହେବାରୁ କାର, ରେଫ୍ରିଜେରେଟର, ଦାମୀ କାରପେଟମାନ ଉଦ୍ଧାର କରାଯାଇ ତାହା ଫେରାଇ ଦିଆଯାଇଥିଲା। ଆମର ସୈନ୍ୟବାହିନୀ ଶ୍ରୀଲଙ୍କାରେ ଏଲ.ଟି.ଟି.ଇ.ଙ୍କ ବିରୁଦ୍ଧରେ ଲଢ଼ାଇ କରୁଥିବା ସମୟରେ ସେଠାରେ ମଧ୍ୟ ଲୁଟତରାଜରେ ଲିପ୍ତ ଥିଲେ ବୋଲି ଅଭିଯୋଗ ହୋଇଥିଲା। ୧୯୮୪ ମସିହା ଅପରେସନ୍ ବ୍ଲୁ ଷ୍ଟାର ପରେ

ରାମଗଡ଼ରେ ଥିବା ଶିଖ୍ ରେଜିମେଣ୍ଟର ସୈନ୍ୟମାନେ ସେମାନଙ୍କର କମାଣ୍ଡିଙ୍ଗ ଅଫିସରଙ୍କୁ ହତ୍ୟାକରି ଦିଲ୍ଲୀ ଉପରେ ଆକ୍ରମଣ କରିବାକୁ ଅଗ୍ରସର ହୋଇଥିଲେ। କିନ୍ତୁ ସେହି ଆକ୍ରମଣ ଯୋଜନାକୁ ପ୍ରତିହତ କରିଦିଆଯାଇଥିଲା। ଏବେ ଅଫିସର ଓ ଯବାନମାନଙ୍କ ମଧରେ ବିଭିନ୍ନ ସ୍ଥାନରେ ଗଣ୍ଡଗୋଳ ହେଉଥିବାର ସମ୍ବାଦମାନ ପ୍ରକାଶିତ ହେଉଛି। ଯବାନମାନେ ନିଜ ଅଫିସରଙ୍କୁ ଗୁଳିକରି ହତ୍ୟା କରିବାର ନଜିରମାନ ଦୃଷ୍ଟିକୁ ଆସୁଛି। ଏଭଳି ବିଶୃଙ୍ଖଳାର ନିରାକରଣ ପାଇଁ ସରକାର ସଚେଷ୍ଟ ହେବା ଆବଶ୍ୟକ।

ଆର୍ମି ଅଫିସର ଓ ଜବାନଙ୍କ ଯୁଦ୍ଧକ୍ଷେତ୍ରରେ ଲଢ଼ିବା ପାଇଁ ମନୋବଳ ଓ ଶୃଙ୍ଖଳା ଅତ୍ୟନ୍ତ ଜରୁରୀ। ଆମ ଦେଶରେ ପ୍ରାୟ ୧୩ ଲକ୍ଷ ଆର୍ମି ଅଫିସର ଓ ଜବାନ ଅଛନ୍ତି। ଦେଶର ସୁରକ୍ଷା ସେମାନଙ୍କ ହାତରେ। ଚାକିରିରେ ନିଯୁକ୍ତି ପାଇଲାବେଳେ ପ୍ରାଣବଳି ଦେଇ ଦେଶକୁ ରକ୍ଷା କରିବାକୁ ସେମାନେ ଶପଥ ନିଅନ୍ତି। ଏହି ଶପଥକୁ ସେମାନେ ମନେରଖି ଆଜି ପର୍ଯ୍ୟନ୍ତ ଦେଶମାତୃକାର ସେବା କରି ଆସୁଛନ୍ତି। ଦୁର୍ନୀତି ଯେଭଳି ଭାବରେ ସାମରିକ ବାହିନୀରେ ବ୍ୟାପୁଛି, ଶୃଙ୍ଖଳାଭଙ୍ଗ ଘଟଣାମାନ ଯେଭଳି ଭାବେ ଘଟୁଛି ତାହା ସୈନ୍ୟବାହିନୀର ମର୍ଯ୍ୟାଦା ହାନି କରିବା ସଂଗେ ସଂଗେ, ଦେଶର ସୁରକ୍ଷାରେ ଘୋର ଆଞ୍ଚ ଆଣିବ ବୋଲି ମନରେ ଆଶଙ୍କା ଜାତ ହୁଏ।

*ସମାଜ, ୧୪.୧.୨୦୧୪*

# କିସ୍ ଓଡ଼ିଶାକୁ ବିଶ୍ୱଦରବାରରେ ଗର୍ବିତ କରିଛି

ଚଳିତ ମାସ ୧୬ ତାରିଖ ଦିନ ଆମେରିକାର ଲୋକପ୍ରିୟ ଟେଲିଭିଜନ ସଂସ୍ଥା ପି.ବି.ଏସ୍. କଳିଙ୍ଗ ଇନଷ୍ଟିଚ୍ୟୁଟି ଅଫ୍ ସୋସିଆଲ ସାଇନ୍ସେସ୍ (କିସ୍) ଏକ ଆଦର୍ଶ ଅନୁଷ୍ଠାନ ବୋଲି ଚିତ୍ରିତ କରି ଏକ ତଥ୍ୟଭିତ୍ତିକ ବିବରଣୀ ପ୍ରସାରଣ କରିଛନ୍ତି। ଏହାକୁ ଆମେରିକା ଓ ୟୁରୋପର ବିଭିନ୍ନ ଦେଶରେ ଅନ୍ୟୁନ କୋଡ଼ିଏ କୋଟି ଲୋକ ଦେଖିବାର ସୁଯୋଗ ପାଇଛନ୍ତି। ଏହି କାର୍ଯ୍ୟକ୍ରମ ବିଶ୍ୱରେ ଓଡ଼ିଶାର ମର୍ଯ୍ୟାଦାକୁ ବୃଦ୍ଧି କରିବାରେ ନିଶ୍ଚିତ ଭାବେ ସହାୟକ ହୋଇଛି। ଚଳିତବର୍ଷ ଫେବୃୟାରୀ ୨୬ ତାରିଖରେ ପି.ବି.ଏସ୍.ର ସ୍ୱତନ୍ତ୍ର ପ୍ରତିନିଧି ଫ୍ରେଡ୍ ଡି ସାନ୍ ଲାଜେରୋ କିସ୍ ପରିଦର୍ଶନରେ ଆସିଥିଲେ। ଏଠାରେ ୨୦,୦୦୦ ଗରିବ ଆଦିବାସୀ ଛାତ୍ରଛାତ୍ରୀ ନିଃଶୁଳ୍କ ପ୍ରାଥମିକ ସ୍ତରରୁ ସ୍ନାତକୋତ୍ତର ଶ୍ରେଣୀ ପର୍ଯ୍ୟନ୍ତ ଶିକ୍ଷା ଲାଭ କରିବାର ସୁଯୋଗ ପାଉଛନ୍ତି ଏବଂ ସେମାନଙ୍କୁ ପାଠ ପଢ଼ିବା ସହିତ ଧନ୍ଦାମୂଳକ ତାଲିମ ପ୍ରଦାନ କରାଯାଉଥିବାରୁ ସେମାନେ ଆତ୍ମନିର୍ଭରଶୀଳ ହୋଇ ଜୀବନ ଯାପନ କରିବା ସମ୍ଭବପର ହୋଇପାରୁଛି ସେ ଏହା ଦେଖି ଆଶ୍ଚର୍ଯ୍ୟାନ୍ୱିତ ହୋଇଥିଲେ। ଏହି ସୁଚିନ୍ତିତ କାର୍ଯ୍ୟକ୍ରମ ଦାରିଦ୍ର୍ୟ ଦୂରୀକରଣରେ ବିଶେଷ ସହାୟକ ହୋଇଛି। ପୂର୍ବରୁ ଆମେରିକା ଓ ଅନ୍ୟାନ୍ୟ ୟୁରୋପୀୟ ଦେଶମାନଙ୍କରେ ଓଡ଼ିଶାର ଦାରିଦ୍ର୍ୟର ନଗ୍ନଚିତ୍ର ଯଥା—ଅଭାବରୁ ପିଲା ବିକ୍ରି, ବନିତା ନିଜ ନଣନ୍ଦ ଫାନ୍ସି ପୁଞ୍ଜକୁ ବିକ୍ରି କରିବା ଭଳି ଘଟଣାମାନ ପ୍ରଚାରିତ ହୋଇ ଓଡ଼ିଶାବାସୀଙ୍କର ଦାରିଦ୍ର୍ୟ ଓ ଦୟନୀୟ ଅବସ୍ଥା ପ୍ରଦର୍ଶିତ ହୋଇଛି। ପ୍ରଥମଥର ପାଇଁ କିସ୍‌କୁ ଏକ ଅନୁକରଣୀୟ ଅନୁଷ୍ଠାନ ଭାବରେ ବର୍ଣ୍ଣନା କରାଯାଇ ଆଖିଦେଖା ବିବରଣୀ ପ୍ରଦାନ କରାଯାଇଛି।

ଲାଜେରୋ କିସ୍‌ର ପ୍ରତିଷ୍ଠାତା ଡକ୍ଟର ଅଚ୍ୟୁତ ସାମନ୍ତଙ୍କ ସହିତ ଆଲୋଚନା ବେଳେ ଆହୁରି ବିସ୍ମିତ ହୋଇଥିଲେ ଯେ ଏକ ନିମ୍ନ ମଧ୍ୟବିତ୍ତ ପରିବାରରେ ଜନ୍ମଗ୍ରହଣ କରି ଚାରିବର୍ଷ ବୟସରେ ନିଜ ପିତାଙ୍କୁ ହରାଇ ଦାରିଦ୍ର୍ୟର କଷାଘାତ ଭିତରେ ଶିକ୍ଷାଲାଭ କରି ଉତ୍କଳ ବିଶ୍ୱବିଦ୍ୟାଳୟରୁ ପ୍ରଥମ ଶ୍ରେଣୀରେ ରସାୟନ ଶାସ୍ତ୍ରରେ ସ୍ନାତକୋତ୍ତର ଶିକ୍ଷା ସମାପ୍ତ ପରେ ଦଶବର୍ଷକାଳ ଅଧ୍ୟାପକ ଜୀବନ ବିତାଇ ନିଜ

ଆଦର୍ଶରେ ଅବିଚଳିତ ଭାବେ ଗତିକରି ୧୯୯୩ ମସିହାରେ ମାତ୍ର ୧୨୫ ଜଣ ଛାତ୍ରଛାତ୍ରୀଙ୍କୁ ନେଇ ୫ ହଜାର ଟଙ୍କାର ପୁଂଜିରେ କିସ୍ ଆରମ୍ଭ କରିଥିଲେ ଯାହାକି ଅତ୍ୟନ୍ତ କ୍ଷିପ୍ର ଗତିରେ ଆଗେଇ ଚାଲିଛି। ଭାରତରେ ସ୍ୱାମୀ ବିବେକାନନ୍ଦ, ବିଶ୍ୱକବି ରବୀନ୍ଦ୍ରନାଥ, ମହାଯୋଗୀ ଶ୍ରୀ ଅରବିନ୍ଦ, ଜାତିର ଜନକ ମହାତ୍ମା ଗାନ୍ଧି ପ୍ରଭୃତି ମନୀଷୀମାନେ ଶିକ୍ଷା ସମସ୍ତଙ୍କୁ ସ୍ୱାବଲମ୍ବୀ କରୁ ଏବଂ ଏହା ମୂଲ୍ୟବୋଧଭିତ୍ତିକ ହେଉ ଯେଉଁ ଆଦର୍ଶ କଥା ଚିନ୍ତା କରିଥିଲେ ତାହା ଡକ୍ଟର ସାମନ୍ତ କାର୍ଯ୍ୟରେ ପରିଣତ କରିପାରିଛନ୍ତି ଏହା ତାଙ୍କର ହୃଦବୋଧ ହୋଇଥିଲା। ଗଭୀର ଆତ୍ମବିଶ୍ୱାସ ସହିତ ଶିକ୍ଷାହିଁ ବିକାଶର ଚାବିକାଠି ଏହା ଉପଲବ୍ଧି କରି ଡକ୍ଟର ସାମନ୍ତ କିସ୍‌କୁ ପରିଚାଳନା କରୁଛନ୍ତି।

ବିଶିଷ୍ଟ ଶିକ୍ଷାବିତ୍ ଇଭାନ୍ ଇଲିଚ୍ ଦୁଇଟି ପୁସ୍ତକ 'ଡିସକୁଲିଙ୍ଗ୍ ସୋସାଇଟି' ଓ 'ସ୍କୁଲ ଇଜ୍ ଡେଡ୍'ରେ ପ୍ରଚଳିତ ଶିକ୍ଷା ବ୍ୟବସ୍ଥାକୁ ସମାଲୋଚନା କରିଥିଲେ। ତଥାପି ଶିକ୍ଷା ବ୍ୟବସ୍ଥାର କୌଣସି ଆଖିଦୃଶିଆ ପରିବର୍ତ୍ତନ ହୋଇପାରି ନାହିଁ। ଆମ ରାଜ୍ୟରେ ଏବେବି ୩୭ ପ୍ରତିଶତ ଲୋକ ନିରକ୍ଷର ଓ ଆଦିବାସୀମାନଙ୍କ ମଧ୍ୟରେ ଏହାର ପରିମାଣ ୬୨ ପ୍ରତିଶତ। ଉତ୍କଟ ଦାରିଦ୍ର୍ୟ, ଅଭାବ ଅନଟନ ଯୋଗୁଁ ଆଦିବାସୀ ପିଲାମାନେ ପଢ଼ିବାକୁ ସମର୍ଥ ହୋଇପାରୁ ନାହାନ୍ତି, ଡକ୍ଟର ସାମନ୍ତ ଏହା ମର୍ମେ ମର୍ମେ ଅନୁଭବ କରି କିସ୍ ପ୍ରତିଷ୍ଠା କରିଛନ୍ତି ଯାହା ଆଜି ଆନ୍ତର୍ଜାତିକ ସ୍ତରରେ ଏକ ଆଦର୍ଶ ଅନୁଷ୍ଠାନ ଭାବରେ ସ୍ୱୀକୃତି ଲାଭ କରିଛି ଓ ଡକ୍ଟର ସାମନ୍ତଙ୍କୁ ସମ୍ମାନ ଆଣିଦେଇଛି।

କିସ୍‌କୁ ପରିଦର୍ଶନ କରି ବିଦେଶର ବହୁ ମାନ୍ୟଗଣ୍ୟ ବ୍ୟକ୍ତି ଡକ୍ଟର ସାମନ୍ତଙ୍କୁ ତାଙ୍କର ଏହି ଅସାମାନ୍ୟ ଉଦ୍ୟମ ଯୋଗୁଁ ଭୂୟସୀ ପ୍ରଶଂସା କରିଛନ୍ତି ଏବଂ ବିଶ୍ୱରେ ଏଭଳି ଅନୁଷ୍ଠାନ ବିରଳ ଓ ସାମନ୍ତଙ୍କ ପରି ନିଃସ୍ୱାର୍ଥପର ବ୍ୟକ୍ତି କ୍ୱଚିତ ଦେଖାଯାଆନ୍ତି ବୋଲି ମନ୍ତବ୍ୟରେ ଲିପିବଦ୍ଧ କରିଛନ୍ତି। ଜୁଲାଇ ୨ ତାରିଖରେ 'କାଦମ୍ବିନୀ' ପତ୍ରିକାର ସ୍ୱନକ୍ଷତ୍ର ଉତ୍ସବରେ ଯୋଗଦେବାକୁ ଆସିଥିବା ବଂଗଳା ସାହିତ୍ୟର ବିଶିଷ୍ଟ ଲେଖକ ଓ କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ଶ୍ରୀ ସମରେଶ ମଜୁମଦାର କିସ୍ ଅନୁଷ୍ଠାନକୁ ପରିଦର୍ଶନ କଲାପରେ କିସ୍ ଏକ ସ୍ୱର୍ଗ ବୋଲି କହିଥିଲେ। ଜୁଲାଇ ୧୪ ତାରିଖ ଦିନ ପୁରୀ ଗୋବର୍ଦ୍ଧନ ପୀଠର ପୀଠାଧୀଶ ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ ସ୍ୱାମୀ ନିଶ୍ଚଳାନନ୍ଦ ସରସ୍ୱତୀ କିସ୍‌ର ଅନ୍ତେବାସୀମାନଙ୍କୁ ଉଦ୍‌ବୋଧନ ଦେଇ କହିଥିଲେ ଯେ ଡକ୍ଟର ସାମନ୍ତଙ୍କ ଭଳି କର୍ମଯୋଗୀ ଆମ ଦେଶରେ ବିରଳ। ହଜାର

ହଜାର ବନବାସୀ ଦରିଦ୍ର ପିଲାଙ୍କୁ ଶିକ୍ଷାଦାନର ସୁଯୋଗ ପ୍ରଦାନ କରି ସେ ଦେଶର ଯେଉଁ ଅଶେଷ କଲ୍ୟାଣ ସାଧନ କରୁଛନ୍ତି ତାହା ଅନ୍ୟମାନଙ୍କର ଅନୁକରଣୀୟ ବୋଲି ସେ କହିଥିଲେ।

ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ସତ୍ୟବାଦୀଠାରେ ଏକ ବନବିଦ୍ୟାଳୟ ସ୍ଥାପନ କରି ସେଠାରେ ଶିକ୍ଷା ସହିତ ଧନ୍ଦାମୂଳକ ତାଲିମ ପ୍ରଦାନ କରୁଥିଲେ ଏବଂ ଛାତ୍ରମାନଙ୍କୁ ସ୍ୱାବଲମ୍ବୀ ହେବାକୁ ପ୍ରେରଣା ଯୋଗାଉଥିଲେ। ତାଙ୍କର ପଦାଙ୍କ ଅନୁସରଣ କରି ଡକ୍ଟର ସାମନ୍ତ କିସ୍ ଅନୁଷ୍ଠାନକୁ ଗଢ଼ିତୋଳିଛନ୍ତି। ତଫାତ୍ ହେଉଛି ଡକ୍ଟର ସାମନ୍ତ ଓଡ଼ିଶା ଓ ପାଖାପାଖି ରାଜ୍ୟ ଛତିଶଗଡ଼, ଝାଡ଼ଖଣ୍ଡ, ପଶ୍ଚିମବଙ୍ଗ, ବିହାର ଓ ଅନ୍ୟାନ୍ୟ ଅଞ୍ଚଳରୁ କେବଳ ଆଦିବାସୀ ଛାତ୍ରଛାତ୍ରୀ ଯେଉଁମାନେ କି ସମାଜରେ ସବୁଠାରୁ ଅବହେଳିତ ସ୍ତରରେ ଅଛନ୍ତି ସେମାନଙ୍କୁ ନିଃଶୁଳ୍କ ପ୍ରାଥମିକ ସ୍ତରରୁ ସ୍ନାତକୋତ୍ତର ପର୍ଯ୍ୟନ୍ତ ଶିକ୍ଷା ପ୍ରଦାନର ବ୍ୟବସ୍ଥା କରିଛନ୍ତି। ଚଳିତବର୍ଷ ଦିଲ୍ଲୀରେ କିସ୍‌ର ଏକ ଶାଖା ପ୍ରତିଷ୍ଠା ହୋଇଛି। କିସ୍‌ର ଅନ୍ୟ ଏକ ଶାଖା ଛତିଶଗଡ଼ ରାଜ୍ୟର ବସ୍ତର ଅଞ୍ଚଳରେ ନେଶନାଲ ମିନେରାଲ ଡେଭେଲପମେଣ୍ଟ କର୍ପୋରେଶନ ସହାୟତାରେ ପ୍ରତିଷ୍ଠା ହେବାର ନିଷ୍ପତ୍ତି ହୋଇଛି। ଏନ୍.ଏମ୍.ଡି.ସି. କିସ୍ ପ୍ରତିଷ୍ଠା ପାଇଁ ୩୦ ଏକର ଜମି ଓ ସମସ୍ତ ଆର୍ଥିକ ସହାୟତା ଯୋଗାଇ ଦେବେ ବୋଲି ରାଜି ହୋଇଛନ୍ତି। ଭାରତର ଅନ୍ୟାନ୍ୟ ରାଜ୍ୟ ଯଥା—ଝାଡ଼ଖଣ୍ଡ, ବିହାର, ଉତ୍ତର ପ୍ରଦେଶ ଓ କେରଳ ପ୍ରଭୃତି ରାଜ୍ୟମାନେ କିସ୍‌ର ଶାଖାମାନ ତାଙ୍କ ରାଜ୍ୟମାନଙ୍କରେ ପ୍ରତିଷ୍ଠା କରିବାକୁ ଡକ୍ଟର ସାମନ୍ତଙ୍କୁ ଅନୁରୋଧ କରିଛନ୍ତି। ଓଡ଼ିଶାରେ ଚଳିତ ବର୍ଷ ଅନ୍ୟୁନ ୪ଟି ଜିଲ୍ଲାରେ କିସ୍‌ର ଶାଖାମାନ ପ୍ରତିଷ୍ଠା କରାଯିବ ବୋଲି ଡକ୍ଟର ସାମନ୍ତ ଉଦ୍ୟମ କରୁଛନ୍ତି।

କିସ୍‌ର ପ୍ରଗତିରେ ଅଭିଭୂତ ହୋଇ ବିଭିନ୍ନ ଗଣମାଧମମାନେ ଡକ୍ଟର ସାମନ୍ତଙ୍କ ଉଦ୍ୟମକୁ ଉଚ୍ଛ୍ୱସିତ ପ୍ରଶଂସା କରିବାରେ ଲାଗିଛନ୍ତି। ଆମେରିକାର 'ଟାଇମ୍ସ' ମାଗାଜିନ୍, ଲଣ୍ଡନର 'ଟାଇମ୍ସ' ମାଗାଜିନ, ଦିଲ୍ଲୀରୁ ପ୍ରକାଶିତ 'ଉଦୟ ଇଣ୍ଡିଆ' (ସେପ୍ଟେମ୍ବର ୨୦୧୨), ବମ୍ବେରୁ ପ୍ରକାଶିତ ହେଉଥିବା 'ରିଡ଼ର୍ସ ଡାଇଜେଷ୍ଟ' (ଫେବୃୟାରୀ ୨୦୧୩) କିସ୍‌ର କ୍ରମାନ୍ୱୟ ସଫଳତା ଏବଂ ଏଠାରେ ରହୁଥିବା ଛାତ୍ରଛାତ୍ରୀମାନଙ୍କର ଶୃଙ୍ଖଳାଜ୍ଞାନ ଓ ଚରିତ୍ରବତ୍ତାକୁ ଭୂୟସୀ ପ୍ରଶଂସା କରିଛନ୍ତି। ଡକ୍ଟର ସାମନ୍ତ ଶିକ୍ଷା ସହିତ ଛାତ୍ରଛାତ୍ରୀମାନଙ୍କୁ କ୍ରୀଡ଼ାରେ ଭାଗନେବାକୁ ଯେଉଁ ଉତ୍ସାହ ପ୍ରଦାନ କରୁଛନ୍ତି ତାହା

କୌଣସିଠାରେ ଦେଖାଯାଏ ନାହିଁ। ଏହି ଅନୁଷ୍ଠାନର ଛାତ୍ରଛାତ୍ରୀମାନେ ବିଭିନ୍ନ କ୍ରୀଡ଼ାରେ ଓଡ଼ିଶାରୁ ପ୍ରତିନିଧିତ୍ୱ କରି କୃତିତ୍ୱ ଅର୍ଜନ କରୁଛନ୍ତି। ଆଦିବାସୀ ଅଞ୍ଚଳର ଯୁବକ ଯୁବତୀମାନେ ଜୀବିକା ଉପାର୍ଜନର କୌଣସି ରାହା ନପାଇ ନକ୍ସଲ ଆନ୍ଦୋଳନରେ ଯୋଗଦେଇ ମାଓବାଦୀ ପାଲଟି ଯାଉଛନ୍ତି। କିନ୍ତୁ ଡକ୍ଟର ସାମନ୍ତଙ୍କ କିସ୍ ଅନୁଷ୍ଠାନର ଆଦିବାସୀ ଛାତ୍ରଛାତ୍ରୀମାନେ ସମାଜର ମୁଖ୍ୟ ସ୍ରୋତରେ ସାମିଲ ହୋଇ ଏକ ଗଣତନ୍ତ୍ର ରାଷ୍ଟ୍ରରେ ସମ୍ମାନର ସହିତ ଜୀବନଯାପନ କରିବାର ସୁଯୋଗ ପାଉଛନ୍ତି।

ଆମ ରାଜ୍ୟରେ ସଫଳତାକୁ ଲୋକେ ଈର୍ଷା କରନ୍ତି। ନିଜ ବ୍ୟତୀତ ଅନ୍ୟ ସମସ୍ତଙ୍କୁ ଅପାରଗ ଭାବି ସନ୍ଦେହ ଚକ୍ଷୁରେ ଦେଖନ୍ତି। ଓଡ଼ିଶାରେ କର୍ମସଂସ୍କୃତି ପ୍ରାୟ ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ। ଆମ ରାଜ୍ୟରେ ଦାରିଦ୍ର୍ୟ ଲୋକମାନଙ୍କୁ କେବଳ ଭାଗ୍ୟବାଦୀ କରିଛି ତାହା ନୁହେଁ ଅନ୍ଧବିଶ୍ୱାସୀ ମଧ୍ୟ କରିଦେଇଛି। କିନ୍ତୁ ଡକ୍ଟର ଅଚ୍ୟୁତ ସାମନ୍ତଙ୍କ କ୍ଷେତ୍ରରେ ଏହାର ବ୍ୟତିକ୍ରମ ଦେଖାଯାଏ। ଜୀବନରେ ଏକ ସଫଳ ବ୍ୟକ୍ତି ହୋଇଥିଲେ ମଧ୍ୟ ସେଥିପାଇଁ ଡକ୍ଟର ସାମନ୍ତ କେବେହେଲେ ଗର୍ବ ଅନୁଭବ କରିନାହାନ୍ତି। ଅସାଧାରଣ ଧୈର୍ଯ୍ୟ, ଅସୀମ କର୍ତ୍ତବ୍ୟନିଷ୍ଠା, ଦୃଢ଼ ମନୋବଳ ଯୋଗୁଁ ସେ ସଫଳତାର ସିଡ଼ି ପାହାଚ ପରେ ପାହାଚ ଚଢ଼ି ଚାଲିଛନ୍ତି। ତାଙ୍କ କାର୍ଯ୍ୟକୁ ଦେଶବିଦେଶରେ ଲୋକେ ପ୍ରଶଂସା କରୁଛନ୍ତି। କିସ୍‌ର ଗୌରବ ଡକ୍ଟର ଅଚ୍ୟୁତ ସାମନ୍ତଙ୍କ ଯୋଗୁଁ ସମ୍ଭବ ହୋଇପାରିଛି। ଓଡ଼ିଶାର ଏକ ଶିକ୍ଷାନୁଷ୍ଠାନ ବିଶ୍ୱ ଦରବାରରେ ପ୍ରଶଂସିତ ହେବା ବୋଧହୁଏ ଏହା ପ୍ରଥମ ଦୃଷ୍ଟାନ୍ତ।

*ସମ୍ବାଦ କଳିକା*

# ଲିବ୍ୟାରେ ଗଦ୍ଦାଫିଙ୍କ ପତନ

କର୍ଣ୍ଣେଲ ଗଦ୍ଦାଫି ରାଷ୍ଟ୍ରପତି ବାରାକ ହୁସେନ୍ ଓବାମାଙ୍କୁ ଏପ୍ରିଲ ୬ ତାରିଖରେ ଲିବ୍ୟାରେ ସାମରିକ କାର୍ଯ୍ୟାନୁଷ୍ଠାନ ବନ୍ଦ କରିବାକୁ ଅନୁରୋଧ କରି ଯେଉଁ ପତ୍ର ଲେଖିଥିଲେ ତାକୁ ବିଚାରକୁ ନେଇ ଏପ୍ରିଲ ୭ ତାରିଖ ଦିନ ଆମେରିକାର ବୈଦେଶିକ ସଚିବ ହିଲାରୀ କ୍ଲିଣ୍ଟନ ଗଦ୍ଦାଫି ଶୀଘ୍ର ଲିବ୍ୟା ଛାଡନ୍ତୁ ଏବଂ ଦେଶରେ ଗଣତନ୍ତ୍ର ଶାସନ ପ୍ରତିଷ୍ଠା କରିବାକୁ ବାଟ ସଫା କରନ୍ତୁ ବୋଲି ଏକ ସାମ୍ବାଦିକ ସମ୍ମିଳନୀରେ ଆହ୍ୱାନ କରିଛନ୍ତି।

ଲିବ୍ୟା ଉତ୍ତର ଆଫ୍ରିକାର ଏକ ପ୍ରମୁଖ ଧନଶାଳୀ ଦେଶ। ଏହି ଦେଶର ଲୋକସଂଖ୍ୟା ପାଖାପାଖି ୬୫ ଲକ୍ଷ। ସେପ୍ଟେମ୍ବର ମାସ ୧ ତାରିଖ ୧୯୬୯ ମସିହାରେ ଲିବ୍ୟାର ଅମିର ଇଦ୍ରିଶ ସାଙ୍ଘାତିକ ଅସୁସ୍ଥତା କାରଣରୁ ତୁର୍କୀରେ ଚିକିତ୍ସିତ ହେଉଥିଲାବେଳେ ୨୭ ବର୍ଷୀୟ କର୍ଣ୍ଣେଲ୍ ମୁଆମାର ମହମ୍ମଦ ଅଲ ଗଦ୍ଦାଫି ଇଜିପ୍ଟର ଅବଦୁଲ ନାସାରଙ୍କ ପରାମର୍ଶରେ ଲିବିୟା ସାମରିକ ବାହିନୀର କେତେଜଣ ମୁଷ୍ଟିମେୟ ଜୁନିୟର ଅଫିସରମାନଙ୍କୁ କରଗତ କରି ଓ ସେମାନଙ୍କ ସହାୟତାରେ ବିଦ୍ରୋହ କରି ଲିବ୍ୟାର ଶାସନ ଗାଦିକୁ ଅକ୍ତିଆର କରିଥିଲେ। ୪୨ ବର୍ଷ ଧରି ଯେଭଳି ନିଷ୍ଠୁର ଭାବରେ ଅତ୍ୟାଚାର କରି ସେ ଶାସନ ଚଳାଇଥିଲେ ତାହା ପୃଥିବୀ ଇତିହାସରେ ବିରଳ। ଗଦ୍ଦାଫି ଜଣେ ହିଂସ୍ର, ନୃଶଂସ ଓ ଉଚ୍ଚାଭିଳାଷୀ ଏକଛତ୍ରବାଦୀ ଶାସକ ଭାବରେ ବିଶ୍ୱରେ ଜଣାଶୁଣା। ତାଙ୍କ ଉଚ୍ଚାଭିଳାଷକୁ ସାକାର କରିବା ପାଇଁ ସେ ଯେକୌଣସି ପନ୍ଥା ଅବଲମ୍ବନ କରିପାରନ୍ତି। ୨୦୦୯ ମସିହା ଫେବୃୟାରୀ ମାସରେ ୫୩ଟି ରାଷ୍ଟ୍ର ବିଶିଷ୍ଟ ଆଫ୍ରିକା ୟୁନିଅନର ଅଧ୍ୟକ୍ଷ ପଦବୀ ପାଇବାକୁ ସେ ଇଟାଲୀର ପ୍ରଧାନମନ୍ତ୍ରୀ ସିଲଭିଓ ବେର୍ଲୁସ୍କୋନିଙ୍କୁ ସୁନ୍ଦରୀ ଯୁବତୀମାନଙ୍କୁ ଉପହାର ଦେଇଥିଲେ ଯେଉଁମାନଙ୍କୁ କି ଗଦ୍ଦାଫିଙ୍କ ବିରୋଧୀ ଆଫ୍ରିକୀୟ ନେତାମାନଙ୍କୁ ତାଙ୍କ ସପକ୍ଷରେ ଆଣିବାକୁ ସହାୟକ ହୋଇଥିଲା। ଏହି ତଥ୍ୟ ପ୍ରକାଶ କରିଛନ୍ତି ୨୦୧୦ରେ ଲିବ୍ୟା ଛାଡି ପଳାୟନ କରିଥିବା ଏକଦା ଗଦ୍ଦାଫିଙ୍କ ମୁଖ୍ୟ ସହଯୋଗୀ ଭାବରେ କାର୍ଯ୍ୟ କରୁଥିବା ମିସମାର। ଗଦ୍ଦାଫିଙ୍କର ପ୍ରଥମ ସ୍ତ୍ରୀର ପୁଅ ମହମ୍ମଦ ଅଲ ଗଦ୍ଦାଫି ଅଧୁନା

ପୋଷ୍ଟ ଓ ଟେଲିକମ୍ ସଂସ୍ଥାର ଚେୟାରମ୍ୟାନ ଅଛନ୍ତ । ଦ୍ୱିତୀୟ ସ୍ତ୍ରୀଙ୍କର ୭ଟି ସନ୍ତାନ । ଏମାନଙ୍କ ମଧ୍ୟରୁ ଜଣେ ମୃତ । ଅନ୍ୟମାନେ ବିଭିନ୍ନ ସଂସ୍ଥାର ମୁଖ୍ୟ ଭାବରେ ଅବସ୍ଥାପିତ । ଗଦ୍ଦାଫିଙ୍କ ପୁଅମାନଙ୍କ ମଧ୍ୟରୁ ସୈଫୁଲ ଇସଲାମ ତାଙ୍କ ଉତ୍ତରାଧିକାରୀ ଅଟନ୍ତ ।

ଲିବ୍ୟାରେ କୌଣସି ସମ୍ବିଧାନ ନାହିଁ । ବିଚାର ବିଭାଗ ସେଠାରେ ପ୍ରତିଷ୍ଠିତ ହୋଇନାହିଁ । ବିଭିନ୍ନ ସହରରେ ଗଦ୍ଦାଫିଙ୍କ ଦ୍ୱାରା ନିଯୁକ୍ତ ହୋଇଥିବା କମିଟିର ସଦସ୍ୟମାନେ ସବୁ ନିଷ୍ପତ୍ତି ନିଅନ୍ତ । ଗଦ୍ଦାଫି ଦେଶ ପରିଚାଳନା କରିବାକୁ ନିଜର ବିଶ୍ୱସ୍ତ ୧୨ ଜଣ ବ୍ୟକ୍ତିଙ୍କର ଏକ କାଉନ୍‌ସିଲ ଗଠନ କରି ସମସ୍ତ ନିଷ୍ପତ୍ତି ନେଇଥାନ୍ତି । ଗଦ୍ଦାଫି ଓ ତାଙ୍କ ପରିବାରର ସଦସ୍ୟମାନଙ୍କର ଉଚ୍ଛୃଙ୍ଖଳ ଆଚରଣ ଅସହ୍ୟ ହୋଇପଡିବାରୁ ଲିବ୍ୟାର ଶାନ୍ତିପ୍ରିୟ ଲୋକମାନେ ଗଦ୍ଦାଫିଙ୍କୁ ଗାଦିରୁ ହଟାଇବାକୁ ଫେବୃୟାରୀ ୧୭ ତାରିଖରୁ ଆନ୍ଦୋଳନ ଆରମ୍ଭ କରିଛନ୍ତି ।

ଲିବ୍ୟାର ୬୯ ବର୍ଷୀୟ ଏକଛତ୍ରବାଦୀ ଶାସକ ମୁଆମାର ମହମ୍ମଦ ଅଲ ଗଦ୍ଦାଫି ନିଜ ଦେଶରେ ଏକ ନାହିଁ ନ ଥିବା ବିଦ୍ରୋହର ସମ୍ମୁଖୀନ ହୋଇଛନ୍ତି । ମୁସ୍ତାଫା ଅବଦୁଲ ଜଲିଲଙ୍କ ନେତୃତ୍ୱରେ ଲକ୍ଷ ଲକ୍ଷ ଲୋକ ଗଦ୍ଦାଫିଙ୍କର ଏକଛତ୍ରବାଦ ଶାସନର ଅବସାନ ଘଟାଇ ଲିବ୍ୟାରେ ଗଣତନ୍ତ୍ର ଶାସନ ପ୍ରତିଷ୍ଠା କରିବାକୁ ମାର୍ଚ୍ଚ ୩ ତାରିଖଠାରୁ ସଶସ୍ତ୍ର ଆନ୍ଦୋଳନ ଚଳାଇ ଆସୁଛନ୍ତି । କର୍ଣ୍ଣେଲ୍ ମୁଆମାର ଗଦ୍ଦାଫି ନିଜ କର୍ତ୍ତୃତ୍ୱରେ ଥିବା ସୈନ୍ୟବାହିନୀଙ୍କ ଦ୍ୱାରା ଏହି ଆନ୍ଦୋଳନକୁ ପ୍ରତିହତ କରିବାକୁ ଆପ୍ରାଣ ଉଦ୍ୟମ କରୁଛନ୍ତି । ଗଦ୍ଦାଫିଙ୍କ ଶାସନ କାଳରେ ତାଙ୍କ ବିରୋଧୀମାନଙ୍କୁ ମୃତ୍ୟୁଦଣ୍ଡ ଦେବା ଦେଶର ଟେଲିଭିଜନରେ ସିଧାପ୍ରସାରଣ କରାଯାଉଥିଲା । ତାଙ୍କ ଅତ୍ୟାଚାର କେବଳ ନିଜ ଦେଶ ଭିତରେ ସୀମିତ ନଥିଲା । ତାଙ୍କ ସରକାରଙ୍କୁ ବିରୋଧ କରୁଥିବା ଲୋକଙ୍କୁ ବିଦେଶରେ ମଧ୍ୟ ଲିବ୍ୟାର ଗୁଇନ୍ଦାମାନେ ହତ୍ୟା କରୁଥିଲେ । ଏକ ଆକଳନରୁ ଜଣାଯାଏ ଯେ ୧୯୮୦ ମସିହାରୁ ୧୯୮୭ ମସିହା ପର୍ଯ୍ୟନ୍ତ ଅନ୍ୟୁନ ୨୫ ଜଣ ଲୋକଙ୍କୁ ଗଦ୍ଦାଫିଙ୍କ ଗୁଇନ୍ଦାମାନେ ବିଦେଶରେ ହତ୍ୟା କରିଥିଲେ । ଗଦ୍ଦାଫିଙ୍କ କଳଙ୍କିତ ଶାସନର ତାଲିକା ବହୁତ ଲମ୍ବା । ସେ ବିଶ୍ୱରେ ଏକ ଭୟର ବାତାବରଣ ସୃଷ୍ଟି କରି ନିଜ କାର୍ଯ୍ୟାବଳୀ ଦ୍ୱାରା ସାଧାରଣରେ ନିନ୍ଦିତ ଓ ଘୃଣିତ ହୋଇଛନ୍ତି । ତାଙ୍କରି ଇଂଗିତରେ ହିଁ ଆମେରିକୀୟ ପାନ୍-ଆମ୍ ଏୟାରଲାଇନ୍ସର ଯାତ୍ରୀବାହୀ ବିମାନକୁ ଲକରବୀରେ ଆତଙ୍କବାଦୀମାନେ ଧ୍ୱଂସ କରିଦେଇଥିଲେ । ସେ ଚୀନ୍, ପାକିସ୍ତାନ ପ୍ରଭୃତି ଦେଶରୁ ଚୋରାରେ ୟୁରାନିୟମ

ଆଦି ସାମଗ୍ରୀ ଓ ଜ୍ଞାନକୌଶଳ ହାସଲ କରି 'ଇସଲାମିକ' ବୋମା ପ୍ରସ୍ତୁତ କରିବାକୁ ଲାଗିପଡିଥିଲେ।

୨୦୦୪ ମସିହାରେ ଲୋକଲୋଚନକୁ ଆସିଥିଲା ଯେ ଲିବ୍ୟା ସରକାର ନିଜ ପାଖରେ ୨୩ ମେଟ୍ରିକ ଟନ୍ ମଷ୍ଟର୍ଡ ଗ୍ୟାସ ଓ ୩୦୦ ମେଟ୍ରିକ ଟନ୍ ପ୍ରିକରସର (Precursor) କେମିକାଲ ମହଜୁଦ ରଖିଛନ୍ତି। ଏହା ନିଃସନ୍ଦେହ ଯେ ସେ ରାସାୟନିକ ଅସ୍ତ୍ରଶସ୍ତ୍ର ନିର୍ମାଣ ପାଇଁ ନିରନ୍ତର ଚେଷ୍ଟା କରୁଥିଲେ। ଗଦାଫିଙ୍କ କ୍ଷମତାଲିପ୍ସା କ୍ୱଚିତ୍ ବ୍ୟକ୍ତିଙ୍କ ନିକଟରେ ଦେଖାଯାଏ। ସେ ଇସଲାମର ଦ୍ୱାହି ଦେଇ ସମଗ୍ର ଆରବ ଦେଶ ଓ ଉତ୍ତର ଆଫ୍ରିକୀୟ ଦେଶଗୁଡିକରେ ଏକଛତ୍ରବାଦୀ ଶାସନ ଚଳାଇବାକୁ ପ୍ରୟାସ କରୁଥିଲେ। ଆମେରିକା, ବ୍ରିଟେନ, ଫ୍ରାନ୍ସ, ଚୀନ ଆଦି ଦେଶ ଗଦାଫିଙ୍କର କ୍ଷମତାଲିପ୍ସା ଓ ଧର୍ମୀୟ ଅସହିଷ୍ଣୁତା ବିଷୟରେ ଭଲଭାବରେ ଅବଗତ ଥିଲେ ମଧ୍ୟ ନିଜ ଦେଶର ସ୍ୱାର୍ଥ ଦୃଷ୍ଟିରୁ ଆରବ ଦେଶଗୁଡ଼ିକର ଜନସାଧାରଣ ସେମାନଙ୍କ ଏକଛତ୍ରବାଦୀ ଶାସକମାନଙ୍କ ଦ୍ୱାରା ନିର୍ଯାତିତ ହେଉଥିଲେ ମଧ୍ୟ ସେଥିପ୍ରତି ଆଖି ବୁଜିଦେଇଥିଲେ।

ଗଦାଫି ଲିବ୍ୟାର ମୁଖ୍ୟ ହେବାପରେ ଆରବ ଦେଶଗୁଡିକ ତୈଳର ଯେଉଁଳି ଉପଯୁକ୍ତ ମୂଲ୍ୟ ପାଇବେ ସେଥିପାଇଁ ଓ.ପି.ଜି.ସି. (ଅରଗାନାଇଜେସନ ଅଫ୍ ପେଟ୍ରୋଲ ଏକ୍ସପୋର୍ଟିଙ୍ଗ କଣ୍ଟ୍ରି) ଗଠନ କରିଥିଲେ ଏବଂ ପଶ୍ଚିମ ଦେଶଗୁଡିକୁ ବହୁ ଅଧିକ ଦରରେ ତୈଳ କିଣିବାକୁ ବାଧ୍ୟ କରିଥିଲେ।

ଲିବ୍ୟା ପୃଥିବୀର ସର୍ବାଧିକ ପେଟ୍ରୋଲିୟମ ଉତ୍ପାଦନକାରୀ ଦେଶମାନଙ୍କ ଭିତରେ ଅନ୍ୟତମ। ପେଟ୍ରୋଲିୟମ ରପ୍ତାନୀକାରୀ ଦେଶମାନଙ୍କ ମଧ୍ୟରେ ତା' ସ୍ଥାନ ୧୦ମରେ ରହିଛି। ଆମେରିକା, ବ୍ରିଟେନ, ଫ୍ରାନ୍ସ, ଚୀନ, ଭାରତ ପ୍ରଭୃତି ଦେଶମାନେ ଲିବ୍ୟାରୁ ତୈଳ ଆମଦାନୀ କରନ୍ତି। ତେଣୁ ଗଦାଫି ତାଙ୍କ ଦେଶ ଭିତରେ ଯାହା କରୁଥିଲେ ମଧ୍ୟ ଏହି ଦେଶଗୁଡିକ ସେଥିପ୍ରତି ଆଖି ବୁଜିଦେଇଥିଲେ। ଗଦାଫି ଲିବ୍ୟାର ତୈଳ ସଂପତ୍ତିକୁ ଉପଯୋଗ କରି ବିପୁଳ ପରିମାଣର ସଂପତ୍ତି ଅର୍ଜନ କରିପାରିଛନ୍ତି। ବର୍ତ୍ତମାନ ସେ ଅନ୍ୟୂନ ୬ ଲକ୍ଷ ୮୦ ହଜାର କୋଟି ଟଙ୍କାର ମାଲିକ ଅଟନ୍ତି। ସାଧାରଣ ଲିବ୍ୟାର ନାଗରିକ ବେକାରୀ ଓ ଦୁଃଖରେ ସମୟ ବିତାଉଥିବାବେଳେ ଗଦାଫି ତାଙ୍କର ପରିବାରବର୍ଗ ଓ ମୁଷ୍ଟିମେୟ ଲିବ୍ୟାର ଶାସକ ବିଳାସବ୍ୟସନରେ ଜୀବନଯାପନ କରୁଛନ୍ତି।

ଟ୍ୟୁନିସିଆ ଓ ଇଜିପ୍ଟର ଗଣତନ୍ତ୍ର ପାଇଁ ଜନ ଆନ୍ଦୋଳନ ପରେ ଏବେ ଲିବ୍ୟାର ପାଳି ପଡିଛି। ଗଦ୍ଦାଫି ଏହି ଆନ୍ଦୋଳନରେ ବିଚଳିତ ହୋଇପଡିଥିଲେ ମଧ୍ୟ ନିଜ ବକ୍ତବ୍ୟରେ ଦୃଢ ରହିଛନ୍ତି। ନିରୀହ ନାଗରିକମାନଙ୍କୁ ସେନାବାହିନୀ ଦ୍ୱାରା ହତ୍ୟା ଓ ଦମନରେ ନିୟୋଜିତ କରିବା ପରେ ସେ ଆମେରିକା ସମେତ ଅନ୍ୟାନ୍ୟ ପାଶ୍ଚାତ୍ୟ ରାଷ୍ଟ୍ରମାନଙ୍କ ରୋଷର ଶିକାର ହୋଇଛନ୍ତି। ପାଶ୍ଚାତ୍ୟ ରାଷ୍ଟ୍ରମାନଙ୍କ ଗୁଇନ୍ଦା ସୂତ୍ରରୁ ପ୍ରାପ୍ତ ଖବର ଥିଲା ଯେ ଗଦ୍ଦାଫି ନିଜ ସୈନ୍ୟବାହିନୀ ଦ୍ୱାରା ୫ ଲକ୍ଷ ବିଦ୍ରୋହୀଙ୍କୁ ହତ୍ୟା କରିବାର ଯୋଜନା ପ୍ରସ୍ତୁତ କରିସାରିଛନ୍ତି। କିନ୍ତୁ ଏହି ଯୋଜନା କାର୍ଯ୍ୟକାରୀ ହେବାରେ ତାଙ୍କୁ ସମର୍ଥନ କରୁଥିବା ବିମାନ ବାହିନୀର ପାଇଲଟ ଓ ଅଧିକାଂଶ ସେନାଧିକାରୀ ସମର୍ଥନ କରି ନ ଥିଲେ। ସାଙ୍ଘାତିକ ମାନବାଧିକାର ଉଲଙ୍ଘନରେ ଲିପ୍ତ ରହିଥିବାରୁ ୧୭ ମାର୍ଚ୍ଚ ଦିନ ଜାତିସଙ୍ଘର ନିରାପତ୍ତା ପରିଷଦରେ ଲିବିୟାକୁ 'ନୋ ଫ୍ଲାଇଙ୍ଗ' ବା ବିମାନ ଉଡାଣ ବର୍ଜିତ କ୍ଷେତ୍ର ଭାବରେ ଘୋଷଣା କରାଗଲା ଏବଂ ଗଦ୍ଦାଫିଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ଆରମ୍ଭ କରାଗଲା। ୧୫ ସଦସ୍ୟ ବିଶିଷ୍ଟ ଜାତିସଙ୍ଘ ନିରାପତ୍ତା ପରିଷଦର ୧୦ଟି ଦେଶ ଏହି ପ୍ରସ୍ତାବକୁ ସମର୍ଥନ କରିଥିଲେ ଏବଂ ଅନ୍ୟ ୫ଟି ଦେଶ ଭୋଟଦାନରୁ ବିରତ ରହିଥିଲେ। ଆମେରିକା, ଫ୍ରାନ୍ସ, ଇଂଲଣ୍ଡ ଆଦି ମିତ୍ର ଦେଶର ଲଢୁଆ ବିମାନମାନେ ଲିବ୍ୟାର ତ୍ରିପୋଲି ସହର ଓ ଅନ୍ୟାନ୍ୟ ଅଞ୍ଚଳରେ ଏପରିକି ଗଦ୍ଦାଫିଙ୍କ ବାସଭବନ ଉପରେ ବୋମା ବର୍ଷଣ କରୁଛନ୍ତି। ବର୍ତ୍ତମାନ ଗଦ୍ଦାଫିଙ୍କ ସୈନ୍ୟବାହିନୀ ଅନେକ ସ୍ଥାନରେ ପରାଜୟ ବରଣ କରୁଛନ୍ତି। ମାର୍ଚ୍ଚ ୨୭ ତାରିଖ ଦିନ ଲଣ୍ଡନଠାରେ ୪୦ଟି ୟୁରୋପ ଓ ଆରବ ଦେଶର ପ୍ରତିନିଧିମାନେ ଏକତ୍ର ହୋଇ ଗଦ୍ଦାଫିଙ୍କୁ ଗାଦିରୁ ହଟାଇବା ପାଇଁ ସମସ୍ତ ପଦକ୍ଷେପ ନେବାକୁ ଜରୁରୀ ବୋଲି ଘୋଷଣା କରିଛନ୍ତି। ଲିବ୍ୟାବାସୀଙ୍କ ପଛରେ ଅନ୍ତର୍ଜାତୀୟ ସଂଗଠନଗୁଡିକୁ ଛିଡା ହେବାକୁ ଇଂଲଣ୍ଡର ପ୍ରଧାନମନ୍ତ୍ରୀ ଡାଭିଡ କାମେରୁନ ନିବେଦନ କରିଛନ୍ତି। ବେନଘାଜିରେ ଆନ୍ଦୋଳନକାରୀଙ୍କ ଉପରେ ଆକାଶ, ଜଳ ଓ ସ୍ଥଳଭାଗରୁ ଗଦ୍ଦାଫି ବର୍ବରୋଚିତ ଆକ୍ରମଣ ଚଳାଇଥିବାରୁ ଏହାକୁ ବନ୍ଦ କରିବା ଲାଗି ବ୍ରିଟେନ ଜାତିସଙ୍ଘ କାର୍ଯ୍ୟାନୁଷ୍ଠାନରେ ସାମିଲ ହେବ ବୋଲି ସେ କହିଛନ୍ତି।

ଲିବ୍ୟାରେ ଗଣ ଆନ୍ଦୋଳନ ତ୍ରିପୋଲି ବ୍ୟତୀତ ବେନଘାଜି, ଆଦାବିୟା, ବିଶ୍ରାତ୍, ଜିନ୍ତାନ ଆଦି ସହରକୁ ବ୍ୟାପିଛି। ଲିବ୍ୟାର ଅଧିବାସୀମାନେ ନିଜକୁ ଅତ୍ୟନ୍ତ ଅସୁରକ୍ଷିତ ଭାବି ମାର୍ଚ୍ଚ ମାସ ୨୦ ତାରିଖ ସୁଦ୍ଧା ଲକ୍ଷାଧିକ ଲୋକ ଟ୍ୟୁନିସିଆକୁ

ପଳାୟନ କରିଛନ୍ତି ବୋଲି ଜାତିସଙ୍ଘର ମହାସଚିବ ବନ୍ କି ମୁନ୍ ପ୍ରକାଶ କରିଛନ୍ତି। ମାର୍ଚ୍ଚ ୩ ପରଠାରୁ ଅଦ୍ୟାବଧି ଲିବ୍ୟାରେ ୧୫ ଶହରୁ ଅଧିକ ଲୋକ ସଂଘର୍ଷରେ ମୃତ୍ୟୁବରଣ କଲେଣି।

ଇଂଲଣ୍ଡର ବୈଦେଶିକ ସଚିବ ଉଇଲିୟମ ହ୍ୟୁଗେ ଗଦ୍ଦାଫିଙ୍କୁ ସତର୍କ କରାଇ ଦେଇଛନ୍ତି ଯେ ମାନବିକ ଅଧିକାରର ଉଲଙ୍ଘନ କରୁଥିବାରୁ ସେ ଅନ୍ତର୍ଜାତୀୟ ଅପରାଧ କୋର୍ଟରେ ବିଚାରର ସମ୍ମୁଖୀନ ହେବେ।

ସାହାରା ମରୁଭୂମିରେ ଅବସ୍ଥିତ ଏହି ତୈଳ ସମୃଦ୍ଧ ଦେଶରେ ଗୃହଯୁଦ୍ଧ ଏବଂ ଗଦ୍ଦାଫିଙ୍କ ସମର୍ଥିତ ସେନାଙ୍କର ଅତ୍ୟାଚାର ଯୋଗୁଁ ସାଧାରଣ ଲୋକମାନେ ଖାଦ୍ୟ, ବସ୍ତ୍ର, ପାନୀୟ ଜଳ ଅଭାବରେ ଘୋର ଦୁଃଖ ଯନ୍ତ୍ରଣା ଭିତରେ ଜୀବନ ଅତିବାହିତ କରୁଛନ୍ତି। ମୁଆମାର ଗଦ୍ଦାଫିଙ୍କ ପତନ ଆସନ୍ନ ଓ ତାହା ଲିବ୍ୟାର ଜନସାଧାରଣଙ୍କୁ ଆଶ୍ୱସ୍ତ କରିବ।

# ଜିନ୍ଦଲ କମ୍ପାନୀର ଜିତାପଟ

ଫେବୃୟାରୀ ୨୩ ତାରିଖ ଦିନ ଅନୁଗୁଳର ଜିଲ୍ଲାପାଳ, ଜିନ୍ଦଲ କମ୍ପାନୀ ଏବଂ ବୀରଙ୍କେଶ୍ୱର ଶିଳ୍ପାଞ୍ଚଳ କ୍ଷତିଗ୍ରସ୍ତ ପ୍ରଜାସଙ୍ଘ ପ୍ରତିନିଧିମାନଙ୍କ ମଧ୍ୟରେ ହୋଇଥିବା ତ୍ରିପାକ୍ଷିକ ଆଲୋଚନାରେ କମ୍ପାନୀର ନିର୍ମାଣ କାର୍ଯ୍ୟକୁ ପ୍ରତିରୋଧ କରାଯିବ ନାହିଁ ବୋଲି ସ୍ଥିର ହୋଇଥିବାରୁ ଜିନ୍ଦଲ କମ୍ପାନୀର ଜିତାପଟ ହୋଇଛି। ଗତ ଜାନୁୟାରୀ ୨୫ ତାରିଖ ଦିନ ଜିନ୍ଦଲ ଷ୍ଟିଲ ଏଣ୍ଡ ପାୱାର ପ୍ଲାଣ୍ଟ ଦ୍ୱାରା ବିସ୍ଥାପିତ ହୋଇଥିବା ୪୨ଟି ଗ୍ରାମର ପ୍ରାୟ ଦୁଇ ହଜାର ଲୋକ ସେମାନଙ୍କ ନାଯ୍ୟ ପ୍ରାପ୍ୟ ପାଇବାକୁ କମ୍ପାନୀ କର୍ତ୍ତୃପକ୍ଷଙ୍କୁ ଦାବୀପତ୍ର ଦେବାକୁ ଯାଇଥିବା ସମୟରେ ସେମାନଙ୍କ ଉପରେ କମ୍ପାନୀ ସୁରକ୍ଷାକର୍ମୀ ଓ କମ୍ପାନୀ ନିୟୋଜିତ ଭଡ଼ାଟିଆ ଗୁଣ୍ଡାମାନଙ୍କ ଆକ୍ରମଣ ଯୋଗୁଁ ୨୦୦ ରୁ ଅଧିକ ପୁରୁଷ ଓ ମହିଳା ଗୁରୁତର ଭାବରେ କ୍ଷତବିକ୍ଷତ ହୋଇ ଅନୁଗୁଳ ସରକାରୀ ଡାକ୍ତରଖାନା ଓ କଟକର ଏସ୍.ସି.ବି. ମେଡିକାଲ କଲେଜରେ ଭର୍ତ୍ତି ହୋଇଥିଲେ। ଏହି ବର୍ବରୋଚିତ ଆକ୍ରମଣ ରାଜ୍ୟବାସୀଙ୍କୁ ସ୍ତମ୍ଭୀଭୂତ କରିଛି। ସେହିଦିନଠାରୁ ପାଖାପାଖି ୨୦ ହଜାରରୁ ଅଧିକ ଠିକା ଶ୍ରମିକ କାରଖାନା ଛାଡ଼ି ପଳାଇ ଯାଇଥିବାରୁ ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ ବନ୍ଦ ହୋଇଯାଇଥିଲା ଓ କମ୍ପାନୀ କର୍ତ୍ତୃପକ୍ଷ ଆତଙ୍କିତ ହୋଇପଡ଼ିଥିଲେ।

୨୦୦୭ ମସିହାରୁ ଅନୁଗୁଳ ଜିଲ୍ଲାର ଛେଣ୍ଡିପଦା ବ୍ଲକ୍ ଅନ୍ତର୍ଗତ ନିଶା ଅଞ୍ଚଳରେ କାର୍ଯ୍ୟ ଆରମ୍ଭ କରିଛି ଜିନ୍ଦଲ ଷ୍ଟିଲ୍ ଏଣ୍ଡ୍ ପାୱାର ପ୍ଲାଣ୍ଟ କମ୍ପାନୀ। ଏହି କମ୍ପାନୀ 'ଓଡ଼ିଶା ପୁନର୍ବାସ ଓ ଥଇଥାନ ନୀତି-୨୦୦୬'କୁ ସଠିକ୍ ଭାବରେ ପାଳନ କରୁନଥିବାରୁ ସ୍ଥାନୀୟ ଲୋକମାନଙ୍କ ମଧ୍ୟରେ ଅସନ୍ତୋଷର ନିଆଁ ଜଳୁଛି।

ଜିନ୍ଦଲ କମ୍ପାନୀର କାର୍ଯ୍ୟନିର୍ବାହୀ ନିର୍ଦ୍ଦେଶକ ରାଜେଶ ଝା ଓ ଜେନେରାଲ ମ୍ୟାନେଜର ଏସ୍. କେ. ଶର୍ମା ୨୫ ଜାନୁୟାରୀ ଦିନ ଯେଭଳି ଓଡ଼ିଆମାନଙ୍କୁ ଭର୍ତ୍ସନା କଲେ ଓ ମହିଳାମାନଙ୍କୁ ଅଶ୍ଳୀଳ ଭାଷାରେ ଗାଳିଗୁଲଜ କଲେ ସେ ସମ୍ପର୍କରେ ଭାରତୀୟ ବାୟୁସେନାର ଜଣେ ଅବସରପ୍ରାପ୍ତ କର୍ମଚାରୀ ପରମାନନ୍ଦ ସାହୁ ନିଶା ଥାନାରେ ଯେଉଁ ଏତଲା ଦେଇଛନ୍ତି ତାହା ଯେକୌଣସି ଲୋକକୁ ମର୍ମାହତ କରିବ। ଶ୍ରୀ ସାହୁ

ଏତଲାରେ ଲେଖିଛନ୍ତି ଯେ ଉପରୋକ୍ତ ଦୁଇଜଣ ଅଫିସର ବଡ଼ପାଟିରେ ତାଙ୍କ କର୍ମଚାରୀମାନଙ୍କୁ କହିଥିଲେ, ''ଶାଲେ ଓଡ଼ିଆ ଲୋଗୋଙ୍କୋ ପିଟ୍‌ପିଟ୍ କେ ମାର୍ ଦୋ, ଇନ୍‌କେ ମା', ବେହେନ୍, ବେଟି କୋ ରଖେଲ୍ ବନାଏଙ୍ଗେ, ଏ ଶାଲେ ପୋଲିସ୍‌ବାଲେ ଔର କଲେକ୍ଟର ହାମାରେ ଜେବ୍ ମେ ହୈ।'' ସେହି ଥାନାରେ ଶ୍ରୀମତୀ ଶଶି ବେହେରା, ଗୁରୁବାରି ସାହୁ, ବୁଟୁ ପ୍ରଧାନ ପ୍ରଭୃତି ଉପରୋକ୍ତ ଅଫିସରମାନେ ପୋଲିସ ଉପସ୍ଥିତିରେ ମହିଳାମାନଙ୍କୁ ଅଶ୍ଳୀଳ ଭାଷା ପ୍ରୟୋଗ କରିବା, ଧର୍ଷଣ ଉଦ୍ୟମ କରିବା ଭଳି ସାଙ୍ଘାତିକ ଅଭିଯୋଗମାନ କରି ଏତଲା ଦେଇଛନ୍ତି। କିନ୍ତୁ ପୋଲିସ୍ ଯେଉଁମାନେ ମାଡ଼ ମାରିଛନ୍ତି ସେମାନଙ୍କ ବିରୁଦ୍ଧରେ କୌଣସି ପଦକ୍ଷେପ ନ ନେଇ ନିରୀହ ବିସ୍ଥାପିତ ଲୋକଙ୍କୁ ଗିରଫ କରୁଛି।

ଓଡ଼ିଶା ହାଇକୋର୍ଟ ଜିନ୍ଦଲ ଷ୍ଟିଲ ଏଣ୍ଡ ପାଓ୍ୱାର ପ୍ଲାଣ୍ଟରେ ୨୫ ଜାନୁୟାରୀରେ ହୋଇଥିବା ଗଣ୍ଡଗୋଳ ସଂକ୍ରାନ୍ତରେ ଫେବୃୟାରୀ ୩ ତାରିଖରେ ବିଚାର କରି ସେଠାରେ ସ୍ୱାଭାବିକ ଅବସ୍ଥା ଫେରାଇ ଆଣିବାକୁ ନିର୍ଦ୍ଦେଶ ଦେଇଥିଲେ ଯାହାକୁ ବୀରଙ୍କେଶ୍ୱର ଶିଳ୍ପାଂଚଳ କ୍ଷତିଗ୍ରସ୍ତ ପ୍ରଜାସଙ୍ଘ ସମ୍ମାନ ପ୍ରଦର୍ଶନ କରି କମ୍ପାନୀ ଅଞ୍ଚଳରେ ଶାନ୍ତିପୂର୍ଣ୍ଣ ପରିସ୍ଥିତି ବଜାୟ ରଖିଛନ୍ତି। ୯ ଫେବୃୟାରୀ ଦିନ ଉଚ୍ଚ ନ୍ୟାୟାଳୟର ମାନ୍ୟବର ମୁଖ୍ୟ ବିଚାରପତି ଭି. ଗୋପାଳଗୌଡ଼ ଓ ମାନ୍ୟବର ବିଚାରପତି ବିଶ୍ୱନାଥ ମହାପାତ୍ରଙ୍କୁ ନେଇ ଗଠିତ ଖଣ୍ଡପୀଠ ଏହି ମାମଲାଟିର ଶୁଣାଣି କରି ସମସ୍ତ ତଥ୍ୟ ବିଷୟରେ ଅବଗତ ହୋଇଥିଲେ। ରାଜ୍ୟ ମାନବାଧିକାର କମିଶନଙ୍କ ପାଖରେ ଜିନ୍ଦଲ କମ୍ପାନୀର ନିରୀହ ନିରସ୍ତ୍ର ଜନସାଧାରଙ୍କ ଉପରେ ୨୫ ଜାନୁୟାରୀରେ ହୋଇଥିବା ଅମାନୁଷିକ ଆକ୍ରମଣର ତଦନ୍ତ କରି ଜମି ହରାଇଥିବା ଲୋକଙ୍କୁ ଉପଯୁକ୍ତ କ୍ଷତିପୂରଣ ପ୍ରଦାନ ଓ ମାଡ଼ ମାରିଥିବା ଗୁଣ୍ଡାବାହିନୀ ବିରୁଦ୍ଧରେ କଠୋର କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ରାଜ୍ୟର ବହୁ ଅନୁଷ୍ଠାନ ନିବେଦନ କରିଛନ୍ତି। ମାନବାଧିକାର କମିଶନ ମଧ୍ୟ ବିହିତ କାର୍ଯ୍ୟାନୁଷ୍ଠାନ କରିବେ ବୋଲି ପ୍ରତିଶ୍ରୁତି ଦେଇଛନ୍ତି। ବର୍ତ୍ତମାନ ଆମ ରାଜ୍ୟକୁ ହାଇକୋର୍ଟ, ମାନବାଧିକାର କମିଶନ, ଲୋକପାଳ ଓ ନ୍ୟାୟପାଳିକାଗୁଡ଼ିକ ହିଁ ସହାୟ।

୨୦୦୫ ମସିହାରେ ହରିଆନା ରାଜ୍ୟର କଂଗ୍ରେସ ଲୋକସଭା ସଦସ୍ୟ ନବୀନ ଜିନ୍ଦଲଙ୍କର ଜିନ୍ଦଲ ଷ୍ଟିଲ ଏଣ୍ଡ ପାଓ୍ୱାର ପ୍ଲାଣ୍ଟ ପ୍ରାଇଭେଟ ଲିମିଟେଡ କମ୍ପାନୀ ଅନୁଗୁଳ ଜିଲ୍ଲାରେ ବାର୍ଷିକ ୬ ନିୟୁତ ଟନ୍ ଷ୍ଟିଲ୍ ଉତ୍ପାଦନ ଲକ୍ଷ୍ୟରେ କାରଖାନା ପ୍ରତିଷ୍ଠା କରିବାକୁ ରାଜ୍ୟ ସରକାରଙ୍କ ସହିତ ବୁଝାମଣା ପତ୍ର ସ୍ୱାକ୍ଷର କରିଥିଲେ। ଜିନ୍ଦଲ କାରଖାନା

ପ୍ରତିଷ୍ଠା କରିବା ପରଠାରୁ ରାଜ୍ୟ ସରକାରଙ୍କ ସହିତ କରିଥିବା ସମସ୍ତ ଚୁକ୍ତିକୁ ବେଖାତିର କରି ନିଜର ମେରିରାୟ ଶାସନ ଚଳାଇ ଆସିଛନ୍ତି। ସରକାରୀ ତଥ୍ୟ ମୁତାବକ, ଜିନ୍ଦଲର ବାର୍ଷିକ ୬ ମିଲିୟନ୍ ଟନ୍ କ୍ଷମତା ସମ୍ପନ୍ନ ଷ୍ଟିଲ୍ ପ୍ଲାଣ୍ଟ ଓ ୧୦୫୦ ମେଗାୱାଟ୍‌ର ତାପଜ ବିଦ୍ୟୁତ୍ କେନ୍ଦ୍ର ପାଇଁ ୫ ହଜାର ୮୧୫ ଏକର ଜମି ଅଧିଗ୍ରହଣ ହୋଇଛି। ତା' ମଧ୍ୟରୁ ୪ ହଜାର ୨ ଶହ ଏକର ଘରୋଇ, ୧୨ ଶହ ଏକ ସରକାରୀ ଜମି ଓ ୪୧୫ ଏକର ଜଙ୍ଗଲ ଜମି। ସରକାର ଜିନ୍ଦଲ କମ୍ପାନୀକୁ ସମୁଦାୟ ୫,୮୧୫ ଏକର ଜମି ଯୋଗାଇ ଦିଆଯାଇଥିବା ଦର୍ଶାଉଛନ୍ତି, କିନ୍ତୁ କମ୍ପାନୀ ଏହାଠାରୁ ବହୁ ଅଧିକ ଅଞ୍ଚଳ ନିଜ ଦଖଲରେ ରଖିଛି। ଜଙ୍ଗଲ ଜମିକୁ ବିନା ଅନୁମତିରେ ନିଜ ଅକ୍ତିଆରକୁ ନେଇ ସେଠାରୁ ଗଛ କାଟି ଜଙ୍ଗଲ ସଫା କରିଦେଲାଣି। ଜଙ୍ଗଲ ବିଭାଗ ସବୁ ଜାଣି ନ ଜାଣିଲା ପରି ବସିଛନ୍ତି। ସରକାରଙ୍କୁ କମ୍ପାନୀ ରୟାଲଟି ଦେବାରେ ମଧ୍ୟ ଠକିବାରେ ଲାଗିଛି। ଅଦ୍ୟାବଧି ସରକାର ଏହି ରୟାଲଟି ବାବଦକୁ ୩ ଶହ କୋଟି ଟଙ୍କା କ୍ଷତି ସହିଥିବା ଏକ ପ୍ରାଥମିକ ଆକଳନରୁ ଜଣାପଡିଛି। ସାଧାରଣ ଲୋକଙ୍କଠାରୁ ୪,୨୦୦ ଏକର ଜମି ଅଧିଗ୍ରହଣ କରିଥିଲେ ମଧ୍ୟ ସେମାନଙ୍କୁ ଉପଯୁକ୍ତ କ୍ଷତିପୂରଣ ଦେଇନାହାନ୍ତି ଏବଂ ଅଧିକାଂଶ କ୍ଷତିଗ୍ରସ୍ତ ପରିବାରର ଲୋକଙ୍କୁ ବିଭିନ୍ନ ଆଳ ଦେଖାଇ ନିଯୁକ୍ତିରୁ ବଞ୍ଚିତ କରିଛନ୍ତି। ଚୁକ୍ତି ଅନୁଯାୟୀ ସମସ୍ତ ବିସ୍ଥାପିତ ବା କ୍ଷତିଗ୍ରସ୍ତ ଓ ସେମାନଙ୍କ ପରେ ଓଡ଼ିଶାର ସ୍ଥାୟୀ ବାସିନ୍ଦାମାନଙ୍କୁ ନିଯୁକ୍ତି ଦେବାକଥା, କିନ୍ତୁ କମ୍ପାନୀ ଏହା କରୁନାହିଁ। ସବୁଠାରୁ ଆଶ୍ଚର୍ଯ୍ୟର କଥା ହେଲା ସ୍ଥାନୀୟ ଶ୍ରମିକଙ୍କୁ କମ୍ ପାରିଶ୍ରମିକ ଦିଆଯାଉଥିବାବେଳେ ବାହାର ରାଜ୍ୟର ଶ୍ରମିକମାନଙ୍କୁ ବହୁ ଅଧିକ ଦରମା ଦେଇ କମ୍ପାନୀ ନିଯୁକ୍ତି ଦେଇଛି।

ଏହି ପ୍ଲାଣ୍ଟକୁ ଡେରଜାଙ୍ଗ୍ ଡ୍ୟାମ୍‌ରୁ ୨ କ୍ୟୁବିକ୍ ଜଳ ନେବାକୁ ସରକାର ଅନୁମତି ଦେଇଛନ୍ତି। କିନ୍ତୁ କମ୍ପାନୀ ୨ କ୍ୟୁବିକ୍ ଜଳ ପରିବର୍ତ୍ତେ ମନଇଚ୍ଛା ଡ୍ୟାମ୍‌ରୁ କେତେ ଜଳ ନେଉଛି ତାହା ମାପିବା ପାଇଁ ଉଦ୍ଦେଶ୍ୟମୂଳକ ଭାବରେ ଫ୍ଲୋ ମିଟର ବସାଯାଇ ନାହିଁ। କମ୍ପାନୀର ଏହି ପାଣି ଚୋରି ଦ୍ୱାରା ଚାଷୀଙ୍କ ପାଇଁ ନିର୍ମିତ ହୋଇଥିବା ଏହି ଡେରଜାଙ୍ଗ୍ ଡ୍ୟାମ୍‌ରୁ ଚାଷୀମାନେ ଚାଷ ପାଇଁ ପାଣି ନ ପାଇ ହାହାକାର କରୁଛନ୍ତି। ଜଳସେଚନ ବିଭାଗ କମ୍ପାନୀ ବିରୁଦ୍ଧରେ କୌଣସି ପଦକ୍ଷେପ ଗ୍ରହଣ କରୁନାହିଁ। କେନ୍ଦ୍ରୀୟ ଭୂତଳ ଜଳ ଆୟୋଗ ଜିନ୍ଦଲ କମ୍ପାନୀକୁ ୫ ହଜାର କ୍ୟୁବିକ୍ ମିଟର ଜଳ ଉତ୍ତୋଳନ କରି ବ୍ୟବହାର କରିବାକୁ ଅନୁମତି ଦେଇଛନ୍ତି। କିନ୍ତୁ ବିଧାନସଭାକୁ ତା୧୩.୧୨.୨୦୧୦ ରେ ଅଣତାରକା ପ୍ରଶ୍ନ ସଂଖ୍ୟା ୨୬୫୮ର

ଉତ୍ତରରେ ମୁଖ୍ୟମନ୍ତ୍ରୀ ସ୍ୱୀକାର କରିଛନ୍ତି ଯେ, କମ୍ପାନୀ ୧୭ଟି ନଳକୂପ ମାଧ୍ୟମରେ ୬ ହଜାର ୩୫ କ୍ୟୁବିକ୍ ମିଟର ଜଳ ବ୍ୟବହାର କରୁଛି। କିନ୍ତୁ ବାସ୍ତବ କ୍ଷେତ୍ରରେ କମ୍ପାନୀ ଶତାଧିକ ନଳକୂପ ବସାଇ ମନଇଚ୍ଛା ଭୂତଳ ଜଳ ଉତ୍ତୋଳନ କରୁଛି। ଯାହାଦ୍ୱାରା ଅନୁଗୁଳରେ ଭୂତଳ ଜଳସ୍ତର ଦ୍ରୁତ ହ୍ରାସ ପାଇବାରେ ଲାଗିଛି ଏବଂ ଆଉ କିଛି ବର୍ଷ ପରେ ସେଠାରେ ପାନୀୟ ଜଳର ସଂକଟ ଦେଖାଦେବ ଏହା ନିଃସନ୍ଦେହ।

ଜିନ୍ଦଲ କମ୍ପାନୀ ହେଲେ ଅନୁଗୁଳ ଜିଲ୍ଲାରେ ବେକାରୀ ଦୂର ହେବ, ସ୍ଥାନୀୟ ଲୋକେ ନିଯୁକ୍ତି ପାଇବେ, ଲୋକମାନଙ୍କର ଆର୍ଥିକ ମାନଦଣ୍ଡ ବୃଦ୍ଧି ପାଇବ ଓ ଠିକସ ବାବଦରେ ବହୁ ଅର୍ଥ ଉପାର୍ଜନ କରିବେ ବୋଲି ସରକାର ଯେଉଁ ସ୍ୱପ୍ନ ଦେଖିଥିଲେ ତାହା ବର୍ତ୍ତମାନ ଧୂଳିସାତ୍ ହୋଇଯାଇଛି। ଜିନ୍ଦଲ କମ୍ପାନୀ ଦ୍ୱାରା ଜିଲ୍ଲାର ଦୁର୍ନୀତିଗ୍ରସ୍ତ ଅଫିସର, ଲୋକପ୍ରତିନିଧି, ବିଭିନ୍ନ ରାଜନୈତିକ ଦଳର ନେତାମାନେ ବ୍ୟକ୍ତିଗତ ସ୍ତରରେ ଲାଭବାନ ହେଉଥିବାର ଚର୍ଚ୍ଚା ହେଉଛି, କିନ୍ତୁ ସାଧାରଣ ଲୋକଙ୍କର ଜୀବନ ଦୁର୍ବିସହ ହେବାରେ ଲାଗିଛି।

ଜିନ୍ଦଲ କମ୍ପାନୀର ଜମି, ଜଙ୍ଗଲ ଓ ଜଳର ନିଧଡ଼କ ଲୁଟ୍‌କୁ ଓଡ଼ିଶା ସରକାର ବରଦାସ୍ତ କରିଛନ୍ତି। ଶୁଣାଯାଏ ନବୀନ ଜିନ୍ଦଲ ଦିଲ୍ଲୀରେ ୟୁ.ପି.ଏ. ସରକାରଙ୍କ ଉପରେ ଓ ଓଡ଼ିଶାରେ ନବୀନ ସରକାରଙ୍କ ଉପରେ ଚାପ ସୃଷ୍ଟି କରି ନିଜ କମ୍ପାନୀର ବେଆଇନ୍ କାର୍ଯ୍ୟ ବିରୁଦ୍ଧରେ ଯେଭଳି କୌଣସି କାର୍ଯ୍ୟାନୁଷ୍ଠାନ ନ ହେବ ସେଥିପାଇଁ ବିଭିନ୍ନ ପଦକ୍ଷେପ ନେଇଛନ୍ତି। ଜଣେ ସାଂସଦଙ୍କ ଭାଇ ଜିନ୍ଦଲ କମ୍ପାନୀଠାରୁ ୩.୫ କୋଟି ଟଙ୍କାର ଠିକା କାମ ପାଇଛନ୍ତି ବୋଲି ଶୁଣାଯାଏ। ବି.ଜେ.ଡି.ର ଜଣେ ସାଂସଦଙ୍କ ପରିବାର ଦ୍ୱାରା ପରିଚାଳିତ ଗୋଟିଏ ଏନ୍.ଜି.ଓ.କୁ ଗତ ୫ ବର୍ଷ ଭିତରେ ପ୍ରାୟ କୋଟିଏ ଟଙ୍କାର ଅନୁଦାନ ମଧ୍ୟ ଦିଆଯାଇଥିବା ଏକ ପ୍ରକାଶିତ ସମ୍ବାଦରୁ ଜଣାପଡ଼ିଛି। ତେଣୁ ଜିନ୍ଦଲ କମ୍ପାନୀର ଅଫିସରମାନେ ଓଡ଼ିଆ ଲୋକମାନଙ୍କୁ ମାଡ ମାରିଲେ, ଓଡ଼ିଆ ସ୍ତ୍ରୀଲୋକମାନଙ୍କୁ ଖରାପ ଭାଷା ବ୍ୟବହାର କରି ସେମାନଙ୍କ ଉପରେ ପାଶବିକ ଅତ୍ୟାଚାରର ଉଦ୍ୟମ କଲେ ମଧ୍ୟ ଓଡ଼ିଶାର ବିରୋଧିଦଳ, ଶାସକଦଳ ଓ ପ୍ରଶାସନ ତାହାକୁ ସବୁବେଳେ ଅଣଦେଖା କରିବେ। ସମୟ ଆସିଛି ରାଜ୍ୟ ସରକାର ଜିନ୍ଦଲ ପ୍ରୀତି ଛାଡ଼ି ସେ କରୁଥିବା ସମସ୍ତ ବେଆଇନ କାର୍ଯ୍ୟକୁ ବନ୍ଦ କରିବାକୁ ଦୃଢ଼ ପଦକ୍ଷେପ ଗ୍ରହଣ କରନ୍ତୁ ଓ ସେ ସମ୍ବନ୍ଧରେ ଏକ ଶ୍ୱେତପତ୍ର ପ୍ରକାଶ କରନ୍ତୁ।

*ସମୟ, ୧.୩.୨୦୧୨*

# ରାଜ୍ୟକୁ ଗୌରବାନ୍ୱିତ କରୁଥିବା ବ୍ୟକ୍ତି ସର୍ବଦା ବନ୍ଦନୀୟ

ଓଡ଼ିଶାର ମୁଷ୍ଟିମେୟ ଲୋକ ନିଜର ସଂକୀର୍ଣ୍ଣ ସ୍ୱାର୍ଥ ସାଧନ ପାଇଁ ସମାଜର ଓ ଜାତିର ଉନ୍ନତି କରିବାକୁ ଆପ୍ରାଣ ଚେଷ୍ଟା କରୁଥିବା ବ୍ୟକ୍ତିମାନଙ୍କ ବିରୋଧରେ କୁତ୍ସାରଟନା କରିଥାନ୍ତି, ଏହା ଏବେକାର କଥା ନୁହେଁ। ସେମାନେ ଭଲଲୋକଙ୍କର ଗୁଣକୁ ଚିହ୍ନି ନପାରି ଖୁଣ ଖୋଜିବାରେ ବ୍ୟସ୍ତ ରହି, ତିଳକୁ ତାଳ କରି ଶତଜିହ୍ୱାରେ ପ୍ରଚାର କରି ଆତ୍ମସନ୍ତୋଷ ଲାଭ କରିଥାନ୍ତି। କିନ୍ତୁ ରାଜ୍ୟକୁ ଗୌରବାନ୍ୱିତ କରୁଥିବା ବ୍ୟକ୍ତି ଯେ ସର୍ବଦା ବନ୍ଦନୀୟ ସେକଥାକୁ ପାଶୋରି ଦିଅନ୍ତି। ନିନ୍ଦୁକ ଗୋଷ୍ଠୀକୁ ସମସ୍ତେ ଘୃଣା କରନ୍ତି ଓ ସେମାନଙ୍କଠାରୁ ଦୂରେଇ ରହନ୍ତି। କିନ୍ତୁ ଖୋଲାଖୋଲି ଭାବରେ ସେମାନଙ୍କୁ ସାମନା କରିବାକୁ ପଶ୍ଚାତ୍‌ପଦ ହୁଅନ୍ତି।

ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ଆଜୀବନ ମରୁଡ଼ି ଓ ବଢ଼ି ପ୍ରପୀଡ଼ିତ ଅସହାୟ ଦରିଦ୍ର ଜନସାଧାରଣଙ୍କ ପାଇଁ ଚାନ୍ଦା କରି କିଛି ସ୍ୱେଚ୍ଛାସେବୀଙ୍କ ସହାୟତାରେ ଲୋକଙ୍କ ମୁଖରେ ଦାନା ଗଣ୍ଡାଏ ଦେଉଥିଲେ। କିନ୍ତୁ ତାଙ୍କୁ ବଦନାମ କରିବାକୁ ଅସୂୟାଭାବସଂପନ୍ନ ଲୋକ ପ୍ରଚାର କଲେ 'ଗୋପ ବଢ଼ି-କଉଡ଼ି' ଖାଇଗଲା। ତାହା ଗୋପବନ୍ଧୁ ଦାସଙ୍କୁ କେବଳ ଆଘାତ ଦେଇନଥିଲା, ଓଡ଼ିଶାବାସୀଙ୍କୁ ମଧ୍ୟ ମର୍ମାହତ କରିଥିଲା। ଉତ୍କଳଗୌରବ ମଧୁସୂଦନ ଦାସ ତାଙ୍କ ଜୀବନରେ ଅର୍ଜନ କରିଥିବା ସମସ୍ତ ଧନ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ନିଃସ୍ୱାର୍ଥପରଭାବରେ ଖର୍ଚ୍ଚ କରୁଥିଲେ। ଏପରିକି ବ୍ୟାଙ୍କରୁ ଋଣ ଆଣି କଟକକୁ ଆସିଥିବା ଓଡ଼ିଶା ଆଡ୍‌ମିନିଷ୍ଟ୍ରେଟିଭ୍ କମିଟିର ସଭ୍ୟମାନଙ୍କୁ ରାତ୍ରି ଭୋଜନରେ ଆପ୍ୟାୟିତ କରିଥିଲେ। ସେ ଯେତେବେଳେ ବିହାର-ଓଡ଼ିଶା ସରକାରରେ ମନ୍ତ୍ରୀପଦ ଗ୍ରହଣ କରିଥିଲେ କଟକ ରାଜରାସ୍ତାରେ କିଛି ଲୋକ ଈର୍ଷା ପ୍ରଣୋଦିତ ହୋଇ ତାଙ୍କ କୁଶପୁତ୍ତଳିକା ଦାହ କରିଥିଲେ। ମଧୁସୂଦନ ଦାସ କିଭଳି ଭାବରେ ଓଡ଼ିଶାରେ ଅବହେଳିତ ହୋଇଛନ୍ତି ତାହା 'ବିସ୍ମୃତିର ଚକ୍ରବ୍ୟୂହ ମଧ୍ୟରେ ଓଡ଼ିଆ ଜାତିର ଜନକ ମଧୁସୂଦନ ଦାସ' ପୁସ୍ତକରେ ସଚ୍ଚିଦାନନ୍ଦ ଦାସ ବର୍ଣ୍ଣନା କରିଛନ୍ତି। କିଛି ବର୍ଷ ତଳେ ରବୀନ୍ଦ୍ରନାଥ ପଣ୍ଡା ତାଙ୍କ ରଚିତ ପୁସ୍ତକ 'ବାଟ ହୁଡ଼ି-ବାଟ ଖୋଜି'ରେ

ମଧୁସୂଦନ ଦାସଙ୍କ ଚରିତ୍ର ସଂହାର କରିବାକୁ ତିଳେମାତ୍ର ଦ୍ୱିଧା କରିନାହାନ୍ତି। ଏହା ହେଲା ଆମ ଓଡ଼ିଶାର କିଛି ଲୋକଙ୍କ ଚାରିତ୍ରିକ ଦୋଷ। ଏକବିଂଶ ଶତାବ୍ଦୀର ଦ୍ୱିତୀୟ ଦଶନ୍ଧି ପ୍ରାରମ୍ଭରେ ଏଭଳି ଲୋକ ଯେ ଓଡ଼ିଶାରେ ଅଛନ୍ତି ଏହା ଭାବିଲେ ନିଜ ରାଜ୍ୟକୁ ଭଲପାଉଥିବା ଯେକୌଣସି ଲୋକ କେବଳ ବିସ୍ମିତ ହେବନାହିଁ ବରଂ ସେହି କୁତ୍ସାରଟନାକାରୀଙ୍କର କିଭଳି ସଦ୍‌ବୁଦ୍ଧି ଉଦୟ ହେବ ସେଥିପାଇଁ ଜଗନ୍ନାଥଙ୍କ ପାଖରେ ପ୍ରାର୍ଥନା କରିବ।

ଘରୋଇ ଉଦ୍ୟମରେ ଓଡ଼ିଶାରେ ଶିକ୍ଷାର ବିକାଶ ପାଇଁ ଏକ ନୂତନ ଦିଗନ୍ତ ଦେବାକୁ ନବେ ଦଶକ ପରେ ଯେଉଁ କେତେଜଣ ବ୍ୟକ୍ତି ଆପ୍ରାଣ ଉଦ୍ୟମ କରି ଭାରତରେ ନୁହେଁ ବିଶ୍ୱରେ ନିଜ ଅନୁଷ୍ଠାନକୁ ପ୍ରତିଷ୍ଠିତ କରାଇପାରିଛନ୍ତି ଓ ଓଡ଼ିଶାର ମର୍ଯ୍ୟାଦା ବୃଦ୍ଧି କରିବାରେ ସହାୟକ ହୋଇଛନ୍ତି ସେମାନଙ୍କ ମଧ୍ୟରେ ଡକ୍ଟର ଅଚ୍ୟୁତ ସାମନ୍ତ ଅଗ୍ରଗଣ୍ୟ। ମାତ୍ର ୧୫ ବର୍ଷ ତଳେ ପ୍ରତିଷ୍ଠା ହୋଇଥିବା କଳିଙ୍ଗ ଇନ୍‌ଷ୍ଟିଚ୍ୟୁଟ ଅଫ୍ ଇଣ୍ଡଷ୍ଟ୍ରିଆଲ ଟେକ୍ନୋଲୋଜି ଅଚ୍ୟୁତ ସାମନ୍ତଙ୍କର ସଫଳ ଯୋଜନା ଯୋଗୁଁ ଆଜି ଦେଶର ୨୦ଟି ଘରୋଇ ବିଶ୍ୱବିଦ୍ୟାଳୟ ମଧ୍ୟରେ ସ୍ଥାନିତ ହୋଇ ସୁଖ୍ୟାତି ଅର୍ଜନ କରିଛି। କିଟ୍ 'ବିଶ୍ୱବିଦ୍ୟାଳୟ ମଂଜୁରୀ କମିଶନ' ଦ୍ୱାରା ବିଶ୍ୱବିଦ୍ୟାଳୟ ମାନ୍ୟତା ପାଇବାରେ ସକ୍ଷମ ହୋଇଛି। କିଟ୍ ବିଶ୍ୱବିଦ୍ୟାଳୟର ଖ୍ୟାତି ସେଠାରେ ପାଠ ପଢ଼ାଉଥିବା ଅଧ୍ୟାପକମଣ୍ଡଳୀ, ବିଭିନ୍ନ ପଦପଦବୀରେ ନିଯୁକ୍ତ ଥିବା କର୍ମଚାରୀବୃନ୍ଦ ସର୍ବୋପରି ଅନୁଷ୍ଠାନରେ ପାଠପଢ଼ି ଦେଶ ବିଦେଶରେ କାର୍ଯ୍ୟ କରି ସୁନାମ ଅର୍ଜନ କରିଥିବା ସ୍ନାତକ ଛାତ୍ରଛାତ୍ରୀଙ୍କ ଯୋଗୁଁ ସମ୍ଭବ ହୋଇପାରିଛି। କିଟ୍ ବିଶ୍ୱବିଦ୍ୟାଳୟରେ କେବଳ ଓଡିଶାର ଛାତ୍ରଛାତ୍ରୀମାନେ ପଢ଼ନ୍ତି ନାହିଁ, ଭାରତର ବିଭିନ୍ନ ରାଜ୍ୟରୁ ଓ ବିଦେଶର ଛାତ୍ରଛାତ୍ରୀମାନେ ମଧ୍ୟ ଏହି ଅନୁଷ୍ଠାନରେ ଶିକ୍ଷା ଗ୍ରହଣ କରିଥାନ୍ତି।

ପାଠପଢ଼ା ଶୈଳୀ ବ୍ୟତୀତ ପରିବେଶ, ପରିଚ୍ଛନ୍ନତା, ଶାନ୍ତ ଓ ଶୃଙ୍ଖଳିତ ବାତାବରଣ ଏହି ଅନୁଷ୍ଠାନରେ ପଢୁଥିବା ଛାତ୍ରଛାତ୍ରୀମାନଙ୍କୁ ଅନୁସନ୍ଧିତ୍ସୁ ଓ କ୍ରିୟାଶୀଳ ହେବାର ସୁଯୋଗ ସୃଷ୍ଟି କରିଛି। ଡକ୍ଟର ସାମନ୍ତ ଏକ ଆଞ୍ଚଳିକତାବାଦ ମନୋଭାବର ଊର୍ଦ୍ଧ୍ୱରେ ରହି ଭାରତର ବିଭିନ୍ନ ରାଜ୍ୟରୁ ଯୋଗ୍ୟ ବ୍ୟକ୍ତିମାନଙ୍କୁ ଚୟନ କରି କିଟ୍ ବିଶ୍ୱବିଦ୍ୟାଳୟରେ ନିଯୁକ୍ତି ଦେଇଥାନ୍ତି। ଦୀର୍ଘ ୧୫ ବର୍ଷ ଅତିବାହିତ ହୋଇଥିଲେ ମଧ୍ୟ ଏହି ବିଶ୍ୱବିଦ୍ୟାଳୟରେ କେବେ ଛାତ୍ର ବିଶୃଙ୍ଖଳା ଘଟିନାହିଁ। କର୍ମଚାରୀମାନେ ସମସ୍ତ ସୁବିଧା ସୁଯୋଗ ପାଉଥିବାରୁ କେବେ ବି ଆନ୍ଦୋଳନ କରିବାକୁ ଚିନ୍ତା କରି

ନାହାନ୍ତି। ଶିକ୍ଷକମାନେ ବିଶ୍ୱବିଦ୍ୟାଳୟ ମଂଜୁରୀ କମିଶନର ସୁପାରିଶ ଅନୁଯାୟୀ ନ୍ୟାଯ୍ୟ ବେତନ ପାଉଥିବାରୁ ନିଜ କାର୍ଯ୍ୟ—ଶିକ୍ଷାଦାନ ଓ ଗବେଷଣାକୁ ଉତ୍ସାହର ସହିତ ସଂପାଦନ କରିଥାନ୍ତି। ଏହି ଅନୁଷ୍ଠାନକୁ ଭାରତର ପୂର୍ବତନ ରାଷ୍ଟ୍ରପତି ଡକ୍ଟର ଏ. ପି. ଜେ. ଅବଦୁଲ କଲାମ ପରିଦର୍ଶନ କରି ଏହି ଅନୁଷ୍ଠାନର ଭୂୟସୀ ପ୍ରଶଂସା କରିଛନ୍ତି।

ଡକ୍ଟର ସାମନ୍ତ କେବଳ କିଟ୍ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠା ଓ ପରିଚାଳନାରେ ନିଜକୁ ସୀମିତ ରଖିନାହାନ୍ତି। ଓଡ଼ିଶାର ଜନସଂଖ୍ୟାର ୨୩ ପ୍ରତିଶତ ଜନଜାତିର ପିଲାମାନଙ୍କ ପାଇଁ ବିଶ୍ୱର ସର୍ବବୃହତ ଆବାସିକ ଅନୁଷ୍ଠାନ କଳିଙ୍ଗ ଇନ୍‌ଷ୍ଟିଚ୍ୟୁଟ ଅଫ୍ ସୋସିଆଲ ସାଇନ୍ସ (କିସ୍)ର ପ୍ରତିଷ୍ଠା କରି ୧୫,୦୦୦ ପୁଅ-ଝିଅଙ୍କୁ ଶିଶୁ ଶ୍ରେଣୀଠାରୁ ସ୍ନାତକୋତ୍ତର ଶ୍ରେଣୀ ପର୍ଯ୍ୟନ୍ତ ନିଃଶୁଳ୍କ ଶିକ୍ଷା ଦେବାର ବ୍ୟବସ୍ଥା କରିଛନ୍ତି। ସମସ୍ତଙ୍କର ମାଗଣାରେ ରହିବା ଓ ଖାଇବାର ବନ୍ଦୋବସ୍ତ ମଧ୍ୟ ଅନୁଷ୍ଠାନ କରିଥାଏ। ଧନ୍ଦାମୂଳକ ଶିକ୍ଷାକୁ ଗୁରୁତ୍ୱ ଦିଆଯାଇ ଏହି ଛାତ୍ରଛାତ୍ରୀମାନେ ନିଜ ଜୀବନରେ କିଭଳି ରୋଜଗାରକ୍ଷମ ଓ ସ୍ୱାବଲମ୍ବୀ ହୋଇ ସମାଜରେ ମର୍ଯ୍ୟାଦା ସହିତ ଜୀବନଯାପନ କରିପାରିବେ ତାହାର ଏକ ସୁଚିନ୍ତିତ ଯୋଜନା କରିଛନ୍ତି। ମାତ୍ର ୧୨୫ ଜଣ ପିଲାଙ୍କୁ ନେଇ ୧୯୯୩ ମସିହାରେ ଆରମ୍ଭ ହୋଇଥିବା ଏହି ଅନୁଷ୍ଠାନ ଆଜି ୬୦ ଏକର ପରିମିତ ଅଞ୍ଚଳରେ ପରିବ୍ୟାପ୍ତ। କେବଳ ଓଡ଼ିଶାର ନୁହେଁ, ପଡ଼ୋଶୀ ରାଜ୍ୟ ଛତିଶଗଡ଼, ଝାଡ଼ଖଣ୍ଡ, ପଶ୍ଚିମବଂଗର ଅତ୍ୟନ୍ତ ଦରିଦ୍ର ଶ୍ରେଣୀର ଛାତ୍ରଛାତ୍ରୀମାନେ ମଧ୍ୟ ଏହି ଅନୁଷ୍ଠାନରେ ପଠନରତ ଅଛନ୍ତି। ଏହି ଅନୁଷ୍ଠାନର ଛାତ୍ରମାନେ ରଗ୍‌ବି କ୍ରୀଡ଼ାରେ ବିଶ୍ୱବିଜୟୀ ହୋଇ ଓଡ଼ିଶାକୁ ଗୌରବାନ୍ୱିତ କରିଛନ୍ତି। ଡକ୍ଟର ସାମନ୍ତ ଏହି ବିଶ୍ୱସ୍ତରୀୟ ମର୍ଯ୍ୟାଦାସମ୍ପନ୍ନ ଅନୁଷ୍ଠାନ ଓଡ଼ିଶା ମାଟିରେ ପ୍ରତିଷ୍ଠା କରିବାକୁ ବ୍ୟାଙ୍କମାନଙ୍କରୁ ଶହ ଶହ କୋଟି ଟଙ୍କା ଋଣ କରିବା ପାଇଁ ତିଳେମାତ୍ର ଦ୍ୱିଧା ପ୍ରକାଶ କରି ନାହାନ୍ତି।

ଅଚ୍ୟୁତ ସାମନ୍ତ ବିଶ୍ୱାସ କରନ୍ତି ଯେ, ଦରିଦ୍ର-ଅବହେଳିତ ପିଲାଟିକୁ ଶିକ୍ଷାଦାନ ଅନ୍ଧକୁ ଚକ୍ଷୁଦାନ ସହିତ ତୁଳନା କରାଯାଇପାରେ। ଓଡ଼ିଶାର ୨୦ଟି ଆଦିବାସୀ ଅଧ୍ୟୁଷିତ ଜିଲ୍ଲାରେ ଏବଂ ଦିଲ୍ଲୀ, ଝାଡ଼ଖଣ୍ଡ, କର୍ଣ୍ଣାଟକ, ଛତିଶଗଡ଼ ଓ ମଧ୍ୟପ୍ରଦେଶ ପ୍ରଭୃତି ୫ଟି ରାଜ୍ୟରେ କିସ୍ ପରି ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା କରିବାକୁ ଡକ୍ଟର ସାମନ୍ତ ଯୋଜନା ରଖିଛନ୍ତି।

୯୯ତମ ଭାରତୀୟ ବିଜ୍ଞାନ କଂଗ୍ରେସ କିଟ୍‌ରେ ଅନୁଷ୍ଠିତ ହେବାର ଅବ୍ୟବହିତ ପୂର୍ବରୁ କିଛି ବ୍ୟକ୍ତି ଈର୍ଷା ପ୍ରଣୋଦିତ ହୋଇ ଏହି ବିଶ୍ୱବିଦ୍ୟାଳୟ ଓ ଡକ୍ଟର ସାମନ୍ତଙ୍କ ବିରୋଧରେ ଏକ ବିଦ୍ୱେଷମୂଳକ ଅପପ୍ରଚାର ଆରମ୍ଭ କରିଥିଲେ। କିନ୍ତୁ ଡକ୍ଟର ସାମନ୍ତଙ୍କ

ଉଦ୍ୟମ ଓଡ଼ିଶା ବିଧାନସଭାରେ ଦଳମତ ନିର୍ବିଶେଷରେ ପ୍ରଶଂସିତ ହୋଇଥିଲା ଏବଂ ଉଚ୍ଚ ନ୍ୟାୟାଳୟ କିଟ୍ ବିଶ୍ୱବିଦ୍ୟାଳୟରେ ଭାରତୀୟ ବିଜ୍ଞାନ କଂଗ୍ରେସ ଅନୁଷ୍ଠିତ ନ କରାଇବାକୁ ହୋଇଥିବା ମାମଲାକୁ ବିଚାର କରି ଆବେଦନକାରୀମାନଙ୍କ ପ୍ରାର୍ଥନାକୁ ଖାରଜ କରି ସେମାନଙ୍କ ବିରୋଧରେ କଟୁ ମନ୍ତବ୍ୟ ପ୍ରଦାନ କରିଥିଲେ। ଏହି ୯୯ତମ ଭାରତୀୟ ବିଜ୍ଞାନ କଂଗ୍ରେସ ଜାନୁୟାରୀ ୩-୭ ତାରିଖ ୫ ଦିନ ଧରି ଅନୁଷ୍ଠିତ ହୋଇ ଅଭୂତପୂର୍ବ ସାଫଲ୍ୟ ଅର୍ଜନ କରିବା କିଛି ମୁଷ୍ଟିମେୟ ବ୍ୟକ୍ତିଙ୍କୁ ଅସହ୍ୟ ହୋଇଛି ଏବଂ ସେମାନେ ନକ୍ଷତ୍ର ନ୍ୟୁଜ ଚ୍ୟାନେଲକୁ ପ୍ରଭାବିତ କରି ଗତ କିଛିମାସ ହେବ ଡକ୍ଟର ସାମନ୍ତ ଓ କିଟ୍-କିସ୍-କିମ୍ସ ସଂପର୍କରେ ବହୁ ରୁଚିହୀନ ମନଗଢ଼ା ସମ୍ବାଦମାନ ବାରମ୍ବାର ପରିବେଷଣ କରୁଛନ୍ତି ଏବଂ ଡକ୍ଟର ସାମନ୍ତଙ୍କ ମର୍ଯ୍ୟାଦା ହାନି କରିବାକୁ ଭାରତ ସରକାରଙ୍କ ବିଭିନ୍ନ ମନ୍ତ୍ରଣାଳୟ ସହିତ ଯୋଗାଯୋଗ କରୁଛନ୍ତି। ଏହି କାର୍ଯ୍ୟ କରିବା ପାଇଁ ସେମାନେ ବହୁ ଲୋକଙ୍କୁ ନିଯୁକ୍ତି କରି ଅଜସ୍ର ଅର୍ଥ ବ୍ୟୟ କରୁଛନ୍ତି। ମାତ୍ର ଡକ୍ଟର ସାମନ୍ତଙ୍କ ଭଳି ଜଣେ ଉଦାର ହୃଦୟ ଓ ଦୃଢ଼ମନା ବ୍ୟକ୍ତିଙ୍କୁ ତାଙ୍କ ଲକ୍ଷ୍ୟ ସ୍ଥଳରୁ ବିଚ୍ୟୁତ କରିହେବ ନାହିଁ। ସେ ନିଜର ଶୈଶବରୁ ଅସହନୀୟ ପରିବେଶର ସମ୍ମୁଖୀନ ହୋଇଛନ୍ତି। ମାତ୍ର ୪ ବର୍ଷ ବୟସରେ ନିଜ ପିତାଙ୍କ ମୃତ୍ୟୁ ପରେ ସରଳ ଜୀବନଯାପନ କରି ସେ ଗଭୀର ଆତ୍ମବିଶ୍ୱାସ ଓ ଦାୟିତ୍ୱବୋଧକୁ ଏକ ସାଧାରଣ ଅଭ୍ୟାସରେ ପରିଣତ କରିଛନ୍ତି। ଓଡ଼ିଶାରେ ଶିକ୍ଷାର ପ୍ରସାର ଓ ଉତ୍କର୍ଷ ସାଧନ ପାଇଁ ସେ କାର୍ଯ୍ୟରତ ଅଛନ୍ତି। ତାଙ୍କ ପ୍ରତି ଈର୍ଷା ପ୍ରଣୋଦିତ ଓ କୁତ୍ସାରଟନା କରୁଥିବା ବ୍ୟକ୍ତିମାନେ ଭାରତରେ ଓ ବିଦେଶରେ ଓଡ଼ିଶାର ଯେ ସମ୍ମାନ ହାନୀ କରୁଛନ୍ତି ଏକଥା ବୋଧହୁଏ ଜାଣିପାରୁ ନାହାନ୍ତି। ରାଜ୍ୟର ବୁଦ୍ଧିଜୀବୀ ଓ ସାଧାରଣ ଲୋକମାନେ ଅଚ୍ୟୁତ ସାମନ୍ତଙ୍କୁ ଶିକ୍ଷା ଜଗତରେ ଏକ କିମ୍ବଦନ୍ତୀ ପୁରୁଷ ଭାବେ ପରିଗଣିତ କରିଛନ୍ତି। ସେମାନେ ତାଙ୍କ ନିଷ୍ଠାପର ଉଦ୍ୟମର ପ୍ରଶଂସକ। କିନ୍ତୁ ଏହି ନିନ୍ଦୁକ ଗୋଷ୍ଠୀର କାର୍ଯ୍ୟ ସମସ୍ତଙ୍କୁ ମର୍ମାହତ କରିଛି।

ଡକ୍ଟର ସାମନ୍ତଙ୍କ ପ୍ରଚଣ୍ଡ ପ୍ରତିଭା, କର୍ମତତ୍ପରତା, ନିଷ୍ଠା, ତ୍ୟାଗ ସମସ୍ତଙ୍କୁ ଜଣା। ଯେଉଁମାନଙ୍କ ସ୍ୱାର୍ଥସିଦ୍ଧିରେ ବାଧା ଉପୁଜିଛି ସେମାନେ ଈର୍ଷାନ୍ୱିତ ହୋଇ ଷଡ଼ଯନ୍ତ୍ରରେ ଲିପ୍ତ ଅଛନ୍ତି। ଅଚ୍ୟୁତ ସାମନ୍ତ ରାଜ୍ୟର ହିତ ପାଇଁ ସଂଗ୍ରାମରତ ଅଛନ୍ତି। ଈଶ୍ୱର ଓ ନିଜ ମା'ଙ୍କ ବ୍ୟତୀତ ସେ ଆଉ କାହାରି ପାଖରେ ମୁଣ୍ଡ ନୁଆଁଇ ନାହାନ୍ତି। ସମସ୍ତ ଈର୍ଷା, ଚକ୍ରାନ୍ତ, ଅପବାଦ ସତ୍ତ୍ୱେ ତାଙ୍କର କୀର୍ତ୍ତି ଚିରକାଳ ଯାଜ୍ଜ୍ୱଲ୍ୟମାନ ହୋଇ ରହିବ। ସେ ଜଣେ ଯଶସ୍ୱୀ ପୁରୁଷ, ଏହା ନିସନ୍ଦେହ।

*ସମ୍ବାଦ କଳିକା, ୧୮.୪.୨୦୧୨*

# ଅଖିଳ ଭାରତୀୟ କୁଳପତି ସମ୍ମିଳନୀ : ଏକ ଦୃଷ୍ଟିପାତ

କିଟ୍ ବିଶ୍ୱବିଦ୍ୟାଳୟ ପରିସରରେ ୨୫ ଫେବୃୟାରୀରୁ ଆରମ୍ଭ ହୋଇ ଅଖିଳ ଭାରତୀୟ କୁଳପତି ସମ୍ମିଳନୀ ୨୭ ତାରିଖରେ ସମାପନ ହୋଇଛି। ଓଡ଼ିଶା ପାଇଁ ଗୌରବର କଥା ଯେ ଅଖିଳ ଭାରତୀୟ ବିଶ୍ୱବିଦ୍ୟାଳୟ ସଂଘର ୮୮ତମ ଅଧିବେଶନ ଦୀର୍ଘ ୬୭ ବର୍ଷ ପରେ କିଟ୍ ବିଶ୍ୱବିଦ୍ୟାଳୟରେ ଆୟୋଜିତ ହୋଇପାରିଛି। ପୂର୍ବରୁ ୧୯୪୭ ମସିହାରେ ରେଭେନ୍ସା ମହାବିଦ୍ୟାଳୟରେ ଅଖିଳ ଭାରତୀୟ ବିଶ୍ୱବିଦ୍ୟାଳୟ ସଂଘର ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା। ଏହି ସମ୍ମିଳନୀରେ ଦେଶରେ ଉଚ୍ଚଶିକ୍ଷାର ମାନଦଣ୍ଡ ଉପରେ ବିସ୍ତୃତ ଆଲୋଚନା କରାଯାଇ ଏହା ନିମ୍ନଗାମୀ ହେଉଥିବାରୁ ଗଭୀର ଉଦ୍‌ବେଗ ପ୍ରକାଶ ପାଇଥିଲା। ଉଚ୍ଚଶିକ୍ଷା କ୍ଷେତ୍ରରେ କିଭଳି ଗୁଣାତ୍ମକ ମାନ ବୃଦ୍ଧି କରାଯାଇ ଏହାକୁ ବିଶ୍ୱସ୍ତରୀୟ କରାଯିବ ସେ ବିଷୟରେ ଆଲୋଚନା କରାଯାଇଥିଲା। ଏଥିସହିତ ରାଷ୍ଟ୍ରୀୟ ଉଚ୍ଚତର ଶିକ୍ଷା ଅଭିଯାନ ଉପରେ ଆୟୋଜିତ ଜାତୀୟ ଆଲୋଚନାଚକ୍ରରେ ୨୦୨୦ ମସିହା ସୁଦ୍ଧା ଦେଶର ସମସ୍ତ ଯୁବବର୍ଗ ଯେଭଳି ଉଚ୍ଚଶିକ୍ଷା ପରିସରଭୁକ୍ତ ହୋଇପାରିବେ, ସେ ବିଷୟରେ କୁଳପତିମାନେ ସେମାନଙ୍କ ମତାମତ ରଖିଥିଲେ।

ସ୍ମରଣଯୋଗ୍ୟ ଯେ, ଡିସେମ୍ବର ୧୮, ୨୦୧୩ ମସିହାରେ ଦିଲ୍ଲୀଠାରେ ହୋଟେଲ ଲେ ମେରିଡିଆନ୍‌ରେ ଦେଶର କୁଳପତିମାନଙ୍କର ଏକ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା ଯେଉଁଥିରେ ରୁସାର ଲକ୍ଷ୍ୟ ହାସଲ କ୍ଷେତ୍ରରେ ସୁଯୋଗ ଓ ପ୍ରତିବନ୍ଧକ ଉପରେ ଆଲୋଚନା କରାଯାଇଥିଲା। ଏହି ସମ୍ମିଳନୀରେ କୁଳପତିମାନଙ୍କ ବ୍ୟତୀତ ଶିଳ୍ପ, ଶିକ୍ଷା, ମାନବ ସମ୍ବଳ ବିକାଶ ପ୍ରଭୃତି କ୍ଷେତ୍ରରୁ ୧୫୦ ଜଣ ପ୍ରତିନିଧି ଯୋଗଦାନ କରିଥିଲେ। ୨୦୧୩ ଡିସେମ୍ବରରେ ଅନୁଷ୍ଠିତ ସମ୍ମିଳନୀ ଓ କିଟ୍‌ରେ ହୋଇଥିବା କୁଳପତିମାନଙ୍କ ସମ୍ମିଳନୀ ଉଭୟରେ ଆବଶ୍ୟକ ଅର୍ଥର ଅଭାବ ଓ ଯୋଗ୍ୟତାସମ୍ପନ୍ନ ଶିକ୍ଷକଙ୍କ ଅଭାବ ଶିକ୍ଷାର ଗୁଣାତ୍ମକ ମାନ ବୃଦ୍ଧି କରିବାରେ ଅନ୍ତରାୟ ହେଉଛି ବୋଲି ମତପ୍ରକାଶ ପାଇଥିଲା। ୨୦୧୨-୧୩ର ଅଖିଳ ଭାରତୀୟ ବିଶ୍ୱବିଦ୍ୟାଳୟ ସଂଘର

୫ଟି ଜୋନ୍‌ରେ ଅନୁଷ୍ଠିତ ହୋଇଥିବା କୁଳପତିମାନଙ୍କ ସମ୍ମିଳନୀରେ ମଧ୍ୟ ଅନୁରୂପ ମତ ପ୍ରକାଶ ପାଇଥିଲା ।

ଅଖିଳ ଭାରତୀୟ ବିଶ୍ୱବିଦ୍ୟାଳୟ ସଂଘର ଜର୍ଣ୍ଣାଲ୍ (ଫେବୃୟାରୀ ୧୭-୨୩, ୨୦୧୪ ସଂଖ୍ୟା)ର ସମ୍ପାଦକୀୟରେ ପ୍ରକାଶିତ ତଥ୍ୟ ପ୍ରତି କୁଳପତିମାନଙ୍କର ଦୃଷ୍ଟି ଆକର୍ଷିତ ହୋଇଥିଲା । ଏହି ତଥ୍ୟ ଅନୁଯାୟୀ ବିଶ୍ୱର ଶ୍ରେଷ୍ଠ ୨୦୦ ଶିକ୍ଷାନୁଷ୍ଠାନ ମଧ୍ୟରେ ଭାରତର ଗୋଟିଏ ବି ଶିକ୍ଷାନୁଷ୍ଠାନ ସ୍ଥାନ ପାଇନାହିଁ । ବିଶ୍ୱର ପ୍ରଥମ ୫୦୦ ଶିକ୍ଷାନୁଷ୍ଠାନ ମଧ୍ୟରେ ଖୁବ୍ ଅଳ୍ପ ସଂଖ୍ୟକ ଶିକ୍ଷାନୁଷ୍ଠାନ ନିଜର ସ୍ଥାନ ପାଇବା ପାଇଁ ସକ୍ଷମ ହୋଇଛନ୍ତି । ଅନ୍ୟପକ୍ଷରେ ଚାଇନାର ୨୩ଟି ଶିକ୍ଷାନୁଷ୍ଠାନ ପ୍ରଥମ ୫୦୦ ଭିତରେ ସ୍ଥାନ ପାଇଛି । ଆମ ଦେଶର ମର୍ଯ୍ୟାଦାସମ୍ପନ୍ନ ଆଇ.ଆଇ.ଟି.ଗୁଡ଼ିକର ୩୦ରୁ ୩୫ ପ୍ରତିଶତ ଅଧ୍ୟାପକ ପଦବୀ ଖାଲି ରହିଥିଲାବେଳେ, ରାଜ୍ୟ ବିଶ୍ୱବିଦ୍ୟାଳୟଗୁଡ଼ିକରେ ପ୍ରାୟ ୫୦ ପ୍ରତିଶତ ପଦବୀ ଖାଲି ରହୁଥିବାରୁ ଶିକ୍ଷାଦାନର ମାନ କମିବାରେ ଲାଗିଛି ।

୨୫, ଫେବୃୟାରୀରେ କୁଳପତିମାନଙ୍କର ସମ୍ମିଳନୀର ଉଦ୍‌ଘାଟନୀ ଉତ୍ସବରେ ଓଡ଼ିଶାର ମହାମହିମ ରାଜ୍ୟପାଳ ଉଚ୍ଚଶିକ୍ଷାର ମାନବୃଦ୍ଧି ଉପରେ ଗୁରୁତ୍ୱ ଆରୋପ କରିଥିଲେ । ସେ ଦେଶର ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟମାନଙ୍କରେ ଶିକ୍ଷାଦାନର ମାନ ଦିନକୁ ଦିନ ହ୍ରାସ ପାଉଛି ବୋଲି କହିଥିଲେ । ଉଚ୍ଚଶିକ୍ଷାରେ ଉନ୍ନତି ଆଣିବା ସହ ମୂଲ୍ୟଭିତ୍ତିକ ଶିକ୍ଷା ଉପରେ ଗୁରୁତ୍ୱ ଦିଆଯିବା ଉଚିତ୍ ବୋଲି ରାଜ୍ୟପାଳ ଡକ୍ଟର ଏ. ସି. ଜମିର୍ ଉଲ୍ଲେଖ କରିଥିଲେ । ଡକ୍ଟର ଜମିର ଜୋର୍‌ଦେଇ କହିଥିଲେ ଯେ ସରକାରୀ କଲେଜ୍ ଓ ବିଶ୍ୱବିଦ୍ୟାଳୟଗୁଡ଼ିକରେ ଅଧ୍ୟାପକଙ୍କ ଅଭାବ ଶିକ୍ଷାର ମାନ ହ୍ରାସ ପାଇଁ ଦାୟୀ । ଉଚ୍ଚଶିକ୍ଷାର ମାନରେ ଉନ୍ନତି ଆଣିବା ଲାଗି କୁଳପତି ଓ ଶିକ୍ଷାବିତ୍‌ମାନଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଦେଶର ସମସ୍ତ ଯୁବକ ଯୁବତୀମାନଙ୍କୁ ସମାନ ଓ ଉଚ୍ଚମାନର ଉଚ୍ଚଶିକ୍ଷା ଉପଲବ୍ଧ କରାଇବା ଉଦ୍ଦେଶ୍ୟରେ କେନ୍ଦ୍ର ସରକାର ରାଷ୍ଟ୍ରୀୟ ଉଚ୍ଚତର ଶିକ୍ଷା ଅଭିଯାନ କାର୍ଯ୍ୟକ୍ରମ ଆରମ୍ଭ କରିଛନ୍ତି । ଏଥିରେ ବର୍ତ୍ତମାନର ଶିକ୍ଷା ବ୍ୟବସ୍ଥାର ସୁଦୃଢ଼ୀକରଣ ସହ ଉତ୍କର୍ଷ ଉଚ୍ଚଶିକ୍ଷା ଉପରେ ଗୁରୁତ୍ୱ ଦିଆଯାଉଛି ବୋଲି ରାଜ୍ୟପାଳ ଡକ୍ଟର ଜମିର୍ କହିଥିଲେ ।

ଉଦ୍‌ଘାଟନୀ ଉତ୍ସବରେ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର ଉପାଧ୍ୟକ୍ଷ ପ୍ରଫେସର ଏଚ୍. ଦେବରାଜ କିଟ୍ କ୍ୟାମ୍ପସ୍ ଦେଖି ଅତ୍ୟନ୍ତ ଅଭିଭୂତ ହୋଇଥିବା କହିଥିଲେ । ଏହାର ଭିତ୍ତିଭୂମି ଏତେ ସୁନ୍ଦର ଓ ସୁବ୍ୟବସ୍ଥିତ ଯେ ଦେଶର ଅନ୍ୟ

କୌଣସି ବିଶ୍ୱବିଦ୍ୟାଳୟରେ ଏଭଳି ଭିତ୍ତିଭୂମି ଦେଖିନାହାନ୍ତି ବୋଲି ପ୍ରକାଶ କରିବା ସହ ଡକ୍ଟର ଅଚ୍ୟୁତ ସାମନ୍ତଙ୍କ ଭୂରିଭୂରି ପ୍ରଶଂସା କରିଥିଲେ।

ପରବର୍ତ୍ତୀ ଦୁଇଦିନରେ ବିଶ୍ୱବିଦ୍ୟାଳୟମାନଙ୍କର ସବୁ କୁଳପତି କିଟ୍ ଓ କିସ୍ ପରିଦର୍ଶନ କରି କିଟ୍‌ର ଭିତ୍ତିଭୂମି ବିଶ୍ୱସ୍ତରୀୟ ବୋଲି ପ୍ରକାଶ କରିଥିଲେ। କିସ୍‌ରେ ୨୦ ହଜାର ଆଦିବାସୀ ଛାତ୍ରଛାତ୍ରୀଙ୍କ ନିଃଶୁଳ୍କ ରହିବା, ଖାଇବା, ପଢ଼ିବା ବ୍ୟବସ୍ଥା ବିଶ୍ୱରେ ଅନ୍ୟ କୌଣସି ସ୍ଥାନରେ ସମ୍ଭବ ହୋଇପାରିନି ବୋଲି କହିବା ସଙ୍ଗେ ସଙ୍ଗେ ଅଚ୍ୟୁତ ସାମନ୍ତଙ୍କ ନିଷ୍ଠାପର ଉଦ୍ୟମର ପ୍ରଶଂସା କରିଥିଲେ।

ଓଡ଼ିଶା ପାଇଁ ଗୌରବର କଥା ଯେ ଦୁଇଜଣ ଓଡ଼ିଆ ପ୍ରଫେସର ଦୀପକ କୁମାର ବେହେରା, କୁଳପତି ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓ ପ୍ରଫେସର ଡି. ସି. ପାଣିଗ୍ରାହୀ, ନିର୍ଦ୍ଦେଶକ, Indian School of Mines, ଧାନବାଦ, Association of Indian Universitiesର Governing Councilର ସଭ୍ୟ ଅଛନ୍ତି।

ସାରା ଭାରତବର୍ଷରେ ୭୦୬ଟି ବିଶ୍ୱବିଦ୍ୟାଳୟ ବର୍ତ୍ତମାନ କାର୍ଯ୍ୟ କରୁଛି ଏବଂ ଏହି ଅନୁଷ୍ଠାନଗୁଡ଼ିକ କୁଳପତି କିମ୍ବା ସ୍ଥଳବିଶେଷରେ ନିର୍ଦ୍ଦେଶକମାନଙ୍କ ଦ୍ୱାରା ପରିଚାଳିତ ହେଉଛି। ଏମାନଙ୍କ ତତ୍ତ୍ୱାବଧାନରେ ଥିବା ମହାବିଦ୍ୟାଳୟମାନଙ୍କର ସଂଖ୍ୟା ୩୫,୫୩୯। ବିଶ୍ୱବିଦ୍ୟାଳୟଗୁଡ଼ିକର ସବିଶେଷ ବିବରଣୀ ନିମ୍ନ ସରଣୀରେ ଦିଆଯାଇଛି।

| କ୍ରମିକ ସଂଖ୍ୟା | | ବିଶ୍ୱବିଦ୍ୟାଳୟ/ଅନୁଷ୍ଠାନସଂଖ୍ୟା |
|---|---|---|
| ୧ | କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ | ୪୪ |
| ୨ | ରାଜ୍ୟ ବିଶ୍ୱବିଦ୍ୟାଳୟ | ୩୦୭ |
| ୩ | ଡିମ୍‌ଡ ବିଶ୍ୱବିଦ୍ୟାଳୟ | ୧୩୦ |
| ୪ | ଘରୋଇ ବିଶ୍ୱବିଦ୍ୟାଳୟ | ୧୭୦ |
| ୫ | ଜାତୀୟସ୍ତରୀୟ ଗୁରୁତ୍ୱପୂର୍ଣ୍ଣ ଅନୁଷ୍ଠାନ | ୫୦ |
| ୬ | ରାଜ୍ୟସ୍ତରୀୟ ଗୁରୁତ୍ୱପୂର୍ଣ୍ଣ ଅନୁଷ୍ଠାନ | ୫ |
| | | ମୋଟ୍ ୭୦୬ |

ଜାତୀୟ ଜ୍ଞାନ କମିଶନ୍ (National Knowledge Commission)ର ଅଧ୍ୟକ୍ଷ ସାମ୍‌ପିଟ୍ରୋଡା ପୂର୍ବରୁ ତାଙ୍କ ରିପୋର୍ଟରେ ଦର୍ଶାଇଛନ୍ତି ଯେ ୨୦୧୫ ସୁଦ୍ଧା ଆମ ଦେଶରେ ୧୫୦୦ ବିଶ୍ୱବିଦ୍ୟାଳୟର ଆବଶ୍ୟକତା ରହିଛି ଯେଉଁଥିପାଇଁ ସରକାର ଅର୍ଥର ବ୍ୟବସ୍ଥା କରିବା ଜରୁରୀ।

ଆଲୋଚନାରେ ଅଂଶଗ୍ରହଣ କରି କୁଳପତିମାନେ ଶିକ୍ଷାର ଗୁଣବତ୍ତା ସହ ଚାକିରୀରେ ସଂସ୍ଥାପନ ଯୋଡ଼ିହୋଇ ନ ରହିଲେ ସେହି ଶିକ୍ଷା ଅଲୋଡ଼ା ହୋଇ ରହିଯିବ ବୋଲି ମତପ୍ରକାଶ କରିଥିଲେ । ଏବେ ବେକାରୀ ସମସ୍ୟା ଯେପରି ବଢ଼ିଛି ଶିକ୍ଷାକୁ ପ୍ରୟୋଗଭିତ୍ତିକ କରାଯିବାର ଯଥେଷ୍ଟ ଆବଶ୍ୟକତା ରହିଛି ଯାହାଦ୍ୱାରା କି ନିଯୁକ୍ତି ସୁଯୋଗ ସୃଷ୍ଟି ହୋଇପାରିବ ।

କିଟ୍ ଓ କିସ୍‌ର ପ୍ରତିଷ୍ଠାତା ଓ ବିଶ୍ୱବିଦ୍ୟାଳୟ ମଞ୍ଜୁରୀ କମିଶନର ସଦସ୍ୟ ଡକ୍ଟର ଅଚ୍ୟୁତ ସାମନ୍ତଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଆୟୋଜିତ ଏହି ତିନି ଦିନିଆ ସମ୍ମିଳନୀ ଅତି ଉଚ୍ଚକୋଟୀର ଓ ଆନ୍ତର୍ଜାତୀୟ ସ୍ତରର ହୋଇଥିବା, ସମ୍ମିଳନୀରେ ଯୋଗଦେଇଥିବା ପ୍ରତିନିଧିମାନେ ମତ ପ୍ରକାଶ କରିଥିଲେ ।

କିଟ୍ ବିଶ୍ୱବିଦ୍ୟାଳୟରେ ଅନୁଷ୍ଠିତ ଏହି ତିନି ଦିନିଆ କୁଳପତି ସମ୍ମିଳନୀରେ ୨୬୦ ଜଣ କୁଳପତି, ମାନବ ସମ୍ବଳ ବିକାଶ ବିଭାଗର ଉଚ୍ଚ ପଦାଧିକାରୀ ଓ ଦେଶ ବିଦେଶର ବିଶିଷ୍ଟ ଶିକ୍ଷାବିତ୍‌ମାନେ ଯୋଗ ଦେଇଥିଲେ । ସମସ୍ତେ କିଟ୍‌ର ଆୟୋଜନ, ଖାଦ୍ୟପେୟ, ରହିବା ଓ ଗମାନଗମନର ବ୍ୟବସ୍ଥା ଅତି ସୁନ୍ଦର ଭାବରେ ହୋଇଥିବା ଯୋଗୁଁ କିଟ୍ ଓ କିସ୍‌ର ପ୍ରତିଷ୍ଠାତା ବିଶିଷ୍ଟ ଶିକ୍ଷାବିତ୍ ଓ ସମାଜସେବୀ ଡକ୍ଟର ଅଚ୍ୟୁତ ସାମନ୍ତଙ୍କ ଦୂରଦୃଷ୍ଟିସମ୍ପନ୍ନ ବ୍ୟକ୍ତିତ୍ୱ ଓ ସଂଗଠନ ଶକ୍ତି ଅନୁକରଣୀୟ ବୋଲି ମତବ୍ୟକ୍ତ କରିଥିଲେ । ଓଡ଼ିଶାରେ ସେମାନେ ଯେଉଁଳି ଆତିଥ୍ୟ ପାଇଛନ୍ତି ତାହା ଏକ ଅପାସୋରା ଅନୁଭୂତି ବୋଲି ବର୍ଣ୍ଣନା କରିଥିଲେ ।

*ସମାଜ, ୯.୩.୨୦୧୪*

# ଓଡ଼ିଶାର ଏକ ଆଦର୍ଶ ଗ୍ରାମ କଲରାବାଙ୍କ

୨୮ ଫେବୃଆରୀ, ୨୦୧୪ ଦିନ କାନାରା ବ୍ୟାଙ୍କର ଏକ ଶାଖା କଟକ ଜିଲ୍ଲା ନିଶ୍ଚିନ୍ତକୋଇଲି ବ୍ଲକ୍ ଅନ୍ତର୍ଗତ ମାଣପୁର ପଞ୍ଚାୟତର କଲରାବାଙ୍କ ଗ୍ରାମରେ ଉଦ୍‌ଘାଟିତ ହୋଇଥିଲା । ଏହି ବ୍ୟାଙ୍କର ଶୁଭ ଉଦ୍‌ଘାଟନ ଅବସରରେ କିଟ୍ ଓ କିସ୍‌ର ପ୍ରତିଷ୍ଠାତା ଡକ୍ଟର ଅଚ୍ୟୁତ ସାମନ୍ତଙ୍କ ସଭାପତିତ୍ୱରେ ଏକ ସଭା ଅନୁଷ୍ଠିତ ହୋଇଥିଲା । ମୋତେ ମୁଖ୍ୟ ଅତିଥି ଭାବେ ଯୋଗଦେବାର ସୁଯୋଗ ମିଳିଥିଲା । ଏହି ଗ୍ରାମଟି କଟକରୁ ପ୍ରାୟ ୨୮ କିଲୋମିଟର ଦୂରରେ ଅବସ୍ଥିତ । କନ୍ଦରପୁରରୁ ପାରାଦୀପ ଗଲାବେଳେ ରଘୁନାଥପୁର ପୂର୍ବରୁ କଣ୍ଟୁଆର ଛକରୁ ବାମପଟେ ଏକ ୩୦ ଫୁଟିଆ ଚଉଡ଼ା ରାସ୍ତାରେ ପ୍ରାୟ ଦୁଇ କିଲୋମିଟର ପରେ କଲରାବାଙ୍କ ଗ୍ରାମ ପଡ଼େ । କାନାରା ବ୍ୟାଙ୍କର ଉଦ୍‌ଘାଟନୀ ସଭା ଶେଷହେବା ପରେ ମୋର ଗ୍ରାମଟି ବୁଲି ଦେଖିବାକୁ ପ୍ରବଳ ଇଚ୍ଛା ଜାଗ୍ରତ ହୋଇଥିଲା । ପୂର୍ବରୁ ଶୁଣିଥିଲି ଯେ ଡକ୍ଟର ଅଚ୍ୟୁତ ସାମନ୍ତ ଏହି ଗ୍ରାମରେ ଜନ୍ମଗ୍ରହଣ କରି ତାଙ୍କ ପିଲାଦିନ ଏଠାରେ କଟାଇଥିଲେ ଏବଂ ଏହି ଗ୍ରାମଟିକୁ ଏକ ଆଦର୍ଶ ଗ୍ରାମରେ ପରିଣତ କରିବାକୁ ସବୁବେଳେ ଉଦ୍ୟମ ଜାରି ରଖିଛନ୍ତି । ଶୁଣିଥିଲି ଯେ ପୂର୍ବତନ ରାଜ୍ୟପାଳ ଶ୍ରୀ ରାମେଶ୍ୱର ଠାକୁର ୨୦୦୬ ମସିହାରେ ଏହି ଗ୍ରାମ ପରିଦର୍ଶନ କରି ଏହାକୁ ଆଦର୍ଶ ଗ୍ରାମର ମାନ୍ୟତା ଦେଇଛନ୍ତି । ସ୍ୱଚକ୍ଷୁରେ ଦେଖିଲି ଏକ ଫଳକ ଯେଉଁଥିରେ ଏହି କଥା ଉଲ୍ଲେଖ ରହିଛି । ଚାଣକ୍ୟଙ୍କ ନୀତିଶ୍ଲୋକରେ ଉଲ୍ଲେଖ ରହିଛି—

ଧନିକଃ ଶ୍ରୋତ୍ରିୟୋ ରାଜା ନଦୀ ବୈଦ୍ୟସ୍ତୁ ପଞ୍ଚମଃ
ପଞ୍ଚ ଯତ୍ର ନ ବିଦ୍ୟନ୍ତେ ତତ୍ର ବାସଂ ନ କାରୟେତ୍ ।

ଏହାର ଅର୍ଥ ହେଲା ଯେଉଁ ସ୍ଥାନରେ ଧନୀଲୋକ, ଶ୍ରୋତ୍ରିୟ ବ୍ରାହ୍ମଣ, ରାଜା, ନଦୀ ଓ ବୈଦ୍ୟ ଏହି ପାଞ୍ଚଜଣ ନ ଥାନ୍ତି ସେଠାରେ ବାସ କରିବା ଉଚିତ୍ ନୁହେଁ । ଏହି ନିଷେଧ ନ ମାନି ବାସକଲେ ବିପଦ ସୁନିଶ୍ଚିତ । ଉପରୋକ୍ତ ସବୁ ସୁବିଧା କଲରାବାଙ୍କ ଗ୍ରାମରେ ଥିବାବେଳେ ଅନ୍ୟ ବହୁ ଜନହିତକାରୀ ଯୋଜନାମାନ ଡକ୍ଟର ସାମନ୍ତଙ୍କ ଉଦ୍ୟମ ଯୋଗୁଁ ଏଠାରେ ଉପଲବ୍ଧ ହେଉଛି ।

କଲରାବାଙ୍କ ଗ୍ରାମ ନିକଟରେ ମହାନଦୀର ଶାଖା 'ଶୁକପାଇକା' ଉପନଦୀ କୁଳୁକୁଳୁ ନାଦ କରି ବହିଯାଉଛି। ଗ୍ରାମରେ ପ୍ରାୟ ଶହେ ବର୍ଷ ତଳର କାଳୀମନ୍ଦିର ରହିଥିବାରୁ ସେଠାରେ ବ୍ରାହ୍ମଣମାନେ ମଧ୍ୟ ଅନ୍ୟାନ୍ୟ ଜାତିର ଲୋକଙ୍କ ସହିତ ବାସ କରୁଛନ୍ତି। ଗ୍ରାମବାସୀଙ୍କ ସ୍ୱାସ୍ଥ୍ୟର ଯତ୍ନ ପାଇଁ ଅଚ୍ୟୁତ ସାମନ୍ତଙ୍କ ଦ୍ୱାରା ୧୦ ଶଯ୍ୟାବିଶିଷ୍ଟ ଏକ ଡାକ୍ତରଖାନା ୨୦୦୬ ମସିହାରୁ ପ୍ରତିଷ୍ଠା କରାଯାଇଛି। ଏହି ଡାକ୍ତରଖାନାରେ ଅତ୍ୟାଧୁନିକ ଯନ୍ତ୍ରପାତି ଓ ତିନି ଜଣ ଡାକ୍ତର ସବୁବେଳେ ରହୁଥିବାରୁ ଆଖପାଖ ଅଞ୍ଚଳର ବହୁ ରୋଗୀ ଚିକିତ୍ସା ସୁବିଧା ପାଇପାରୁଛନ୍ତି। ୧୯୯୮ ମସିହାରେ ପ୍ରତିଷ୍ଠିତ ଏକ ଉଚ୍ଚ ମାଧ୍ୟମିକ ବିଦ୍ୟାଳୟରେ ସ୍ଥାନୀୟ ପିଲାମାନେ ପାଠ ପଢୁଛନ୍ତି। ଡକ୍ଟର ଅଚ୍ୟୁତ ସାମନ୍ତ ନିଜ ଗ୍ରାମବାସୀ ଓ ଆଖପାଖ ଗ୍ରାମର ଲୋକଙ୍କ ଅନୁରୋଧ ରକ୍ଷାକରି ଏଠାରେ ଏକ ଇଂଲିଶ୍ ମିଡିୟମ୍ ସ୍କୁଲ ପ୍ରତିଷ୍ଠା କରିଛନ୍ତି। ଗ୍ରାମରେ ବହୁବର୍ଷ ହେଲା ଏକ ପୋଷ୍ଟ ଅଫିସ କାର୍ଯ୍ୟ କରୁଥିଲା। କିନ୍ତୁ ମାଣପୁର ପଞ୍ଚାୟତର ଲୋକମାନେ ଏକ ଥାନାର ଅଭାବ ଅନୁଭବ କରୁଥିଲେ। ଡକ୍ଟର ସାମନ୍ତଙ୍କ ଉଦ୍ୟମରେ କଲରାବାଙ୍କରେ ୨୦୦୬ ମସିହାରୁ ଏକ ପୋଲିସ ଫାଣ୍ଡି ପ୍ରତିଷ୍ଠା ହୋଇ ଲୋକମାନଙ୍କର ବହୁଦିନର ଅସୁବିଧା ଦୂର କରିପାରିଛି। ଏହି ଫାଣ୍ଡିଟିକୁ ଥାନାରେ ପରିଣତ କରିବାକୁ ଡକ୍ଟର ସାମନ୍ତ ନିଜର ଉଦ୍ୟମ ଜାରୀ ରଖିଛନ୍ତି। ଏହି ଗ୍ରାମରେ ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିଆନ ଆଦି ବିଭିନ୍ନ ଧର୍ମର ପ୍ରାୟ ବାର ଶହ ଲୋକ ଶାନ୍ତି ସୌହାର୍ଦ୍ଦ୍ୟର ସହିତ ବାସ କରୁଛନ୍ତି। ଗ୍ରାମରେ ନାରୀମାନେ ଏକ ନାରୀ ମଙ୍ଗଳ ସମିତି ଗଠନ କରିଛନ୍ତି ଯାହାକୁ ଡକ୍ଟର ସାମନ୍ତଙ୍କ ସାନଭଉଣୀ ଡକ୍ଟର ଇତି ସାମନ୍ତ ସବୁବେଳେ ସହଯୋଗ ପ୍ରଦାନ କରୁଛନ୍ତି। ଏହି ଗ୍ରାମରେ କେତେଗୁଡ଼ିଏ ସ୍ୱୟଂ ସହାୟକ ଗୋଷ୍ଠୀ ଅର୍ଥ ଉପାର୍ଜନକାରୀ କାର୍ଯ୍ୟରେ ରତ ରହି ମହିଳା ସଶକ୍ତିକରଣରେ ସହାୟକ ହେଉଛନ୍ତି।

ଏହି ଗ୍ରାମର ଅଧିବାସୀମାନେ ସ୍ୱାଧୀନତା ସଂଗ୍ରାମରେ ଭାଗନେଇ ବହୁ କଷ୍ଟ ସ୍ୱୀକାର କରିଥିଲେ। ସ୍ୱର୍ଗତା କିରଣବାଲା ସାମନ୍ତ ସେହି ସ୍ୱାଧୀନତା ସଂଗ୍ରାମୀମାନଙ୍କ ମଧ୍ୟରେ ଥିଲେ ଅଗ୍ରଗଣ୍ୟ। ରମାଦେବୀ, ମାଳତୀ ଚୌଧୁରୀ, ସରଳାଦେବୀଙ୍କ ଆଦର୍ଶ କିରଣବାଳାଙ୍କୁ ଅନୁପ୍ରାଣିତ କରିଥିଲା।

ଗ୍ରାମର ବହୁ ପରିବାର କୃଷି ଉପରେ ନିର୍ଭର କରନ୍ତି। ସେମାନେ ସାର, ବିହନ, କୃଷି ଯନ୍ତ୍ରପାତି ଖରିଦ କରିବାକୁ ସରକାରଙ୍କଦ୍ୱାରା ବ୍ଲକ୍ ମାଧ୍ୟମରେ ଦିଆଯାଉଥିବା କୃଷି ଋଣର ସୁଯୋଗ ନେଇ ନିଜ ଜମିରେ ଅଧିକ ଶସ୍ୟ ଅମଳ କରିବାରେ ସକ୍ଷମ

ହୋଇପାରିଛନ୍ତି। ଗ୍ରାମ ଚାରିପଟେ ଗ୍ରାମବାସୀମାନେ ବୃକ୍ଷରୋପଣ କରି ଗାଁଟିକୁ ସବୁଜସୁନ୍ଦର କରିବାରେ ପ୍ରୟାସ କରୁଛନ୍ତି। ମୁଁ ବୁଲିଲାବେଳେ କେତେକ କୃଷକଙ୍କ ସହିତ ଆଲୋଚନା କଲି ଏବଂ ସମସ୍ତେ କହିଲେ ଆମକୁ ଏକାଠି କରି ଅଚ୍ୟୁତ ସାମନ୍ତ ସରକାରୀ ସାହାଯ୍ୟ ନେବାକୁ ପ୍ରବର୍ତ୍ତାଇଲେ ଓ ସେ ଜିଲ୍ଲାପାଳ ଓ ବିଡିଓମାନଙ୍କୁ ଫୋନ୍‌କରି ଆମ ଗ୍ରାମକୁ କ୍ଷେତ୍ର କର୍ମଚାରୀମାନଙ୍କୁ ପଠାଇବାକୁ ଅନୁରୋଧ କରିଥିଲେ ଏବଂ ସେମାନଙ୍କ ଦିଗ୍‌ଦର୍ଶନରେ କାମକରି ଆମେ ଉପକୃତ ହୋଇଛୁ। ଗ୍ରାମ ପୋଖରୀଗୁଡ଼ିକରେ ମାଛଚାଷ ହେଉଛି। ଏହି ଗ୍ରାମରେ କିଛି ଆଦିବାସୀ ରହିଥିବା ଜାଣି ତାଙ୍କ ବସ୍ତିକୁ ଯାଇଥିଲି। ସେମାନେ ମତ୍ସ୍ୟଚାଷ, କୁକୁଡ଼ାଚାଷ, ଛେଳି ଚାଷ ଇତ୍ୟାଦିରେ ବ୍ୟାପୃକ୍ତ ଥାଇ ସ୍ୱଚ୍ଛଳ ଅବସ୍ଥାରେ ବାସ କରୁଛନ୍ତି। ଗ୍ରାମରେ ଗୋପାଳନ କରି 'ଓମ୍‌ଫେଡ୍'କୁ ଗ୍ରାମବାସୀମାନେ ଦୁଗ୍ଧ ଯୋଗାଇ ଦେଉଛନ୍ତି ଏବଂ ତାଦ୍ୱାରା ଲାଭବାନ ହେଉଛନ୍ତି।

ଶେଷ କରିବା ପୂର୍ବରୁ କାନାରା ବ୍ୟାଙ୍କର ଯେଉଁ ଶାଖାଟି କଲରାବାଙ୍କରେ ପ୍ରତିଷ୍ଠିତ ହେଲା ସେଠାରେ ଯୋଗଦେଇଥିବା ଦୁଇଜଣ ବରିଷ୍ଠ ବ୍ୟାଙ୍କ ଅଫିସର ଶ୍ରୀ ରାଜେନ୍ଦ୍ର କୁମାର ସ୍ୱାଇଁ, ଡେପୁଟି ଜେନେରାଲ ମ୍ୟାନେଜର ଓ ଶ୍ରୀ ଧୋବେଇ ପ୍ରଧାନ, ଆସିଷ୍ଟାଣ୍ଟ ଜେନେରାଲ ମ୍ୟାନେଜର ଗ୍ରାମବାସୀମାନଙ୍କୁ ଯେଉଁ କେତେକ ଉପଦେଶ ଦେଇଥିଲେ ସେଥିରୁ କିଛି ଉଲ୍ଲେଖ କରିବା ଉଚିତ ମନେକରୁଛି। ଡି.ଜି.ଏମ୍. ରାଜେନ୍ଦ୍ରବାବୁ କହିଥିଲେ ଯେ ଗ୍ରାମାଞ୍ଚଳର ସର୍ବାଙ୍ଗୀନ ଉନ୍ନତି ତଥା ଗ୍ରାମବାସୀମାନଙ୍କୁ ଅର୍ଥନୈତିକ ସ୍ୱାବଲମ୍ବନଶୀଳ କରିବାରେ କାନାରା ବ୍ୟାଙ୍କର ଶାଖା ସବୁମତେ ସହଯୋଗ କରିବ। କୃଷିର ଉନ୍ନତି ପାଇଁ, ପଶୁପାଳନ କରିବା ପାଇଁ, ମତ୍ସ୍ୟଚାଳ କରିବାକୁ ଗାଡ଼ିଆ ପୋଖରୀ ଖୋଳିବାକୁ ବ୍ୟାଙ୍କ୍ ନାମମାତ୍ର ସୁଧରେ ଋଣ ଦେବ। ଛେଳି, ମେଣ୍ଢା, ମଇଁଷି, ଗାଈ, କୁକୁଡ଼ା ଓ ବତକ ପ୍ରଭୃତି ପାଳନ କରିବାକୁ ବ୍ୟାଙ୍କ ଋଣ ଦେବ। ଗାଁରେ କୁଟୀରଶିଳ୍ପ ପ୍ରତିଷ୍ଠା କରିବାକୁ ଘରୋଇ ଉଦ୍ୟମରେ ପାଉଁରୁଟି, ବିସ୍କୁଟ, ସାବୁନ, ଦିଆସିଲି, ମହମବତୀ ପ୍ରଭୃତି ତିଆରି କରି ସେମାନଙ୍କ ଆର୍ଥିକ ଉନ୍ନତି ଘଟାଇବାକୁ ବ୍ୟାଙ୍କ କେବଳ ଋଣ ପ୍ରଦାନ କରିବ ନାହିଁ, ସେମାନଙ୍କୁ ତାଲିମ ପ୍ରଦାନ କରିବାରେ ମଧ୍ୟ ସହାୟକ ହେବ। ଏ.ଜି.ଏମ୍. ଶ୍ରୀଯୁକ୍ତ ଧୋବେଇ ପ୍ରଧାନ ମଧ୍ୟ ଉପରୋକ୍ତ ବିଷୟବସ୍ତୁ ଉପରେ କଲରାବାଙ୍କ ଗ୍ରାମ, ମାଣପୁର ପଞ୍ଚାୟତ ଓ ରଘୁନାଥପୁର ଅଞ୍ଚଳବାସୀ ସୁଯୋଗ ନେବାକୁ ଆହ୍ୱାନ କରିଥିଲେ। ଡକ୍ଟର ଅଚ୍ୟୁତ

ସାମନ୍ତ ତାଙ୍କ ସଭାପତି ଭାଷଣରେ କହିଥିଲେ ଏହି ବ୍ୟାଙ୍କ ପ୍ରତିଷ୍ଠା ଦ୍ୱାରା ଗ୍ରାମାଞ୍ଚଳର ଗରିବ ଲୋକ ସେମାନଙ୍କ ସ୍ୱପ୍ନକୁ ସାକାର କରିବାରେ ସକ୍ଷମ ହେବେ। ବ୍ୟାଙ୍କ ହେଉଛି ଜନତାର ସୁଖଦୁଃଖର ବନ୍ଧୁ, ହିତାକାଂକ୍ଷୀ ଓ ମାର୍ଗଦର୍ଶକ। ତେଣୁ ବ୍ୟାଙ୍କରୁ ଋଣ ଗ୍ରହଣ କରି ଜନସାଧାରଣ ଯଥାସମୟରେ ଚୁକ୍ତି ଖିଲାପ ନକରି ବ୍ୟାଙ୍କ ଋଣ ପରିଶୋଧ କରିବା ଆବଶ୍ୟକ। ଯେଉଁଥିପାଇଁ ସେମାନେ ଋଣ ଗ୍ରହଣ କରନ୍ତି, ସେ ଋଣକୁ ସେହି କାମରେ ବିନିଯୋଗ ନକରି ଦାୟିତ୍ୱହୀନ ଭାବରେ ଅନ୍ୟଦିଗରେ ଖର୍ଚ୍ଚ କରିଦେଲେ ବ୍ୟାଙ୍କ ସହାୟତା ଅର୍ଥହୀନ ହୋଇପଡ଼େ। ତେଣୁ ଋଣଗ୍ରହୀତାମାନେ ନିଜନିଜର ଗୁରୁଦାୟିତ୍ୱ ବିଷୟରେ ସଚେତନ ରହିବା ଆବଶ୍ୟକ। ଗ୍ରାମାଞ୍ଚଳର ଛାତ୍ରମାନଙ୍କ ଭିତରେ ବ୍ୟାଙ୍କର କର୍ମଚାରୀମାନେ ସଞ୍ଚୟଶୀଳ ମନୋଭାବ ସୃଷ୍ଟି କରିବାକୁ ସେ ଅନୁରୋଧ ଜଣାଇଥିଲେ।

ସେ ଗ୍ରାମର ଧନୀକ ଶ୍ରେଣୀକୁ ନିଜନିଜ ସଞ୍ଚିତ ଅର୍ଥ ବ୍ୟାଙ୍କରେ ଜମା ରଖିବାକୁ ଅନୁରୋଧ କରିଥିଲେ। ତା'ଦ୍ୱାରା ବ୍ୟାଙ୍କ ଉପକୃତ ହେବ ଏବଂ ସେମାନେ ଟଙ୍କା ରଖିଥିବାରୁ ମାସକୁ ମାସ ସୁଧ ମଧ୍ୟ ପାଇବେ। ଏହି ସଭାରେ ଶ୍ରୀଯୁକ୍ତ ଅନ୍ତର୍ଯ୍ୟାମୀ ସାମନ୍ତ, ଅଂଜନ ସାମନ୍ତ, ଅଭିନ୍ନବାବୁ ଓ ସାମ୍ବାଦିକ ବିଜୟ ସ୍ୱାଇଁ ପ୍ରମୁଖ ନିଜର ବକ୍ତବ୍ୟ ରଖିଥିଲେ। ବ୍ୟାଙ୍କର ମ୍ୟାନେଜର ଶ୍ରୀଯୁକ୍ତ ଟିକନ୍ ପ୍ରଧାନ ସଭାରେ ଉପସ୍ଥିତ ଥିଲେ।

କାନାରା ବ୍ୟାଙ୍କ ଉନ୍ମୋଚନ ଉତ୍ସବରେ ଯୋଗଦେବା ଅବସରରେ କଲରାବାଙ୍କ ଗ୍ରାମଟି ଦେଖି ସେ ଗ୍ରାମରେ ଜନ୍ମଲାଭକରି ନିଜ ଶୈଶବ ଅତିବାହିତ କରିଥିବା ଡକ୍ଟର ଅଚ୍ୟୁତ ସାମନ୍ତଙ୍କ ପ୍ରଚେଷ୍ଟାରେ ଏହି ଗ୍ରାମ ଯେ ଏକ ଆଦର୍ଶ ଗ୍ରାମରେ ପରିଣତ ହୋଇଛି ସେ ବିଷୟରେ ମୁଁ ନିଃସନ୍ଦେହ ହୋଇଗଲି। ଓଡ଼ିଶାର ପ୍ରତ୍ୟେକ ଗ୍ରାମରେ ଜନ୍ମିତ ଶିକ୍ଷିତ ବ୍ୟକ୍ତିମାନେ ଯଦି ନିଜ ନିଜ ଗ୍ରାମବାସୀଙ୍କ ଉନ୍ନତି ପାଇଁ ମନପ୍ରାଣ ଦେଇ କାର୍ଯ୍ୟ କରନ୍ତେ ତେବେ ଓଡ଼ିଶାର ଲୋକମାନଙ୍କର ଭାଗ୍ୟରେ ପରିବର୍ତ୍ତନ ହୁଅନ୍ତା ଏବଂ ଓଡ଼ିଶାକୁ ଦରିଦ୍ରତମ ରାଜ୍ୟ ବୋଲି କେହି ଚିତ୍ରଣ କରନ୍ତେ ନାହିଁ। କଲରାବାଙ୍କ ଗ୍ରାମଟିକୁ ବୁଲାଇ ଦେଖାଇଥିବାରୁ ଖେଣ୍ଟାଳ ଗ୍ରାମର ଅଧିବାସୀ ତଥା କିଟ୍‌ରେ କର୍ମରତ ରବୀନ୍ଦ୍ର ନାଥ ବିଶ୍ୱାଳଙ୍କ ପାଖରେ ମୁଁ କୃତଜ୍ଞ।

*ଦୈନିକ ଭାସ୍କର, ୧୦.୩.୨୦୧୪*

# ତୃତୀୟ ସାମ୍ମୁଖ୍ୟ ଓ ଏହାର ଗତି

୨୦୧୪ ଲୋକସଭା ନିର୍ବାଚନ ଏପ୍ରିଲ ୭ ତାରିଖରୁ ଆରମ୍ଭ ହୋଇ ୯ଟି ପର୍ଯ୍ୟାୟରେ ୧୨ ମେ'ରେ ଶେଷ ହେବ। ଭାରତର ମୁଖ୍ୟ ନିର୍ବାଚନ କମିଶନର ଭି.ଏସ୍. ସମ୍ପଥ୍ ଦିଲ୍ଲୀର ବିଜ୍ଞାନ ଭବନଠାରେ ଅନୁଷ୍ଠିତ ଏକ ସାମ୍ବାଦିକ ସମ୍ମିଳନୀରେ ମାର୍ଚ୍ଚ ୫ ତାରିଖରେ ଏହା ଘୋଷଣା କରିଛନ୍ତି। ପଞ୍ଚଦଶ ଲୋକସଭାର କାର୍ଯ୍ୟକାଳ ଆସନ୍ତା ଜୁନ୍ ୧ ତାରିଖରେ ଶେଷ ହେଉଛି। ତେଣୁ ନୂତନ ଲୋକସଭା ମେ' ୩୧ ତାରିଖ ସୁଦ୍ଧା ଗଠନ ହେବ। ନିର୍ବାଚନ କମିଶନର ନୂତନ ଲୋକସଭା ଗଠନ କରିବାକୁ ନିର୍ବାଚନ ପ୍ରକ୍ରିୟା ଆରମ୍ଭ କରିଛନ୍ତି। ବିଭିନ୍ନ ରାଜନୈତିକ ଦଳଗୁଡ଼ିକ ମଧ୍ୟ ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା ପାଇଁ ପ୍ରସ୍ତୁତି ଆରମ୍ଭ କରିସାରିଲେଣି। ଦେଶର ଦୁଇଟି ମୁଖ୍ୟ ଦଳ କଂଗ୍ରେସ ନେତୃତ୍ୱରେ ପରିଚାଳିତ ୟୁନାଇଟେଡ୍ ପ୍ରୋଗ୍ରେସିଭ୍ ଆଲାୟାନ୍ସ (ୟୁପିଏ) ଏବଂ ବିଜେପି ନେତୃତ୍ୱାଧୀନ ନାଶନାଲ ଡେମୋକ୍ରାଟିକ ଆଲାୟାନ୍ସ (ଏନ୍‌ଡିଏ) କେନ୍ଦ୍ରରେ ସରକାର ଗଢ଼ିବାକୁ ଆଶା ରଖିଛନ୍ତି। କଂଗ୍ରେସ ଦଳ ୨୦୧୩ ନଭେମ୍ବର/ଡିସେମ୍ବର ମାସରେ ଅନୁଷ୍ଠିତ ହୋଇଥିବା ୫ଟି ରାଜ୍ୟର ବିଧାନସଭା ନିର୍ବାଚନରେ କେବଳ ମିଜୋରାମ ବ୍ୟତୀତ ଅନ୍ୟ ଚାରୋଟି ରାଜ୍ୟ ମଧ୍ୟପ୍ରଦେଶ, ଛତିଶଗଡ଼, ରାଜସ୍ଥାନ ଓ ଦିଲ୍ଲୀରେ ଯେଉଁ ଶୋଚନୀୟ ପରାଜୟ ବରଣ କଲା ସେଥିରୁ ସେମାନେ ଲୋକସଭାରେ ଯେ ସଂଖ୍ୟାଗରିଷ୍ଠ ଆସନ ହାସଲ କରିବେ ଏ ଆଶା ରଖିନାହାନ୍ତି।

ପ୍ରତ୍ୟେକଥର ନିର୍ବାଚନ ପୂର୍ବରୁ ଗଣମାଧ୍ୟମଗୁଡ଼ିକ ପ୍ରାକ୍ ନିର୍ବାଚନୀ ପୂର୍ବାନୁମାନ ପାଇଁ ଜନମତ ସର୍ବେକ୍ଷଣ କରିଥାନ୍ତି। ଏବେ ବିଭିନ୍ନ ସଂସ୍ଥା ଯଥା— ସିଏନ୍ଏନ୍, ଆଇବିଏନ୍, ଏବିପି ନ୍ୟୁଜ, ଏସି ନିଏଲସନ୍, ଇଣ୍ଡିଆ ଟୁଡେ ପ୍ରଭୃତି ସଂସ୍ଥାମାନେ ଯେଉଁ ପୂର୍ବାନୁମାନ କରିଛନ୍ତି ସେଥିରେ ଆଗାମୀ ନିର୍ବାଚନରେ କଂଗ୍ରେସ ପରାଜିତ ହେବ ଓ ବିଜେପିର ଆସନ ସଂଖ୍ୟା ବୃଦ୍ଧି ପାଇବ ବୋଲି ଦର୍ଶାଇଛନ୍ତି। ଷୋଡ଼ଶ ଲୋକସଭା ପାଇଁ ହେଉଥିବା ନିର୍ବାଚନର ଏହି ପୂର୍ବାନୁମାନକୁ ଲକ୍ଷ୍ୟକରି ବାମପନ୍ଥୀ ଦଳଗୁଡ଼ିକ ବିଶେଷକରି ସିପିଏମ୍‌ର ପ୍ରକାଶ କରାତ ଓ ସୀତାରାମ ୟେଚୁରୀ

ଏବଂ ସିପିଆଇର ଏ.ବି. ବର୍ଦ୍ଧନ ତୃତୀୟ ସାମ୍ମୁଖ୍ୟ ଗଠନ କରି କେନ୍ଦ୍ରରେ ସରକାର ଗଠନ କରିବାକୁ ଆପ୍ରାଣ ଉଦ୍ୟମ ଚଳାଇଛନ୍ତି। କେତେକ ରାଜନୈତିକ ସମୀକ୍ଷକଙ୍କ ମତରେ ଏମାନେ ଜୟଲଳିତା, ନବୀନ ପଟ୍ଟନାୟକ, ନୀତୀଶ କୁମାର, ମୁଲାୟମସିଂ ଯାଦବ ପ୍ରଭୃତି ନେତାମାନଙ୍କୁ ତୃତୀୟ ସାମ୍ମୁଖ୍ୟ କ୍ଷମତା ଦଖଲ କଲେ ସେମାନେ ପ୍ରଧାନମନ୍ତ୍ରୀ ହେବେ ବୋଲି ପ୍ରତ୍ୟେକଙ୍କୁ ଆଶା ଦେଖାଉଛନ୍ତି। କିନ୍ତୁ ସେମାନଙ୍କର ତୃତୀୟ ସାମ୍ମୁଖ୍ୟ ଗଠନ ପଛରେ ନିଜ ଦଳକୁ ବଞ୍ଚାଇବାର ପ୍ରୟାସ ଯେ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ତାହା କାହାକୁ ଅଛପା ନାହିଁ। ନିର୍ବାଚନୀ ପୂର୍ବାନୁମାନରୁ ସୂଚିତ ହୋଇଛି ଯେ ସାରା ଦେଶରେ ବାମପନ୍ଥୀମାନେ ଏଥର ମାତ୍ର ୨୦ରୁ ୨୫ଟି ଆସନ ପାଇବାକୁ ସକ୍ଷମ ହେବେ। ୨୦୦୪ ମସିହାରେ ବାମପନ୍ଥୀ ଦଳଗୁଡ଼ିକ ପାଖାପାଖି ୬୦ଟି ଆସନ ଦଖଲ କରିଥିବାବେଳେ ୨୦୦୯ ବେଳକୁ ସେମାନଙ୍କ ସଂଖ୍ୟା ପ୍ରାୟ ୪୦କୁ ଖସି ଆସିଥିଲା। ସତରେ ଯଦି ଏମାନଙ୍କ ସଂଖ୍ୟା ଚଳିତ ଥର ୨୦ କିମ୍ବା ୨୫କୁ ଖସିଆସେ, ଏହି ଦଳଗୁଡ଼ିକ ଯେ କ୍ରମଶଃ ନିଶ୍ଚିହ୍ନ ହୋଇଯିବେ, ଏହା ସେମାନଙ୍କୁ ଚିନ୍ତାଗ୍ରସ୍ତ କରିଛି ଓ ତୃତୀୟ ସାମ୍ମୁଖ୍ୟ ଗଠନ କରିବାକୁ ବାଧ କରିଛି। ୨୦୧୩ ମସିହା ୩୦ ଅକ୍ଟୋବରରେ ବାମପନ୍ଥୀଦଳଗୁଡ଼ିକ ଦିଲ୍ଲୀରେ ସାମ୍ପ୍ରଦାୟିକତା ବିରୁଦ୍ଧରେ ଏକ ସମ୍ମିଳନୀ ଆୟୋଜନ କରିଥିଲେ ଯେଉଁଥିରେ ୧୧ଟି ଅଣକଂଗ୍ରେସ ଓ ଅଣବିଜେପି ଦଳ ଯୋଗ ଦେଇଥିଲେ। ଦ୍ୱିତୀୟ ଥର ପାଇଁ ସେମାନେ ଫେବୃଆରୀ ୫ ତାରିଖରେ ଦିଲ୍ଲୀଠାରେ ମିଳିତ ହୋଇ ସଂସଦର ଶେଷ ଅଧିବେଶନରେ ନିଜ ଭିତରେ ବୁଝାମଣା ରଖି କାର୍ଯ୍ୟ କରିବାକୁ ନିଷ୍ପତ୍ତି ନେଇଥିଲେ। ଚାରୋଟି ବାମଦଳ ଯଥା— ସିପିଆଇ(ଏମ୍), ସିପିଆଇ, ଫରୱାର୍ଡ ବ୍ଲକ୍, ରିଭୋଲ୍ୟୁସନାରି ସୋସିଆଲିଷ୍ଟ ପାର୍ଟି, ନିତିଶ କୁମାରଙ୍କ ଜନତା ଦଳ ୟୁନାଇଟେଡ, ଜୟଲଳିତାଙ୍କର ଅଲ୍ ଇଣ୍ଡିଆ ଆନ୍ନା ଡିଏମ୍‌କେ, ଦେବଗୌଡ଼ାଙ୍କର ଜନତା ଦଳ (ସେକୁଲାର), ମୁଲାୟମ ସିଂଙ୍କର ସମାଜବାଦୀ ପାର୍ଟି, ଝାଡ଼ଖଣ୍ଡ ବିକାଶ ମୋର୍ଚ୍ଚା (ପ୍ରଜାତାନ୍ତ୍ରିକ), ଆସାମ ଗଣପରିଷଦ ଓ ବିଜୁ ଜନତା ଦଳ ତୃତୀୟ ସାମ୍ମୁଖ୍ୟ ଗଠନ କରିଛନ୍ତି। ଏହି ତୃତୀୟ ସାମ୍ମୁଖ୍ୟରେ ମାୟାବତୀଙ୍କର ବହୁଜନ ସମାଜବାଦୀ ପାର୍ଟି ନାହିଁ, ମମତାଙ୍କର ତୃଣମୂଳ କଂଗ୍ରେସ ନାହିଁ କିମ୍ବା ଶରଦ୍ ପାଓ୍ୱାରଙ୍କର ଏନ [illegible]ପି ଦଳ ନାହିଁ। ଗତ ୨୫ ଫେବୃଆରୀରେ ପୁନର୍ବାର ତୃତୀୟ ସାମ୍ମୁଖ୍ୟ ଗଠନ କରିଥିବା ଏହି ୧୧ଟି ଦଳର ବୈଠକରେ ମୁଲାୟମ ସିଂ ଯାଦବ ଆସ୍ଫାଳନ କରିଛନ୍ତି ଯେ ତୃତୀୟ ସାମ୍ମୁଖ୍ୟରେ ଆଉ ଚାରୋଟି ଦଳ ସାମିଲ

ହେବେ । ତେବେ ଏହି ପଦର ଦଳବିଶିଷ୍ଟ ତୃତୀୟ ସାମ୍ମୁଖ୍ୟକୁ ଲୋକ କ'ଣ ବିଶ୍ୱାସକୁ ନେଇପାରିବେ ? ସେମାନେ ନିର୍ବାଚନରେ ଜିତିବା ପରେ ଦେଶକୁ ଏକ ସ୍ଥିର ସରକାର ଦେବାକୁ ସକ୍ଷମ ହେବେ କି ? ପୂର୍ବରୁ ଏକାଧିକବାର ତୃତୀୟ ସାମ୍ମୁଖ୍ୟ ଦେଶବାସୀଙ୍କୁ ହତାଶ କରିଛି । ଯେଉଁ ଦଳମାନେ ତୃତୀୟ ସାମ୍ମୁଖ୍ୟ ଗଠନ କରିଛନ୍ତି, ସେମାନେ ସମସ୍ତେ 'ନିଜ ହାତରେ ନିଜେ ଚଉଦ ପା' । ତୃତୀୟ ସାମ୍ମୁଖ୍ୟ ଗଠନ କରି ଆସନ ବୁଝାମଣା ଦ୍ୱାରା ହୁଏତ ଆଉ କିଛି ଅଧିକ ଆସନ ସେମାନେ ହାସଲ କରିପାରନ୍ତି । କିନ୍ତୁ ସରକାର ଗଠନ କରିବାକୁ ଆବଶ୍ୟକ ହେଉଥିବା ସଂଖ୍ୟାଠାରୁ ବହୁ ଦୂରରେ ରହିବେ ।

ତୃତୀୟ ସାମ୍ମୁଖ୍ୟର ପ୍ରଧାନ ଶତ୍ରୁ ହେଉଛି ବିଜେପି ଯାହାକୁ ସେମାନେ ସାମ୍ପ୍ରଦାୟିକ ଦଳ ଓ ମୁସଲିମ୍ ବିରୋଧୀ ବୋଲି ଚିତ୍ରଣ କରୁଛନ୍ତି । ତାଙ୍କର ଏହି ପ୍ରଚାରକୁ ଏବେ ଲୋକମାନେ ବିଶ୍ୱାସ କରୁନାହାନ୍ତି । ତୃତୀୟ ସାମ୍ମୁଖ୍ୟ ଏକ ଚାରିସୂତ୍ରୀ କାର୍ଯ୍ୟକ୍ରମ ପ୍ରସ୍ତୁତ କରିଛନ୍ତି, ଯାହା ହେଉଛି (୧) ଦେଶର ଗଣତାନ୍ତ୍ରିକ ବ୍ୟବସ୍ଥାକୁ ସୁଦୃଢ଼ କରିବା, (୨) ଦୁର୍ନୀତି ହଟାଇବା, (୩) ଧର୍ମନିରପେକ୍ଷ ବାତାବରଣ ବଜାୟ ରଖିବା ଓ (୪) ଲୋକଙ୍କୁ ସୁହାଇବା ଭଳି ବିକାଶମୂଳକ ଯୋଜନା ପ୍ରସ୍ତୁତ କରିବା । କିନ୍ତୁ କେତେଦୂର ସେମାନେ ଏହାକୁ କାର୍ଯ୍ୟକାରୀ କରିବେ ସେ ବିଷୟରେ ସାଧାରଣ ଲୋକେ ସନ୍ଦିହାନ । କେବଳ କଂଗ୍ରେସ ଓ ବିଜେପିକୁ ଶାସନ ଗାଦିଠାରୁ ଦୂରେଇ ରଖିବା ସେମାନଙ୍କର ଏକମାତ୍ର ଲକ୍ଷ୍ୟ । ତୃତୀୟ ସାମ୍ମୁଖ୍ୟର ପ୍ରଧାନମନ୍ତ୍ରୀ ପ୍ରାର୍ଥୀ ପ୍ରସଙ୍ଗରେ ପ୍ରଶ୍ନ ହେବାରୁ ପ୍ରକାଶ କରାତ କହିଛନ୍ତି, ସେ ସମ୍ପର୍କରେ ଏବେ ଆଲୋଚନା ହୋଇନି ଓ ସାଧାରଣ ନିର୍ବାଚନ ପରେ ତୃତୀୟ ସାମ୍ମୁଖ୍ୟର ପ୍ରଧାନମନ୍ତ୍ରୀ ପ୍ରାର୍ଥୀ କିଏ ହେବ, ସେ ସମ୍ପର୍କରେ ନିଷ୍ପତ୍ତି ନିଆଯିବ । ଅପରପକ୍ଷରେ ତୃତୀୟ ସାମ୍ମୁଖ୍ୟର ପ୍ରଧାନମନ୍ତ୍ରୀ ତାଲିକାରେ ବିହାର ମୁଖ୍ୟମନ୍ତ୍ରୀ ନୀତୀଶ କୁମାର, ବିଜେଡି ମୁଖ୍ୟ ନବୀନ ପଟ୍ଟନାୟକ ଏବଂ ଏଆଇଏଡିଏମ୍‌କେ ମୁଖ୍ୟ ଜୟଲଳିତା, ସମାଜବାଦୀ ପାର୍ଟି ମୁଖ୍ୟ ମୁଲାୟମ ସିଂହ ପ୍ରମୁଖଙ୍କ ନାମ ଚର୍ଚ୍ଚା ହେଉଛି । ଧୀରେ ଧୀରେ ଦେଶରେ ମୋଦିଙ୍କର ଜନପ୍ରିୟତା ବୃଦ୍ଧି ପାଇବାରେ ଲାଗିଛି । ବିଜେପି ନେତାମାନେ ମଧ୍ୟ ନିଜ ନିଜ ଭିତରେ ଭେଦଭାବ ଭୁଲି ୟୁପିଏଠାରୁ କ୍ଷମତା ଛଡ଼ାଇ ଆଣିବାକୁ ଚେଷ୍ଟିତ ଅଛନ୍ତି । କିନ୍ତୁ ପ୍ରଶ୍ନ ହେଉଛି ଲୋକସଭାର ୫୪୩ଟି ଆସନରୁ ବିଜେପି ଏକୁଟିଆ ନିଜ ବଳରେ ଅନ୍ୟୁନ ୨୧୦ଟି ଆସନ ପାଇବା ପୂର୍ବାନୁମାନ ହୋଇଥିବା ବେଳେ ତା' ସହଯୋଗୀ ଅକାଳିଦଳ ଓ

ଶିବସେନା ୩୦ଟି ଆସନ ପାଇବାର ସମ୍ଭାବନା ଅଛି। ଆଉ ୩୩ଟି ଆସନ ପାଇଁ ସେମାନଙ୍କୁ ଆଞ୍ଚଳିକ ଦଳ ଉପରେ ନିର୍ଭର କରିବାକୁ ପଡ଼ିବ। ମେ ୧୬ ତାରିଖରେ ନିର୍ବାଚନ ଫଳାଫଳ ପ୍ରକାଶ ପାଇବା ପରେ ଆଞ୍ଚଳିକ ଦଳଗୁଡ଼ିକ ବିଜେପିକୁ କେନ୍ଦ୍ରରେ ସରକାର ଗଢ଼ିବାକୁ ସମର୍ଥନ କରିବେ ଏହାର ସମ୍ଭାବନା ବେଶୀ।

ଆମେରିକାର ଏକ ସଂସ୍ଥା ଭାରତରେ ଅନୁଷ୍ଠିତ ହେବାକୁ ଥିବା ଲୋକସଭା ନିର୍ବାଚନ ସମ୍ପର୍କରେ ସର୍ବେକ୍ଷଣ କରି କହିଛି ଯେ କଂଗ୍ରେସର ରାହୁଲ ଗାନ୍ଧୀଙ୍କ ତୁଳନାରେ ବିଜେପିର ନରେନ୍ଦ୍ର ମୋଦିଙ୍କର ଲୋକପ୍ରିୟତା ବେଶୀ। ଶତକଡ଼ା ୬୦ ଭାଗ ଭାରତୀୟ ଭୋଟର ମୋଦିଙ୍କୁ ପସନ୍ଦ କରୁଥିବାବେଳେ ମାତ୍ର ୨୦ ଭାଗ ଲୋକ କଂଗ୍ରେସ ଉପାଧ୍ୟକ୍ଷ ରାହୁଲ ଗାନ୍ଧୀଙ୍କୁ ପସନ୍ଦ କରୁଛନ୍ତି।

କଂଗ୍ରେସ ଦଳ ସହିତ ମଧ୍ୟ ରାଜ୍ୟସ୍ତରୀୟ ଦଳମାନେ ନିର୍ବାଚନରେ ମେଣ୍ଟ କରିବାକୁ ପଛଘୁଞ୍ଚା ଦେଲେଣି। ବିହାରର ରାମବିଳାସ ପାଶ୍ୱାନଙ୍କର ଲୋକଜନଶକ୍ତି ପାର୍ଟି ବିଜେପି ସହିତ ମେଣ୍ଟ କଲାଣି। ତେଲେଙ୍ଗାନାର ଟିଆରଏସ୍ ଦଳ କଂଗ୍ରେସରେ ଯୋଗଦେବାର ଆଉ ପ୍ରଶ୍ନ ଉଠୁନି ବୋଲି ଏହାର ମୁଖ୍ୟ କେ. ଚନ୍ଦ୍ରଶେଖର ରାଓ କହିଲେଣି। ବର୍ତ୍ତମାନ ଯେଉଁ ଆକଳନ ସବୁ ପ୍ରକାଶିତ ହେଲାଣି ସେଥିରେ କଂଗ୍ରେସ ଦଳ ନେତୃତ୍ୱରେ ଦିଲ୍ଲୀରେ ସରକାର ଗଠନ ହେବାର ଆଶା କ୍ଷୀଣ। ଭୋଟରମାନେ କର୍ତ୍ତବ୍ୟ ଅପେକ୍ଷା କ୍ଷମତା ତଥା ଅର୍ଥଲାଳସାକୁ ଗୁରୁତ୍ୱ ଦେଇଥିବାରୁ କଂଗ୍ରେସକୁ ଦଣ୍ଡିତ କରିବେ। ପନ୍ଦରଟି ଦଳକୁ ନେଇ ଗଠିତ ହେବାକୁ ଥିବା ତୃତୀୟ ସାମ୍ମୁଖ୍ୟ ୨୩୦ ଆସନ ପାଇବ ବୋଲି ପ୍ରକାଶ କରାଉ ଯାହା ଭାବୁଛନ୍ତି ତାହା ଦିବାସ୍ୱପ୍ନରେ ରହିଯିବ।

ଆମ ଦେଶରେ ପୂର୍ବରୁ ଚାରିଥର ତୃତୀୟ ସାମ୍ମୁଖ୍ୟ ସରକାର ଚରଣ ସିଂହ, ଚନ୍ଦ୍ରଶେଖର, ଏଚ୍.ଡି. ଦେବଗୌଡ଼, ଆଇ.କେ. ଗୁଜୁରାଲଙ୍କ ନେତୃତ୍ୱରେ ଗଠିତ ହୋଇଛି। ସେମାନଙ୍କ ସରକାରକୁ କଂଗ୍ରେସ ବାହ୍ୟ ସମର୍ଥନ ଦେଇଥିଲା, କିନ୍ତୁ କୌଣସି ଗୋଟିଏ ସରକାର ଏକବର୍ଷରୁ ଅଧିକା ତିଷ୍ଠି ପାରି ନଥିଲା। ଚନ୍ଦ୍ରଶେଖର ପ୍ରଧାନମନ୍ତ୍ରୀ ଥିବାବେଳେ ତୃତୀୟ ସାମ୍ମୁଖ୍ୟକୁ ଏକ ତୃତୀୟ ଶ୍ରେଣୀ ଗୋଷ୍ଠୀ ବୋଲି କହିଥିଲେ ଯାହା ଆଜିଯାଏ ଲୋକମାନେ ଭୁଲିନାହାନ୍ତି। ତେଣୁ ତୃତୀୟ ସାମ୍ମୁଖ୍ୟ ପାଇଁ ନିର୍ବାଚନରେ ଜିତିବାର ସମ୍ଭାବନା ନଥିବା ରାଜନୈତିକ ପର୍ଯ୍ୟବେକ୍ଷକମାନେ ଅନୁମାନ କରୁଛନ୍ତି।

*ସମାଜ, ୧୧.୩.୨୦୧୪*

# ସ୍ୱଚ୍ଛ ରାଜନୀତି ଓ ସର୍ବୋଚ୍ଚ ନ୍ୟାୟାଳୟ

'ପବ୍ଲିକ ଇଣ୍ଟରେଷ୍ଟ ଫାଉଣ୍ଡେସନ' ସ୍ୱେଚ୍ଛାସେବୀ ସଂସ୍ଥା ଦ୍ୱାରା ଆଗତ ଏକ ଜନସ୍ୱାର୍ଥ ମାମଲାର ବିଚାର କରି ୧୦ ମାର୍ଚ୍ଚ, ୨୦୧୪ରେ ସୁପ୍ରିମ କୋର୍ଟର ନ୍ୟାୟମୂର୍ତ୍ତି ଆର୍. ଏମ୍. ଲୋଧା ଏବଂ ନ୍ୟାୟମୂର୍ତ୍ତି କୁରିଏନ୍ ଜୋଶେଫ୍ ଏକ ଯୁଗାନ୍ତକାରୀ ରାୟ ଦେଇ ରାଜନୈତିକ ବ୍ୟକ୍ତିମାନଙ୍କ ବିରୁଦ୍ଧରେ ହୋଇଥିବା ଅପରାଧ ମାମଲାଗୁଡ଼ିକର ଏକ ବର୍ଷ ମଧ୍ୟରେ ଫଇସଲା କରିବାକୁ ତଳ କୋର୍ଟମାନଙ୍କୁ ନିର୍ଦ୍ଦେଶ ଦେଇଛନ୍ତି। ଏହି ରାୟରେ ନ୍ୟାୟମୂର୍ତ୍ତିଦ୍ୱୟ କହିଛନ୍ତି ଯେ ଯେଉଁ ମାମଲାଗୁଡ଼ିକରେ ଏମ୍.ପି. ଓ ଏମ୍.ଏଲ୍.ଏ.ମାନଙ୍କର ଦୁର୍ନୀତି ସମ୍ବନ୍ଧୀୟ ଏବଂ ଅନ୍ୟାନ୍ୟ ଗୁରୁତର ଅପରାଧରେ ଦୁଇବର୍ଷରୁ ଅଧିକ କାରାଦଣ୍ଡରେ ଦଣ୍ଡିତ ହେବାର ସମ୍ଭାବନା ଅଛି, ସେଗୁଡ଼ିକର ବିଚାର ଦୈନିକ ଶୁଣାଣି କରି ବର୍ଷକ ଭିତରେ ମାମଲାର ଫଇସଲା କରିବେ। ଏହି ରାୟର ଗୁରୁତ୍ୱପୂର୍ଣ୍ଣ ଦିଗଟି ହେଲା ବର୍ତ୍ତମାନ ଯେଉଁ ୧୬୭ ଜଣ ଏମ୍.ପି.ଙ୍କ ନାମରେ ଗୁରୁତର ଅପରାଧ ଘଟାଇଥିବା ମାମଲାମାନ କୋର୍ଟରେ ବିଚାରାଧିନ ଅଛି, ସେମାନଙ୍କର ରାଜନୈତିକ ଭବିଷ୍ୟତ ସଂକଟରେ ପଡ଼ିଯିବ। ଏହାବ୍ୟତୀତ ଉତ୍ତରପ୍ରଦେଶ, ମହାରାଷ୍ଟ୍ର, ବିହାର ଓ ଝାଡ଼ଖଣ୍ଡ ବିଧାନସଭାର ଅଧାଅଧି ସଦସ୍ୟ ଯେଉଁମାନଙ୍କ ବିରୁଦ୍ଧରେ ଗୁରୁତର ଅପରାଧିକ ମାମଲାମାନ ରହିଛି, ସେମାନେ ମଧ୍ୟ ଘୋର ସଂକଟର ସମ୍ମୁଖୀନ ହେବେ। ସୁପ୍ରିମକୋର୍ଟର ଏହିଭଳି ରାୟ ଯଦି ପୂର୍ବରୁ ପ୍ରକାଶ ପାଇଥାନ୍ତା ତେବେ ଆୟ ବହିର୍ଭୂତ ସମ୍ପତ୍ତି ଠୁଳ ମାମଲାରେ ଜଡ଼ିତ ଜୟଲଳିତା, ମାୟାବତୀ, ମୁଲାୟମ ସିଂହ ଯାଦବଙ୍କ ଭଳି ବ୍ୟକ୍ତିମାନଙ୍କର ବିଚାର ବହୁଦିନରୁ ସରନ୍ତାଣି ଏବଂ ସେମାନେ ନିର୍ବାଚନ ଲଢ଼ିବାକୁ ଯୋଗ୍ୟ କି ନୁହଁ ତାହା ଦେଶବାସୀଙ୍କ ଆଗରେ ସ୍ପଷ୍ଟ ହୋଇସାରନ୍ତାଣି। ଦୁର୍ନୀତି ଅଭିଯୋଗ ଏମାନଙ୍କ ପଛେ ପଛେ ଗୋଡ଼ାଇଥିଲେ ମଧ୍ୟ ଏମାନେ ସମସ୍ତେ ଭାରତର ପ୍ରଧାନମନ୍ତ୍ରୀ ହେବାକୁ ଆଶାୟୀ ଅଛନ୍ତି।

ଗତବର୍ଷ ଜୁଲାଇ ୧୦ ତାରିଖରେ ସୁପ୍ରିମକୋର୍ଟର ମାନ୍ୟବର ବିଚାରପତି ଅନଙ୍ଗ କୁମାର ପଟ୍ଟନାୟକ ଏବଂ ନ୍ୟାୟମୂର୍ତ୍ତି ଏସ୍. ଜେ. ମୁଖାର୍ଜି, ଆଡଭୋକେଟ୍

ଲିଲି ଥୋମାସ୍ ଓ ଲକ୍ଷ୍ନୌର ଏକ ଏନ୍‌ଜିଓ 'ଲୋକପ୍ରହରୀ'ର ସାଧାରଣ ସମ୍ପାଦକ ଏସ୍. ଏନ୍. ଶୁକ୍ଳାଙ୍କର ଦୁଇଟି ରିଟ୍ ପିଟିସନ୍‌କୁ ବିଚାରକରି ଏକ ଯୁଗାନ୍ତକାରୀ ରାୟ ଦେଇ ୧୯୫୧ ଲୋକ ପ୍ରତିନିଧି ଆଇନର ଅଷ୍ଟମ ଧାରାର ୪ ଉପଧାରା ସମ୍ବିଧାନର ବିରୋଧାଚରଣ କରୁଛି ବୋଲି ମତବ୍ୟକ୍ତ କରି ଏହି ଉପଧାରାକୁ ବାତିଲ କରିଛନ୍ତି। ଏହି ଉପଧାରା ଅନୁସାରେ ଜଣେ ଦୋଷୀ ସାବ୍ୟସ୍ତ ଲୋକପ୍ରତିନିଧି ତାଙ୍କର ଦଣ୍ଡ ବିରୁଦ୍ଧରେ ଉପର କୋର୍ଟରେ ଅପିଲ କରିଥିଲେ ତାଙ୍କର ସଭ୍ୟପଦ ରଦ୍ଦ ହେବନାହିଁ। କିନ୍ତୁ ଜଷ୍ଟିସ୍ ପଟ୍ଟନାୟକଙ୍କ ରାୟ ଅନୁଯାୟୀ ଜନପ୍ରତିନିଧିଙ୍କୁ କୌଣସି ଅପରାଧିକ ମାମଲାରେ ୨ ବର୍ଷରୁ ଅଧିକ ସଜା ହୋଇଥିଲେ, ତାଙ୍କର ସଦସ୍ୟତା ତତ୍‌କ୍ଷଣାତ୍ ନାକଚ ହୋଇଯିବ। ଏହି ରାୟ ପ୍ରକାଶ ପାଇବା ପରେ ରାଷ୍ଟ୍ରୀୟ ଜନତା ଦଳର ନେତା ଲାଲୁ ପ୍ରସାଦ ଯାଦବ, କଂଗ୍ରେସର ରାଜ୍ୟସଭା ସାଂସଦ ରସିଦ୍ ମସୁଦ୍‌ଙ୍କ ସଭ୍ୟପଦ ତତ୍‌କ୍ଷଣାତ୍ ରଦ୍ଦ ହୋଇଥିଲା। ଏଠାରେ ମନେପକାଇବା ଉଚିତ୍ ହେବ ଯେ ୧୯୭୫ ମସିହାରେ ବିଶିଷ୍ଟ ସାମ୍ୟବାଦୀ ନେତା ରାଜନାରାୟଣ ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କ ବିରୁଦ୍ଧରେ ଆଗତ କରିଥିବା ଏକ ନିର୍ବାଚନୀ ମକଦ୍ଦମାର ରାୟ ଦେଇ ଆହ୍ଲାବାଦ ହାଇକୋର୍ଟର ଜଷ୍ଟିସ୍ ଜଗମୋହନଲାଲ ସିହ୍ନା ୧୨ ଜୁନ ୧୯୭୫ ଦିନ ଇନ୍ଦିରା ଗାନ୍ଧୀଙ୍କ ସଂସଦର ସଭ୍ୟପଦ ରଦ୍ଦ କରିଥିଲେ। ଆହ୍ଲାବାଦ ଉଚ୍ଚ ନ୍ୟାୟାଳୟର ରାୟକୁ ସମ୍ମାନ ଦେଇ ନିଜ ପଦବୀରୁ ଅପସରି ନ ଯାଇ ଦେଶରେ ଜରୁରୀକାଳୀନ ପରିସ୍ଥିତି ଜାରି କରିଥିଲେ।

୭ ଏପ୍ରିଲ ୨୦୧୪ରୁ ଆରମ୍ଭ ହେଉଥିବା ଷୋଡ଼ଶ ଲୋକସଭା ନିର୍ବାଚନରେ ୮୧ କୋଟି ୪୫ ଲକ୍ଷ ୯୧ ହଜାର ୧୮୪ ଜଣ ଭୋଟ ଦେବାକୁ ଯୋଗ୍ୟ। ସେମାନଙ୍କ ମଧ୍ୟରୁ ୧୦ କୋଟି ଯୁବବର୍ଗ ଭୋଟର। ଏହି ଭୋଟ ଦେବାପାଇଁ ଯୋଗ୍ୟ ବିବେଚିତ ଲୋକଙ୍କ ମଧ୍ୟରୁ ୫୨.୪ ପ୍ରତିଶତ ପୁରୁଷ ଓ ୪୭.୬ ପ୍ରତିଶତ ମହିଳା। ଓଡ଼ିଶାରେ ୨ କୋଟି ୮୮ ଲକ୍ଷ ୮୦ ହଜାର ଭୋଟର ରହିଛନ୍ତି। ରାଜନୀତିରେ ଧୀରେ ଧୀରେ ଅପରାଧୀଙ୍କ ଅନୁପ୍ରବେଶ ଫଳରେ ଆମ ଗଣତନ୍ତ୍ର ତା'ର ଉପାଦେୟତା ଓ ଗୌରବ ହରାଉଛି। ଏଥିପାଇଁ ଅପରାଧୀମାନଙ୍କୁ ରାଜନୀତିଠାରୁ ଦୂରରେ ରଖିବା ନିତାନ୍ତ ଜରୁରୀ। ମାତ୍ର ରାଜନୈତିକ ଦଳ ଓ ପ୍ରଶାସନିକ ବ୍ୟକ୍ତିବିଶେଷ ଏ ଦିଗରେ ପଦକ୍ଷେପ ନେଉ ନ ଥିବାରୁ ନ୍ୟାୟପାଳିକାଙ୍କ ପଦକ୍ଷେପ ଅତ୍ୟନ୍ତ ସ୍ୱାଗତଯୋଗ୍ୟ। ଗଣତନ୍ତ୍ରର ତିନୋଟି ସ୍ତମ୍ଭ ବ୍ୟବସ୍ଥାପକ, ଅମଲାତନ୍ତ୍ର ଓ ବିଚାର

ବିଭାଗ ମଧ୍ୟରୁ ପ୍ରଥମ ଦୁଇଟି ସ୍ତମ୍ଭ ନିଜ କର୍ତ୍ତବ୍ୟ ପାଳନ କରିବାରେ ଅସଫଳ ହୋଇଛନ୍ତି। ତେଣୁ ବର୍ତ୍ତମାନ ଲୋକମାନଙ୍କ ଭରସା କେବଳ ବିଚାର ବିଭାଗ ଉପରେ। ପଞ୍ଚଦଶ ଲୋକସଭାରେ ୫୪୩ ଜଣ ସଦସ୍ୟଙ୍କ ମଧ୍ୟରୁ ୧୬୨ ଜଣ ଏମ୍.ପି.ଙ୍କ ନାମରେ ଗୁରୁତର ଅପରାଧର ମାମଲାମାନ ଦେଶର ବିଭିନ୍ନ ଅଦାଲତରେ ବିଚାରାଧୀନ ଅଛି। ସେଥିମଧ୍ୟରୁ ୭୬ ଜଣଙ୍କ ନାଁରେ ହତ୍ୟା, ହତ୍ୟା ଉଦ୍ୟମ, ଅପହରଣ, ଡକାୟତି ଭଳି ଗୁରୁତର ମାମଲାମାନ ରୁଜୁ କରାଯାଇଛି। ୨୦୦୯ରେ ଏମ୍.ପି.ମାନଙ୍କ ପକ୍ଷରୁ ଦାଖଲ କରାଯାଇଥିବା ସତ୍ୟପାଠକୁ ଭିତ୍ତିକରି ନ୍ୟାଶନାଲ ଇଲେକ୍ସନ ୱାଚ ଓ ଆସୋସିଏସନ୍ ଫର୍ ଡେମୋକ୍ରାଟିକ୍ ରିଫର୍ମ ଏହି ତଥ୍ୟ ପ୍ରକାଶ କରିଛନ୍ତି। ପୁନଶ୍ଚ ରିପୋର୍ଟରେ ପ୍ରକାଶ ପାଇଛି ଯେ ୨୦୦୪ ମସିହାରେ ଅପରାଧିକ ମାମଲା ଥିବା ୨୪ ଜଣ ଏମ୍.ପି. ପୁଣିଥରେ ୨୦୦୯ରେ ନିର୍ବାଚିତ ହୋଇଛନ୍ତି। ରାଜନୈତିକ ଦଳଗୁଡ଼ିକ ଅପରାଧିକ ମାମଲା ଥିବା ପ୍ରାର୍ଥୀଙ୍କୁ ଟିକେଟ ଦେବାକୁ ଦ୍ୱିଧା ପ୍ରକାଶ କରୁନାହାନ୍ତି। ଦେଶର ସମସ୍ତ ବିଧାନସଭାରେ ୪୦୩୨ ଜଣ ବିଧାୟକଙ୍କ ମଧ୍ୟରୁ ୧୨୫୮ ଜଣଙ୍କ ନାମରେ ଅପରାଧ ମାମଲା ବିଚାରାଧୀନ ରହିଛି। ସୁପ୍ରିମକୋର୍ଟଙ୍କ ସାମ୍ପ୍ରତିକ ନିଷ୍ପତ୍ତି ରାଜନୈତିକ ଦଳମାନଙ୍କୁ ଅପରାଧ ମାମଲାରେ ଫଶିଥିବା ନେତାଙ୍କୁ ଦଳୀୟ ପ୍ରାର୍ଥୀ କରିବାରେ ଅଟକାଇବ ବୋଲି ଆଶା କରାଯାଏ। ପୂର୍ବରୁ ସୁପ୍ରିମକୋର୍ଟ ତାଙ୍କର ଅନ୍ୟ ଏକ ରାୟରେ ଜେଲ୍ ଭିତରେ ଥାଇ କୌଣସି ରାଜନେତା ନିର୍ବାଚନ ଲଢ଼ିପାରିବେ ନାହିଁ ବୋଲି ମଧ ନିର୍ଦ୍ଦେଶ ଦେଇଥିଲେ। ଦେଶର ସବୁ ବର୍ଗର ଲୋକ ସୁପ୍ରିମକୋର୍ଟର ୧୦ ଜୁଲାଇ ୨୦୧୩ ଓ ୧୦ ମାର୍ଚ୍ଚ ୨୦୧୪ର ରାୟ ଦୁଇଟିକୁ ସ୍ୱାଗତ କରିଛନ୍ତି। ଏହି ରାୟର ପ୍ରଭାବରେ ରାଜନୀତିରେ ବୃଦ୍ଧି ପାଉଥିବା ଅପରାଧିକରଣ ହ୍ରାସ ପାଇବ ବୋଲି ଦେଶବାସୀ ଆଶା କରନ୍ତି। କିନ୍ତୁ ରାଜନୈତିକ ଦଳମାନେ ଅପରାଧ ପୃଷ୍ଠଭୂମିର ବ୍ୟକ୍ତିମାନଙ୍କୁ ନିଜ ଦଳରୁ ଟିକେଟ ଦେବାରୁ ବଂଚିତ କରିବାରେ କେତେଦୂର ସମର୍ଥ ହେବେ ତାହା ଆଗାମୀ ଦିନରେ ଜଣାପଡ଼ିବ।

ଆମ ରାଜ୍ୟ ଓଡ଼ିଶାରେ ମଧ ବିଜେଡ଼ିର ଜଣେ ସାଂସଦ ଓ କଂଗ୍ରେସର ଜଣେ ସାଂସଦଙ୍କ ନାମରେ ଫୌଜଦାରୀ ମାମଲା ବିଚାରାଧୀନ ଅଛି। ବିଧାନସଭାରେ ବିଜୁ ଜନତା ଦଳର ୧୮ ଜଣ ବିଧାୟକ, କଂଗ୍ରେସ ଦଳର ୭ ଜଣ, ବିଜେପିର ୩ ଜଣ ଓ ଅନ୍ୟାନ୍ୟ ଦଳର ୩ ଜଣ ବିଧାୟକଙ୍କ ନାମରେ ଗୁରୁତର ଅପରାଧ ମାମଲାମାନ

ବିଚାରାଧୀନ ଅଛି । ଚଳିତ ନିର୍ବାଚନ ପାଇଁ ସଂପୂର୍ଣ୍ଣ ପ୍ରାର୍ଥୀ ତାଲିକା ଘୋଷଣା ହେବାପରେ ଜଣାପଡ଼ିବ କେଉଁ ଦଳ ସୁପ୍ରିମକୋର୍ଟଙ୍କ ପ୍ରଦତ୍ତ ରାୟର ମର୍ଯ୍ୟାଦା ରଖୁଛନ୍ତି ।

ଭାରତର ପୂର୍ବତନ ନିର୍ବାଚନ କମିଶନର ଟି. ଏନ୍. ଶେଷାନ ଆମ ଦେଶର ଭୋଟରମାନଙ୍କୁ ସବୁବେଳେ କହୁଥିଲେ ଯେ ସେମାନେ ନିଜ ଝିଅ ପାଇଁ ଜ୍ୱାଇଁଟିଏ ଖୋଜିଲାବେଳେ ଯେପରି ତାର ଯୋଗ୍ୟତା, ଚରିତ୍ର ପ୍ରଭୃତି ବିଷୟକୁ ଗୁରୁତ୍ୱ ଦିଅନ୍ତି ସେହିଭଳି ଲୋକ ପ୍ରତିନିଧି ଚୟନ କଲାବେଳେ ସେମାନେ ସତର୍କତା ଅବଲମ୍ବନ କରନ୍ତୁ ଯେଭଳି ସେମାନେ ଠକି ନ ଯାଆନ୍ତି । ସେମାନଙ୍କର ଉଦାସୀନତାର ସୁଯୋଗ ନେଇ ଲୋକସଭା ଓ ବିଧାନସଭା ଭଳି ପବିତ୍ର ସ୍ଥାନମାନଙ୍କରେ ମାଫିଆ ଅପରାଧୀମାନେ ପ୍ରବେଶ କରୁଛନ୍ତି । ୨୦୧୪ ନିର୍ବାଚନରେ ଭୋଟରମାନେ ଦେଶର ବର୍ତ୍ତମାନ ପରିସ୍ଥିତିକୁ ସୁଧାରିବାକୁ ଯେଉଁ ବ୍ୟକ୍ତି ବା ଦଳ ଦେଶକୁ ସାମ୍ପ୍ରଦାୟିକତା, ବିଚ୍ଛିନ୍ନତାବାଦ ଓ ଦୁର୍ନୀତିରୁ ମୁକ୍ତକରି ଦେଶକୁ ପ୍ରଗତିପଥରେ ଆଗେଇନେବାକୁ ସହାୟକ ହେବେ ସେହିଭଳି ବ୍ୟକ୍ତିମାନଙ୍କୁ ଜୟଯୁକ୍ତ କରାଇବେ ବୋଲି ଆଶା କରାଯାଏ ।

*ସମାଜ, ୩.୪.୨୦୧୪*

# ସାମାଜିକ ବିପ୍ଳବର ମହାନାୟକ ଭୀମରାଓ ଆମ୍ବେଦକର

୧୪ ଏପ୍ରିଲ ୧୯୯୦ ମସିହାରେ ରାଷ୍ଟ୍ରପତି ଭବନରେ ଆମ୍ବେଦକରଙ୍କ ଜନ୍ମ ଶତବାର୍ଷିକୀ ପାଳନ ଅବସରରେ ତାଙ୍କୁ ମରଣୋତ୍ତର 'ଭାରତରତ୍ନ' ପୁରସ୍କାର ପ୍ରଦାନ କରାଯାଇଥିଲା । ଏହି ପୁରସ୍କାର ତାଙ୍କ ପତ୍ନୀ ଡକ୍ଟର ସବିତା ଆମ୍ବେଦକର ଭାରତର ରାଷ୍ଟ୍ରପତି ଆର୍ ଭେଙ୍କଟରମଣଙ୍କଠାରୁ ଗ୍ରହଣ କରିଥିଲେ । ବାବାସାହେବ ସାରାଜୀବନ ସଂଗ୍ରାମ କରିଛନ୍ତି ଦଳିତ, ଅବହେଳିତ, ଗରିବ, ଅନୁସୂଚିତ, ଆଦିବାସୀ ଓ ସବୁ ଶ୍ରେଣୀର ନିଷ୍ପେସିତ ଜନସାଧାରଣଙ୍କ ମଣିଷ ଭଳି ବଂଚିବା ଅଧିକାର ପାଇଁ । ତାଙ୍କ କାର୍ଯ୍ୟାବଳୀ ଶୋଷଣହୀନ ସମାଜ ବିଶ୍ୱରେ ପ୍ରତିଷ୍ଠା କରିବାକୁ କହିଥିବା ଜର୍ମାନୀର କାର୍ଲ ମାର୍କସ୍ କିମ୍ବା ମଣିଷମାନଙ୍କର ରଂଗ, ଲିଙ୍ଗ ଭେଦଭାବରୁ ଉର୍ଦ୍ଧ୍ୱରେ ରହି ସମସ୍ତଙ୍କୁ ସମାନ ଅଧିକାର ଦେବାର ପ୍ରବକ୍ତା ଆମେରିକାର ମାର୍ଟିନ ଲୁଥର କିଙ୍ଗ୍‌ଙ୍କ ସହିତ ତୁଳନୀୟ । ଭୀମରାଓ ମହିଳାମାନଙ୍କ ପ୍ରତି ହେଉଥିବା ଅନ୍ୟାୟ ଓ ଶୋଷଣ ବିରୁଦ୍ଧରେ ସଂଗ୍ରାମ ଚଳାଇ ସେମାନଙ୍କ ପାଇଁ ପୁରୁଷମାନଙ୍କ ସହିତ ସମାନ ଆସନ ଦାବୀ କରିବାରେ ହେଉଛନ୍ତି ଅନ୍ୟତମ ବ୍ୟକ୍ତି । ସେ ଥିଲେ ଭାରତ ସମ୍ବିଧାନର ପ୍ରଣେତା, ବିଶିଷ୍ଟ ସମାଜସେବୀ, ଶିକ୍ଷାବିତ୍, ଆଇନଜ୍ଞ, ଅର୍ଥନୀତିଜ୍ଞ ଓ ଦାର୍ଶନିକ । ଭାରତମାତାଙ୍କ ଏହି ମହାନ୍ ସୁପୁତ୍ର ୧୮୯୧ ମସିହା ଏପ୍ରିଲ ମାସ ୧୪ ତାରିଖ ଦିନ ମଧ୍ୟପ୍ରଦେଶର 'ମାଓ' ଗ୍ରାମରେ ଦଳିତ ମାହାର ଜାତିର ଏକ ଦରିଦ୍ର ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତା ରାମଜୀ ସକପାଲ୍ ସୈନ୍ୟବାହିନୀର ସୁବେଦାର ମେଜର ଥିଲେ । ଭୀମରାଓଙ୍କର ମାତାଙ୍କ ନାମ ଥିଲା ଭୀମାବାଈ ।

ଗୋଟିଏ ଦଳିତ ପରିବାରରେ ଜନ୍ମଗ୍ରହଣ କରିଥିବାରୁ ସ୍କୁଲରେ ପାଠ ପଢ଼ିବାବେଳୁ ସେ ଉଚ୍ଚ ଜାତିର ସହପାଠୀ ଓ ଶିକ୍ଷକମାନଙ୍କର ଘୃଣା, ଅନ୍ୟାୟ, ଅମାନବିକ ବ୍ୟବହାରର ସମ୍ମୁଖୀନ ହୋଇଥିଲେ । ସେ ଅଛୁଆଁ ବୋଲି ତାଙ୍କୁ ଶ୍ରେଣୀ କକ୍ଷରେ ଅଲଗା ହୋଇ ବସିବାକୁ ପଡୁଥିଲା । ପାଣି ମୁନ୍ଦାଏ ମଧ୍ୟ ପିଇବାକୁ ମିଳୁନଥିଲା । ସାଙ୍ଗସାଥୀଙ୍କ ସହିତ ମିଶିବାକୁ, ଖେଳିବାକୁ ବାରଣ ଥିଲା । ଏସବୁ ସତ୍ତ୍ୱେ ଏବଂ ଆର୍ଥିକ

ଅନଟନ ମଧ୍ୟଦେଇ ଗତି କରୁଥିଲେ ସୁଦ୍ଧା ପିଲାଦିନୁ କଠୋର ପରିଶ୍ରମ ବଳରେ ଭୀମରାଓ ଆମ୍ବେଦକର ୧୯୦୭ ମସିହାରେ ବମ୍ବେର ଏଲ୍‌ଫିନ୍‌ଷ୍ଟନ ହାଇସ୍କୁଲରୁ ମାଟ୍ରିକ ପାସ କଲେ। ଏକ ଅସ୍ପୃଶ୍ୟ ଜାତିର ପିଲା ମାଟ୍ରିକ ପାସ କରିବା ଘଟଣା ବମ୍ବେ ସହରରେ ଚହଳ ପକାଇ ଦେଇଥିଲା। ସତ୍ୟ ଶୋଧକ ଆନ୍ଦୋଳନର ଜଣେ ସକ୍ରିୟ ନେତା ଏସ୍.କେ. କୋହଲଙ୍କ ସଭାପତିତ୍ୱରେ ଭୀମରାଓଙ୍କୁ ସମ୍ବର୍ଦ୍ଧିତ କରାଯାଇଥିଲା। ସେଦିନ ଛତ୍ରପତି ଶିବାଜୀଙ୍କ ଜୀବନୀର ରଚୟିତା କୃଷ୍ଣରାଓ ଅର୍ଜୁନ କେଲୁସ୍କର ଆମ୍ବେଦକରଙ୍କୁ ଗୌତମ ବୁଦ୍ଧଙ୍କ ଜୀବନୀ ଉପରେ ଲିଖିତ ଏକ ପୁସ୍ତକ ଉପହାର ଦେଇଥିଲେ। ସେହି ପୁସ୍ତକ ପାଠକଲାପରେ 'ସବୁ ମଣିଷ ସମାନ', 'ଜାତିଭେଦ ମଣିଷମାନଙ୍କଦ୍ୱାରା ସୃଷ୍ଟି' ଆଦି ବୁଦ୍ଧଙ୍କ ଦର୍ଶନ ତାଙ୍କ ଉପରେ ବହୁତ ପ୍ରଭାବ ପକାଇଥିଲା। ମାଟ୍ରିକ ପାସ କରିବା ପରେ ମାତ୍ର ୧୭ ବର୍ଷ ବୟସରେ ସେ ରମାବାଈ ନାମରେ ଜଣେ ନ' ବର୍ଷର ବାଳିକାକୁ ବିବାହ କଲେ। ଭୀମରାଓଙ୍କର ଉଚ୍ଚଶିକ୍ଷା ଲାଭ କରିବାକୁ ପ୍ରବଳ ଇଚ୍ଛା ଥିଲା, କିନ୍ତୁ ଦୁର୍ବଳ ଆର୍ଥିକ ସ୍ଥିତି ଏଥିରେ ପ୍ରତିବନ୍ଧକ ସୃଷ୍ଟି କରିଥିଲା।

ସାମାନ୍ୟ ସାମାଜିକ ସ୍ୱୀକୃତି ଭୀମରାଓଙ୍କ ମନରେ ଅଧିକ ବିଦ୍ୟାର୍ଜନ ପାଇଁ ପ୍ରବଳ ତୃଷ୍ଣା ଜାଗ୍ରତ କଲା। ଆମ୍ବେଦକରଙ୍କର ଇଚ୍ଛା ଫଳବତୀ କରିବାକୁ ବରୋଦା ରାଜ୍ୟର ବଦାନ୍ୟ ମହାରାଜା ଶିବାଜୀ ରାଓ ଗାୟକଓ୍ୱାଡ୍ ତାଙ୍କୁ ମାସିକ ପଚିଶ ଟଙ୍କା ବୃତ୍ତି ପ୍ରଦାନ କରିବାରୁ ସେ ବମ୍ବେର ଏଲ୍‌ଫିନ୍‌ଷ୍ଟୋନ କଲେଜରେ ପଢ଼ିବାକୁ ସକ୍ଷମ ହୋଇଥିଲେ। ସେହି କଲେଜର ଅଧ୍ୟାପକ ପ୍ରଫେସର୍ ମୁଲାର ଭୀମରାଓଙ୍କର ପ୍ରତିଭାରେ ମୁଗ୍ଧ ହୋଇ ତାଙ୍କର ସମସ୍ତ ବହିପତ୍ର, ପୋଷାକ ଇତ୍ୟାଦିର ଖର୍ଚ୍ଚ ବହନ କରିଥିଲେ। ପାଠ ବନ୍ଦ ହେବାର ପ୍ରଶ୍ନ ହିଁ ରହିଲା ନାହିଁ।

୧୯୧୨ ମସିହାରେ ସେ ବମ୍ବେ ବିଶ୍ୱବିଦ୍ୟାଳୟରୁ କୃତିତ୍ୱର ସହ ରାଜନୀତି ବିଜ୍ଞାନ ଓ ଅର୍ଥନୀତିରେ ବି.ଏ. ଡିଗ୍ରୀ ହାସଲ କରିଥିଲେ। ବରୋଦା ମହାରାଜାଙ୍କଠାରୁ ଆର୍ଥିକ ସାହାଯ୍ୟ ପାଇ ଆମ୍ବେଦକର ୧୯୧୩ ମସିହା ଜୁଲାଇ ମାସରେ ଆମେରିକାର କଲମ୍ବିଆ ବିଶ୍ୱବିଦ୍ୟାଳୟରେ ନାମ ଲେଖାଇଥିଲେ ଏବଂ ୧୯୧୫ରେ ସେଠାରୁ ଏମ୍.ଏ. ପାସ୍ କଲେ। ଭାରତ ଫେରି ବରୋଦା ମହାରାଜାଙ୍କ ଅଧୀନରେ ଏକ ଉଚ୍ଚ ପଦବୀରେ ଅଧିଷ୍ଠିତ ହେଲେ। କିନ୍ତୁ ତାଙ୍କୁ ଜଣେ ଅଛୁଆଁଜାତିର ବ୍ୟକ୍ତି ହିସାବରେ ସବୁବେଳେ ଉଚ୍ଚଜାତିର ଲୋକଙ୍କର ଘୃଣାର ଶିକାର ହେବାକୁ ପଡୁଥିଲା।

୧୯୧୭ ମସିହା ନଭେମ୍ବର ମାସରେ ବରୋଦା ଛାଡ଼ି ଭୀମରାଓ ବମ୍ବେକୁ ଚାଲି ଆସିଲେ। ବମ୍ବେରେ ପ୍ରଥମେ ଘରୋଇ ଟ୍ୟୁଟର ଭାବେ କିଛିଦିନ କାର୍ଯ୍ୟ କରିବା ପରେ ୧୯୧୮ ମସିହାରେ ସିଡେନ୍‌ହାମ୍ କଲେଜ ପଲିଟିକାଲ ଇକୋନୋମିକ୍ସ ବିଭାଗର ଅସ୍ଥାୟୀ ପ୍ରଫେସର ଭାବେ ଯୋଗଦେଲେ। ବମ୍ବେରେ ଥିବାବେଳେ ସେ 'ମୁକ ନାୟକ' ନାମରେ ଏକ ପାକ୍ଷିକ ପତ୍ରିକା ପ୍ରକାଶ କରୁଥିଲେ। ଏହି ପତ୍ରିକାରେ ଅସ୍ପୃଶ୍ୟ ଓ ଦଳିତମାନଙ୍କର ନ୍ୟାଯ୍ୟ ଦାବୀ ସଂପର୍କରେ ଲେଖାମାନ ପ୍ରକାଶ କରୁଥିଲେ। ଅସମତା ଓ ଅଜ୍ଞତା ସମାଜର ଗୋଟିଏ ବିରାଟ ବର୍ଗକୁ ଦଳିତ ଓ ନିର୍ଯ୍ୟାତିତ କରି ରଖିଥିବା ଏହା ପତ୍ରିକାରେ ପ୍ରକାଶ କରି ଲୋକମାନଙ୍କ ମଧ୍ୟରେ ଏହି ବର୍ଗପ୍ରତି ସହାନୁଭୂତି ଆଣିବାକୁ ଚେଷ୍ଟା କରିଥିଲେ। ଗଣମାଧ୍ୟମ ସହାୟତା ବ୍ୟତିରେକ କୌଣସି କାର୍ଯ୍ୟ ସାଧିତ ହୋଇପାରିବ ନାହିଁ, ଏହା ମଧ୍ୟ ତାଙ୍କର ହୃଦବୋଧ ହୋଇଥିଲା। ଏହାର ମୁଖବନ୍ଧରେ ଅସ୍ପୃଶ୍ୟମାନଙ୍କର ଦାବିକୁ ଉପସ୍ଥାପନା କରି ସେ ଲେଖିଥିଲେ, "ଦେଶର ସମ୍ବାଦପତ୍ର ସବୁ ମୁଷ୍ଟିମେୟ ଜାତିର ସ୍ୱାର୍ଥରକ୍ଷା ପାଇଁ କାର୍ଯ୍ୟକରିଆସୁଛନ୍ତି।" ସେମାନେ ଅନ୍ୟ ଜାତିମାନଙ୍କ ସମସ୍ୟା ଓ ସ୍ୱାର୍ଥକଥା ଚିନ୍ତା କରୁନାହାନ୍ତି। ଏହି 'ମୂକ ନାୟକ' ପତ୍ରିକା ସାରା ଦେଶରେ ଚହଳ ସୃଷ୍ଟି କଲା। ଅସ୍ପୃଶ୍ୟମାନଙ୍କର ସମସ୍ୟା ପ୍ରତି ଭାରତର ନେତୃବୃନ୍ଦ ସଚେତନ ହେଲେ। କିନ୍ତୁ ଏହି ପତ୍ରିକାଟି ବେଶୀଦିନ ତିଷ୍ଠିପାରିଲା ନାହିଁ।

ଦୁଇବର୍ଷ ବମ୍ବେରେ ଚାକିରି କଲାପରେ ସେ ନିଜର ସଂଚିତ ସାତ ହଜାର ଟଙ୍କା ଓ କୋହ୍ଲାପୁର ମହାରାଜାଙ୍କ ଆର୍ଥିକ ସାହାଯ୍ୟ ବଳରେ ଆଇନ ଓ ଅର୍ଥନୀତି ବିଷୟରେ ଅଧ୍ୟୟନ କରିବା ପାଇଁ ୧୯୨୦ ମସିହାରେ ଲଣ୍ଡନ ଚାଲିଗଲେ। ଲଣ୍ଡନରେ ଅର୍ଥନୀତିରେ ଡକ୍ଟରେଟ ଡିଗ୍ରୀ ହାସଲ କଲେ ଓ ବାରିଷ୍ଟରୀ ଶିକ୍ଷା ଶେଷକରି ଭାରତ ଫେରିଆସି ବମ୍ବେ ହାଇକୋର୍ଟରେ ୧୯୨୩ ମସିହାରେ ଆଇନ ବ୍ୟବସାୟ ଆରମ୍ଭ କଲେ। ଆଇନ ବ୍ୟବସାୟରେ ଖ୍ୟାତି ଅର୍ଜନ କରିବା ସହିତ ଅର୍ଥ ମଧ୍ୟ ଉପାର୍ଜନ ହେଉଥିଲା। ସେ ଦରିଦ୍ର ଓ ଦଳିତମାନଙ୍କ ମାମଲାଗୁଡ଼ିକ ପରିଚାଳନାକରି ସେମାନଙ୍କ ମଧ୍ୟରେ ବିଶ୍ୱାସ ଜନ୍ମାଇ ପାରିଥିଲେ। ଛୁଆଁଅଛୁଆଁ ଭେଦଭାବକୁ ମୁଳୋତ୍ପାଟନ କରିବାକୁ ଗୋଟିଏ ନୂତନ ଅନୁଷ୍ଠାନ 'ବହିଷ୍କୃତ ହିତକାରିଣୀ ସଭା' ସେ ୧୯୨୪ ମସିହା ଜୁଲାଇ ୨୦ ତାରିଖରେ ଗଠନ କରିଥିଲେ। ଅସ୍ପୃଶ୍ୟମାନଙ୍କର ସର୍ବବିଧ କଲ୍ୟାଣ ସାଧନ ଏହି ଅନୁଷ୍ଠାନର ମୂଳ ଉଦ୍ଦେଶ୍ୟ ଥିଲା। ଏହି ଅନୁଷ୍ଠାନ ଜରିଆରେ ନିଶା

ବିରୋଧୀ ଆନ୍ଦୋଳନ ଆରମ୍ଭ ହୋଇଥିଲା । ସେ କହୁଥିଲେ ଦଳିତମାନେ ଯେପର୍ଯ୍ୟନ୍ତ ନିଶା ସେବନ ପରିତ୍ୟାଗ ନ କରିଛନ୍ତି ସେତେଦିନ ପର୍ଯ୍ୟନ୍ତ ତାଙ୍କର ଉନ୍ନତି ସମ୍ଭବ ନୁହେଁ । ଏହି ଅନୁଷ୍ଠାନଟି ସାର୍ ଚିମଲଲାଲ୍ ଶୀତଲବାଦ୍, ଡକ୍ଟର ଆର.ପି. ପାରାଞ୍ଜାପେ, କେ.ଏଫ୍. ନରିମାନ ଓ ବି.ଜି. ଖେରଙ୍କ ଭଳି ନେତୃସ୍ଥାନୀୟ ବ୍ୟକ୍ତିଙ୍କର ସମର୍ଥନ ଲାଭ କରିଥିଲା । ଏହି ଅନୁଷ୍ଠାନ ମାଧ୍ୟମରେ ବଦାନ୍ୟ ବ୍ୟକ୍ତିଙ୍କଠାରୁ ଅର୍ଥ ସଂଗ୍ରହକରି ସେ ଅସ୍ପୃଶ୍ୟ ଛାତ୍ରମାନଙ୍କ ପାଇଁ ବମ୍ବେ ପ୍ରେସିଡେନ୍ସିରେ ଚାରୋଟି ଛାତ୍ରାବାସ ପ୍ରତିଷ୍ଠା କରିବାରେ ସକ୍ଷମ ହୋଇଥିଲେ । ୧୯୨୬ ମସିହାରେ ସେ ବମ୍ବେର ବିଧାନସଭାର ସଭ୍ୟଭାବେ ସରକାରଙ୍କଦ୍ୱାରା ମନୋନୀତ ହେଲେ । ୧୯୨୭ ମସିହାରେ 'ବହିଷ୍କୃତ ଭାରତ' ନାମରେ ଏକ ପାକ୍ଷିକ ପତ୍ରିକା ପ୍ରକାଶ କରିଥିଲେ ଓ 'ସମାଜ ସମତା ସଂଘ' ଗଠନ କରି ସମାଜରେ ସାମ୍ୟତା ଆଣିବାକୁ ଉଦ୍ୟମ କରିଥିଲେ ।

ଭୀମରାଓଙ୍କର ଅଦମ୍ୟ ଚେଷ୍ଟା ଫଳରେ ୧୯୨୮ ମସିହାରେ ନାଗପୁରଠାରେ ଏବଂ ୧୯୩୦ ମସିହାରେ କୋହ୍ଲାପୁରଠାରେ ଦଳିତ ଜାତିମାନଙ୍କର ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଏହି ସମ୍ମିଳନୀମାନଙ୍କରେ ଦଳିତମାନଙ୍କର ମାନସମ୍ମାନ ରକ୍ଷାହୋଇ କିପରି ସେମାନଙ୍କ ବିକାଶ ହେବ ସେ ବିଷୟରେ ଆଲୋଚନା ହୋଇଥିଲା । ଅସ୍ପୃଶ୍ୟ ଜାତିର ଛାତ୍ରମାନଙ୍କ ପାଇଁ ଉଚ୍ଚଶିକ୍ଷା କିପରି ସହଜ ହେବ ସେଥିପାଇଁ ସେ ପ୍ରୟାସ ଜାରି ରଖିଲେ । ଅଛୁଆଁ ଜାତିର ଲୋକମାନଙ୍କର ମନ୍ଦିର ପ୍ରବେଶ ଅଧିକାର ପାଇଁ ମଧ୍ୟ ଆନ୍ଦୋଳନ ଆରମ୍ଭ କରିଥିଲେ । ୧୯୩୦ ମସିହାରେ ନାସିକସ୍ଥିତ କଲାରାମ ମନ୍ଦିରରେ ପ୍ରବେଶ ନିମନ୍ତେ ହଜାର ହଜାର ଲୋକ ମନ୍ଦିର ସମ୍ମୁଖରେ ଧାରଣା ଦେଲେ । ଏହା ପ୍ରଭାବରେ କେତେକ ସ୍ଥାନରେ ଉଚ୍ଚବର୍ଗର ଲୋକମାନେ ମନ୍ଦିର ଦ୍ୱାର ସମସ୍ତଙ୍କ ପାଇଁ ଉନ୍ମୁକ୍ତ କରିଥିଲେ । ସର୍ବସାଧାରଣଙ୍କ ପାଇଁ ଉଦ୍ଦିଷ୍ଟ କୂଅ ପୋଖରୀରୁ ଦଳିତମାନେ କିପରି ନିର୍ବିଘ୍ନରେ ପାଣି ବ୍ୟବହାର କରିପାରିବେ ସେଥିପାଇଁ ମଧ୍ୟ ଆମ୍ବେଦକର ଆନ୍ଦୋଳନ ଆରମ୍ଭ କରିଥିଲେ । ମହାଡ଼ର ଚାଉଦର ପୁଷ୍କରିଣୀକୁ ଦଳିତଙ୍କ ବ୍ୟବହାର ପାଇଁ ଉନ୍ମୁକ୍ତ କରିବାକୁ ସେ ଆନ୍ଦୋଳନ କରିଥିଲେ । ତାହାକୁ ଉଚ୍ଚଜାତିର ଲୋକମାନେ ବନ୍ଦ କରିବାକୁ ଚେଷ୍ଟା କରିବାରୁ ମାମଲା କଚେରିରେ ପହଞ୍ଚିଥିଲା । ଏହାର ବିଚାର ହୋଇ ପୁଷ୍କରିଣୀ ସମସ୍ତଙ୍କ ପାଇଁ ଉଦ୍ଦିଷ୍ଟ ବୋଲି ନ୍ୟାୟାଳୟ ରାୟ ଶୁଣାଇବାରୁ ଆମ୍ବେଦକର ଉତ୍ସାହିତ ହୋଇଥିଲେ । ଏହି ଆନ୍ଦୋଳନଗୁଡ଼ିକ ଅତି ଶାନ୍ତିପୂର୍ଣ୍ଣ ଭାବରେ ହୋଇଥିବାରୁ ସେ ସବୁଶ୍ରେଣୀର ଲୋକମାନଙ୍କର ଶ୍ରଦ୍ଧାଭାଜନ

ହୋଇପାରିଥିଲେ । ଏହି ସମୟରେ ମନୁସ୍ମୃତି ହିନ୍ଦୁ ସମାଜର ବିଭାଜନ ସୃଷ୍ଟି କରିବାର କାରଣ ବୋଲି ଦର୍ଶାଇ ଏହି ଗ୍ରନ୍ଥକୁ ଦଳିତମାନେ ପୋଡ଼ିଦେଇଥିଲେ ।

ଆମ୍ବେଦକର ଉଚ୍ଚଜାତିର ହିନ୍ଦୁମାନଙ୍କ ଉଦ୍ଦେଶ୍ୟରେ କହିଥିଲେ ଯେ "ତୁମେ ଯେବେ କୁହ ଯେ ତୁମର ଯେଉଁ ଧର୍ମ ଆମର ସେହି ଧର୍ମ, ତେବେ ତୁମର ଯେଉଁ ଅଧିକାର ଆମର ସେ ଅଧିକାର ନାହିଁ କାହିଁକି ? ତୁମ ଆମ ଭିତରେ ଏ ଉଚ୍ଚନୀଚ ଭାବ କାହିଁକି ?" ମହାଡ଼ରେ ସର୍ବସାଧାରଣ ସଭାରେ ସେ କହିଲେ ହିନ୍ଦୁ ଶାସ୍ତ୍ରଗୁଡ଼ିକର ସଂଶୋଧନ ଆବଶ୍ୟକ, ଭେଦଭାବ ସୃଷ୍ଟିକାରୀ ଶାସ୍ତ୍ର ପ୍ରଚଳନ ଆଇନ ଦ୍ୱାରା ନିଷିଦ୍ଧ କରିବା ଉଚିତ୍ ।

ବ୍ରିଟିଶ୍ ସରକାର ସାର୍ ଜନ୍ ସାଇମନ୍‌ଙ୍କ ନେତୃତ୍ୱରେ ଭାରତକୁ ଏକ କମିଶନ୍ ୧୯୨୮ ମସିହାରେ ପଠାଇଥିଲେ । ଏହି କମିଶନ୍‌କୁ କଂଗ୍ରେସ ଦଳ ବର୍ଜନ କରିଥିଲା ଏବଂ କଂଗ୍ରେସ ଦଳ ନେତୃତ୍ୱରେ ଏକ ସର୍ବଦଳୀୟ ଅଧିବେଶନ ବସି ଭାରତର ସ୍ୱରାଜ୍ୟ ପାଇଁ ଚିଠା ତିଆରି ହୋଇଥିଲା । ଏଥିରେ ମୁସଲମାନମାନଙ୍କ ଦାବୀ ବିଷୟରେ ଉଲ୍ଲେଖ ଥିଲା; କିନ୍ତୁ ହିନ୍ଦୁ ସମାଜରେ ଦଳିତ ଜାତିମାନଙ୍କ ସମ୍ବନ୍ଧରେ କୌଣସି ଉଲ୍ଲେଖ ନଥିଲା । ଆମ୍ବେଦକର ଏଥିରେ ମର୍ମାହତ ହୋଇ କଂଗ୍ରେସ ଦଳକୁ ସତର୍କ କରିଦେଲେ ଯେ ମୁସଲମାନମାନେ ଯଦି ଅଲଗା ରାଷ୍ଟ୍ର ଦାବି କରିବା ଯଥାର୍ଥ ତେବେ ଅଛୁଆଁ ଲୋକମାନଙ୍କୁ ନେଇ ସେ 'ଅଛୁତ ସ୍ଥାନ' ରାଷ୍ଟ୍ର ପାଇଁ ଦାବୀ କରିବେ । ଏହା ସବୁଆଡ଼େ ଚହଳ ପକାଇଦେଲା ।

୧୯୩୦ ମସିହା ନଭେମ୍ବର ୧୨ ତାରିଖରେ ଲଣ୍ଡନଠାରେ ହୋଇଥିବା ପ୍ରଥମ ଗୋଲଟେବୁଲ ବୈଠକରେ ଭୀମରାଓ ଆମ୍ବେଦକର ଆମନ୍ତ୍ରିତ ହୋଇ ଯୋଗ ଦେଇଥିଲେ । ସେ ଦଳିତମାନଙ୍କୁ ନ୍ୟାୟ ପ୍ରଦାନ ଓ ଭାରତକୁ ସ୍ୱାଧୀନତା ଦେବାକୁ ବ୍ରିଟିଶ ସରକାରଙ୍କ ନିକଟରେ ଦାବି କରିଥିଲେ । କଂଗ୍ରେସ ଏହି ବୈଠକକୁ ବର୍ଜନ କରିଥିଲା । ୧୯୩୧ ମସିହା ସେପ୍ଟେମ୍ବର ୭ ତାରିଖ ଦିନ ଦ୍ୱିତୀୟ ଗୋଲଟେବୁଲ ବୈଠକ ଲଣ୍ଡନରେ ଅନୁଷ୍ଠିତ ହୋଇଥିଲା । ଏହି ବୈଠକରେ ମହାତ୍ମା ଗାନ୍ଧି କହିଥିଲେ ଯେ କଂଗ୍ରେସ ହିନ୍ଦୁ, ମୁସଲମାନ ଓ ଶିଖମାନଙ୍କ ଦାବୀକୁ ବିଚାରକୁ ନେଇଛି, କିନ୍ତୁ ଦଳିତମାନେ ହିନ୍ଦୁ ହୋଇଥିବା ଯୋଗୁଁ ସେମାନଙ୍କ କଥା ସ୍ୱତନ୍ତ୍ରଭାବେ ବିଚାରକୁ ନେବନାହିଁ । ଆମ୍ବେଦକର ଏହାର ପ୍ରତିବାଦ କରିଥିଲେ ଓ କହିଥିଲେ "ଗାନ୍ଧିଙ୍କ ଉକ୍ତି ଦଳିତମାନଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା ଭଳି ।" ଗାନ୍ଧିଜୀଙ୍କର ଏଭଳି ମତାମତ

ବିରୁଦ୍ଧରେ ଦେଶରେ ପ୍ରତିବାଦ ସଭାମାନ ହେଲା ଏବଂ ନିନ୍ଦା ପ୍ରସ୍ତାବ ଇଂରେଜ ସରକାରଙ୍କ ପାଖକୁ ପଠାଗଲା। ଦ୍ୱିତୀୟ ଗୋଲଟେବୁଲ ବୈଠକର ଫଳାଫଳ ସ୍ୱରୂପ ୧୯୩୨ ମସିହାରେ କମ୍ୟୁନାଲ ଆୱାର୍ଡ ଘୋଷଣା କରାଗଲା। ଆମ୍ବେଦକରଙ୍କ ବାରମ୍ବାର ଦଳିତମାନଙ୍କ ପାଇଁ ପୃଥକ ନିର୍ବାଚନମଣ୍ଡଳୀର ବ୍ୟବସ୍ଥା ହେବା ଦାବୀକୁ ବ୍ରିଟିଶ ସରକାର ମାନିନେଲେ। କିନ୍ତୁ ମହାତ୍ମା ଗାନ୍ଧି ଏହି ପୃଥକ୍ ନିର୍ବାଚନମଣ୍ଡଳୀ ବିରୁଦ୍ଧରେ ଆମରଣ ଅନଶନ କଲେ। ଆମ୍ବେଦକର ତାଙ୍କର ମତରେ କୌଣସି ପରିବର୍ତ୍ତନ କଲେନାହିଁ। ବହୁ ନେତୃସ୍ଥାନୀୟ ଲୋକଙ୍କ ପ୍ରରୋଚନା ପରେ ଗାନ୍ଧି ଓ ଆମ୍ବେଦକରଙ୍କ ମଧ୍ୟରେ ଏକ ଆଲୋଚନା ହେଲା ଓ ସେପ୍ଟେମ୍ବର ୨୪ ତାରିଖରେ ଏକ ଚୁକ୍ତିନାମା ସ୍ୱାକ୍ଷରିତ ହେଲା ଯାହା 'ପୁନା ଚୁକ୍ତି' ଭାବେ ପରିଚିତ। ଏହି ଚୁକ୍ତି ପରେହିଁ ଦଳିତମାନଙ୍କ ପାଇଁ ରାଜନୈତିକ ସଂରକ୍ଷଣର ବ୍ୟବସ୍ଥା ଆରମ୍ଭ ହେଲା, ଯାହାକି ବର୍ତ୍ତମାନ ସୁଦ୍ଧା ବଳବତ୍ତର ରହିଛି। ୧୯୪୭ ମସିହା ଏପ୍ରିଲ ୨୯ ତାରିଖରେ ଆମ୍ବେଦକରଙ୍କ ପ୍ରୟାସ ଯୋଗୁଁ ଭାରତର ଶାସନ ବିଧାୟକ ସଭା ଅସ୍ପୃଶ୍ୟତାକୁ ବିଲୋପ କରିଥିଲା। ସ୍ୱାଧୀନତା ହାସଲ ପରେ ଭାରତର ସମ୍ବିଧାନ ଗଠନ କରିବାକୁ ଯେଉଁ କମିଟି ହେଲା ଡକ୍ଟର ଭୀମରାଓ ଆମ୍ବେଦକରଙ୍କୁ ତାହାର ଚେୟାରମ୍ୟାନ କରାଗଲା। ଏହି ସମ୍ବିଧାନ ରଚନା କାଳରେ ସେ ଦଳିତମାନଙ୍କ ସହିତ ଆଦିବାସୀମାନଙ୍କ ସ୍ୱାର୍ଥକୁ ସାମ୍ବିଧାନିକ ସୁରକ୍ଷା ଦେଲେ, ଯାହାର ଫଳ ସ୍ୱରୂପ ଆଜି ଏମାନେ ତଫସିଲଭୁକ୍ତ ଜାତି ଓ ଉପଜାତି ନାମରେ ଶିକ୍ଷା, ଚାକିରି ଓ ରାଜନୀତି କ୍ଷେତ୍ରରେ ସଂରକ୍ଷଣର ସୁବିଧା ପାଇଆସୁଛନ୍ତି ଏବଂ ଆର୍ଥିକ କ୍ଷେତ୍ରରେ ମଧ୍ୟ ରିହାତି ପାଇପାରୁଛନ୍ତି। ସ୍ୱାଧୀନ ଭାରତବର୍ଷରେ ଆମ୍ବେଦକର ପ୍ରଥମ ଆଇନ ମନ୍ତ୍ରୀ ହୋଇଥିଲେ। ସେ ମହିଳାମାନଙ୍କର ପୁରୁଷମାନଙ୍କ ସହିତ ସମାନ ଅଧିକାର ପାଇଁ 'ହିନ୍ଦୁ କୋଡ୍ ବିଲ୍' ସଂସଦରେ ଉପସ୍ଥାପିତ କରିଥିଲେ, କିନ୍ତୁ ତାହା ଗ୍ରହଣୀୟ ହେଲାନାହିଁ ଏବଂ ସେ ମନ୍ତ୍ରୀପଦରୁ ଇସ୍ତଫା ଦେଲେ।

ଅଛୁଆଁ, ପଛୁଆ ଓ ଅନଗ୍ରସର ଜାତିଙ୍କର ଉତ୍ଥାନ ପାଇଁ ନିଃସ୍ୱାର୍ଥପର ସମାଜ ସଂସ୍କାରକ ଡକ୍ଟର ଭୀମରାଓ ରାମଜୀ ଆମ୍ବେଦକରଙ୍କ ଦାନ ଅସୀମ। ସାରାଜୀବନ ସେ ଅନୁନ୍ନତଙ୍କ ଉନ୍ନତି ପାଇଁ ଲଢ଼ିଛନ୍ତି। କୋଟି କୋଟି ଜନସାଧାରଣଙ୍କ ମନମନ୍ଦିରରେ ସେ ପୂଜା ପାଉଛନ୍ତି। ତାଙ୍କ ଜନ୍ମଦିବସରେ ଦେଶବାସୀ ତାଙ୍କ ଆଦର୍ଶରେ ଅନୁପ୍ରାଣିତ ହେଲେ ତାହା ତାଙ୍କପ୍ରତି ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ହେବ।

*ସମାଜ, ୧୪.୪.୨୦୧୪*

# ଶାନ୍ତି ଓ ସମତାର ଆଲୋକବର୍ତ୍ତିକା ବୁଦ୍ଧ

ମାନବ ସମାଜରେ ଅନ୍ଧବିଶ୍ୱାସ, ଜାତିବାଦୀ-ରୁଢ଼ିବାଦୀ ବ୍ୟବସ୍ଥା, ଯଜ୍ଞ ଓ ଧର୍ମ ନାମରେ ହିଂସା ଇତ୍ୟାଦି ପ୍ରବଳମାତ୍ରାରେ ବଢ଼ିଚାଲିଥିବା ବେଳେ ଖ୍ରୀ.ପୂ. ୫୪୪ରେ ଉତ୍ତରଭାରତର କପିଳବାସ୍ତୁ ନଗରର ଲୁମ୍ବିନୀ ଗ୍ରାମରେ ଶାକ୍ୟବଂଶୀ ରାଜା ଶୁଦ୍ଧୋଦନ ଓ ରାଣୀ ମାୟାଦେବୀଙ୍କ ଔରସରୁ ଗୌତମ ବୁଦ୍ଧ ଜନ୍ମଗ୍ରହଣ କରିଥିଲେ। ତାଙ୍କର ବାଲ୍ୟ ନାମ ହେଲା ସିଦ୍ଧାର୍ଥ ଗୌତମ। ମାତ୍ର ୧୬ ବର୍ଷ ବୟସରେ ଯଶୋଧରା ନାମ୍ନୀ ଜଣେ ସୁନ୍ଦରୀ ଏବଂ ସମର୍ପିତା ରାଜକୁମାରୀଙ୍କ ସହିତ ତାଙ୍କର ବିବାହ ହେଲା। ଭୋଗବିଳାସ ଓ ପ୍ରାଚୁର୍ଯ୍ୟ ମଧ୍ୟରେ ଥାଇ ମଧ୍ୟ ମଣିଷର ଦୁଃଖ, ରୋଗ-ଶୋକ ଓ ଜରା-ମରଣ ତାଙ୍କୁ ବ୍ୟଥିତ କରୁଥାଏ। ତେଣୁ ଏଥିରୁ ମୁକ୍ତି ପାଇବାର ବାଟ ଖୋଜିବାପାଇଁ ଏକମାତ୍ର ପୁତ୍ର ରାହୁଲ ଜନ୍ମ ହେବା ପରେ ୨୯ ବର୍ଷ ବୟସରେ ସେ ରାଜ୍ୟ ତ୍ୟାଗକରି ସନ୍ନ୍ୟାସୀ ହୋଇଗଲେ। ୬ ବର୍ଷ କାଳ ସାଧୁ-ସନ୍ଥଙ୍କ ସତ୍ସଙ୍ଗ, ଶାସ୍ତ୍ରପଠନ ଓ କୃଚ୍ଛ ସାଧନା କରିବା ପରେ ବି ସେ ଏହାର କୌଣସି ସମାଧାନ ନପାଇ ଗଭୀର ଧ୍ୟାନମଗ୍ନ ହେଲେ। ଦିନେ ସଂଧ୍ୟାରେ ବୁଦ୍ଧଗୟାଠାରେ ନିରଞ୍ଜନା ନଦୀ ତଟରେ ଗୋଟିଏ ଅଶ୍ୱତ୍‌ଥ ବୃକ୍ଷମୂଳରେ ତପସ୍ୟାରତ ଅବସ୍ଥାରେ ସେ ଦିବ୍ୟ ଜ୍ଞାନ ପ୍ରାପ୍ତ ହେଲେ, ଯାହା ଫଳରେ ସେ ବୁଦ୍ଧ ଭାବେ ପରିଚିତ ହେଲେ। ବୁଦ୍ଧ କୌଣସି ବ୍ୟକ୍ତିର ନାମ ନୁହେଁ, ଯେ ନିଜ ମୁକ୍ତିର ଜ୍ଞାନ ଲାଭ କରି ଅନ୍ୟମାନଙ୍କୁ ମୁକ୍ତିର ବାଟ ଦେଖାଇପାରେ ସେ ହିଁ କେବଳ ବୁଦ୍ଧ। ବୁଦ୍ଧ ଦୀର୍ଘ ୪୫ ବର୍ଷ ଧରି ସମାଜର ବିଭିନ୍ନ ବର୍ଗର ଲୋକଙ୍କୁ ଧର୍ମୋପଦେଶ ପ୍ରଦାନ କରିବା ପରେ ୮୦ ବର୍ଷ ବୟସରେ ଦେହତ୍ୟାଗ କଲେ। ତାଙ୍କ ଶିଷ୍ୟମାନଙ୍କ ମଧ୍ୟରେ ରାଜା, କୃଷକ, ବ୍ରାହ୍ମଣ, ମହିଳା, ଅଚ୍ଛବ, ଧନୀ ଦରିଦ୍ର, ସାଧୁସନ୍ଥ ଓ ଏପରିକି ଦସ୍ୟୁ ମଧ୍ୟ ଥିଲେ। ଏମାନଙ୍କ ଲାଗି ବୁଦ୍ଧଦେବଙ୍କ ମନରେ କୌଣସି ଭେଦଭାବ ନଥିଲା।

ବୁଦ୍ଧଙ୍କ ମତବାଦ କୌଣସି ପୂଜା-ଉପାସନା ଭିତ୍ତିକ ଆଧ୍ୟାତ୍ମିକ ମାର୍ଗ ବା ଆଧିଭୌତିକ ରହସ୍ୟମୟ ଅତିମାନସ ଶକ୍ତିକୈନ୍ଦ୍ରିକ ନୁହେଁ, ବରଂ ଏକ ନିଛକ ବାସ୍ତବବାଦୀ ଜୀବନଦର୍ଶନ କହିଲେ ଅତ୍ୟୁକ୍ତି ହେବନାହିଁ। ଏହି ଜୀବନ ଦର୍ଶନ ଏତେ

ସରଳ ଓ ନିରାଡ଼ମ୍ବର ଯେ ତାହା ପରବର୍ତ୍ତୀ କାଳରେ ବୌଦ୍ଧଧର୍ମ ଭାବରେ ବିପୁଳ ଆଦୃତି ଲାଭକରି ଅନେକ ଦେଶର ରାଜଧର୍ମରେ ପରିଣତ ହେଲା ଓ ତତ୍କାଳୀନ ସମାଜରେ ବୈପ୍ଲବିକ ପରିବର୍ତ୍ତନ ଆଣିବାରେ ସମର୍ଥ ହୋଇପାରିଥିଲା। କୌଣସି ପ୍ରକାର ହିଂସାତ୍ମକ ଆଚରଣ ବୁଦ୍ଧଙ୍କ ଉପଦେଶର ପରିପନ୍ଥୀ। ବୌଦ୍ଧ ସଂସ୍କୃତି ଓ ସଭ୍ୟତାରେ ସହନଶୀଳତା ଓ ବୁଝାମଣାର ଚେତନା ଏକ ବହୁପୋଷିତ ଆଦର୍ଶ। ତେଣୁ ବୌଦ୍ଧଧର୍ମର ଦୀର୍ଘ ଅଢ଼େଇ ହଜାର ବର୍ଷର ଇତିହାସରେ ବୌଦ୍ଧ ଧର୍ମାନ୍ତରୀକରଣ ପ୍ରକ୍ରିୟାରେ ଅନ୍ୟାୟ ଅତ୍ୟାଚାରର କୌଣସି ପ୍ରକାର ଅଭିଯୋଗ ଶୁଣାଯାଏ ନାହିଁ କିମ୍ବା ଏଥିପାଇଁ କେବେ ବିନ୍ଦୁଏ ହେଲେ ରକ୍ତପାତ ବି ହୋଇନାହିଁ। ବୌଦ୍ଧଧର୍ମ ଆଜି ପ୍ରଧାନତଃ ସିଂହଳ, ବର୍ମା, ଥାଇଲ୍ୟାଣ୍ଡ, କାମ୍ବୋଡ଼ିଆ, ଲାଓସ୍, ଭିଏତନାମ, ତିବ୍ବତ, ଚୀନ, ଜାପାନ, ମଙ୍ଗୋଲିଆ, କୋରିଆ, ଫର୍ମୋଜା, ଭାରତ, ବଙ୍ଗଳାଦେଶ, ପାକିସ୍ତାନ ଓ ନେପାଳରେ ଦେଖାଯାଏ। ଭାରତରେ ଲୁପ୍ତପ୍ରାୟ ଏହି ଧର୍ମ ୧୯୫୬ ମସିହା ଅକ୍ଟୋବର ୧୪ ତାରିଖରେ ବାବାସାହେବ ଡକ୍ଟର ଭୀମରାଓ ଆମ୍ବେଦକରଙ୍କର ବୌଦ୍ଧଧର୍ମ ଗ୍ରହଣ ପରେ ପୁନର୍ଜୀବିତ ହୋଇଛି। ବର୍ତ୍ତମାନ ଭାରତରେ ପ୍ରାୟ ଏକ କୋଟି ବୌଦ୍ଧଧର୍ମାବଲମ୍ବୀ ଅଛନ୍ତି। ପୂର୍ବତନ ସୋଭିଏତ ୟୁନିଅନର କେତେକ ଅଞ୍ଚଳରେ, ଆମେରିକା, ଇଂଲଣ୍ଡ, ଫ୍ରାନ୍ସ, ଜର୍ମାନୀ ଓ ପୃଥିବୀର ୧୪୦ଟି ଦେଶରେ ମଧ୍ୟ ଏହି ଧର୍ମ ବ୍ୟାପିବାରେ ଲାଗିଛି। ସମଗ୍ର ପୃଥିବୀରେ ବୌଦ୍ଧଧର୍ମାବଲମ୍ବୀଙ୍କ ସଂଖ୍ୟା ପ୍ରାୟ ୫୫ କୋଟିରୁ ଅଧିକ।

ବିଶ୍ୱର ଅନ୍ୟ ଧର୍ମାଚାର୍ଯ୍ୟମାନେ ହୁଏତ ଈଶ୍ୱରଙ୍କ ଅବତାର ବା ତାଙ୍କ ଦ୍ୱାରା ପ୍ରେରିତ ଦୂତ ବା ଈଶ୍ୱରଙ୍କ ପୁତ୍ର ଥିଲେ। କିନ୍ତୁ ବୁଦ୍ଧ ହେଉଛନ୍ତି ଏକମାତ୍ର ଧର୍ମାଚାର୍ଯ୍ୟ, ଯିଏ ନିଜକୁ ଜଣେ ସାଧାରଣ ମଣିଷଠାରୁ ପୃଥକ୍ କିମ୍ବା ଅଧିକ ନୁହନ୍ତି ବୋଲି କହୁଥିଲେ। ସେ ନିଜର ଅନୁଭବ, ସଫଳତା ଓ ସିଦ୍ଧି ଲାଗି ମାନବିକ ବୁଦ୍ଧି ଓ ପ୍ରଚେଷ୍ଟାକୁ ଶ୍ରେୟ ପ୍ରଦାନ କରୁଥିଲେ। ପ୍ରତ୍ୟେକ ମଣିଷର ଅନ୍ତରରେ ବୁଦ୍ଧ ହେବାର ବୀଜ ନିହିତ; ଏଥିପାଇଁ ଇଚ୍ଛା ଓ ଉଦ୍ୟମ କଲେ ଯେ କେହି ବୁଦ୍ଧ ବା ତଥାଗତ ହୋଇପାରିବ। 'ତଥାଗତ'ର ଅର୍ଥ ହେଉଛି ଯିଏ ସତ୍ୟ ଉପଲବ୍ଧି କରିଛି ବା ଯିଏ ସତ୍ୟକୁ ଆବିଷ୍କାର କରିଛି। ଏହି ଶବ୍ଦକୁ ବୁଦ୍ଧ ନିଜ ପ୍ରସଙ୍ଗରେ ଏବଂ ସାଧାରଣ ଅର୍ଥରେ 'ସତ୍ୟ'କୁ ଆବିଷ୍କାର କରି ଜ୍ଞାନାଲୋକ ପାଇପାରିଥିବା ଅନ୍ୟ ସମସ୍ତ 'ବୁଦ୍ଧ'ଙ୍କ ପାଇଁ ମଧ୍ୟ ବ୍ୟବହାର କରିଛନ୍ତି। ବୁଦ୍ଧଙ୍କୁ ତ୍ରାଣକର୍ତ୍ତା ବୋଲି କୁହାଯାଉଥିଲେ ମଧ୍ୟ

ଏହାର ପ୍ରକୃତ ଅର୍ଥ ହେଉଛି, ସେ ମୁକ୍ତିର ମାର୍ଗ ଆବିଷ୍କାର ଓ ପ୍ରଦର୍ଶନ କରିଛନ୍ତି; ମାତ୍ର ସେ ପଥରେ ଆମକୁ ହିଁ ଆଗେଇଯିବାକୁ ପଡ଼ିବ।

ବୁଦ୍ଧଙ୍କ ପ୍ରତିପାଦିତ ମାର୍ଗରେ ଜାତି, ଭାଗ୍ୟ, କର୍ମଫଳ, ଈଶ୍ୱର ବା ଆତ୍ମା ଇତ୍ୟାଦିର କୌଣସି ସ୍ଥାନ ନାହିଁ। ମଣିଷ ନିଜେ ନିଜର ପ୍ରଭୁ। ତା' ଭାଗ୍ୟ ଉପରେ ଅନ୍ୟ କୌଣସି ଶକ୍ତି ବା ସତ୍ତାର ନିୟନ୍ତ୍ରଣ ନଥାଏ। ସେ କହୁଥିଲେ 'ଅତ୍ତା ହି ଅତ୍ତନୋ ନାଥୋ', ଅର୍ଥାତ୍ ମଣିଷ ନିଜେ ନିଜର ଆଶ୍ରୟ। ବ୍ୟକ୍ତିଗତ ଉଦ୍ୟମ ଓ ବୁଦ୍ଧି ସାହାଯ୍ୟରେ ସମସ୍ତ ପ୍ରକାର ବନ୍ଧନରୁ ନିଜକୁ ମୁକ୍ତ କରିବା ପାଇଁ ମଣିଷର ନିଜସ୍ୱ ଶକ୍ତି ରହିଛି। ସବୁବେଳେ ଜ୍ଞାନ ବା ପ୍ରଜ୍ଞା ବଳରେ ଦେଖିବା 'ନ୍ୟାନ ଦଶ୍ଶନ' ହିଁ ଏହାର ମୂଳତତ୍ତ୍ୱ, ବିଶ୍ୱାସ ବଳରେ ଆସ୍ଥା ପ୍ରକଟ କରିବା ନୁହେଁ। ରଢ଼ିବାଦୀ ଓ ଭିନ୍ନମତ ପ୍ରତି ଅସହିଷ୍ଣୁ ଧର୍ମାଚାର୍ଯ୍ୟମାନେ ସମାଜରେ ନିଜର କର୍ତ୍ତୃତ୍ୱ ଜାହିର କରିବା ନିମନ୍ତେ ବିନା ପ୍ରଶ୍ନରେ ନିଜର ମତବାଦ ଓ ପରମ୍ପରାକୁ ଏକମାତ୍ର ସତ୍ୟ ଭାବରେ ଗ୍ରହଣ କରିବାକୁ ବାଧ କରନ୍ତି। କିନ୍ତୁ ବୁଦ୍ଧ କହିଲେ ବିଶ୍ୱାସ କରନା, ବରଂ ନିଜେ ଦେଖ, ଅନୁଭବ କର।

ଜୀବନ ଚେତନାର ଏକ ନିରନ୍ତର ପ୍ରବାହ ସ୍ୱରୂପ, ଯାହା ଦୀପଶିଖା ବା ନଦୀର ପ୍ରବାହ ଭଳି କ୍ଷଣକୁ କ୍ଷଣ ପରିବର୍ତ୍ତନଶୀଳ। ଏହାକୁ ହିଁ ଲୋକେ ଆତ୍ମା ବୋଲି କହନ୍ତି। ଆତ୍ମା ବା ଏହାର ଅଧୀଶ୍ୱର ଈଶ୍ୱର ବୋଲି କିଛି ଗୋଟାଏ ଶକ୍ତିର କୌଣସି ସ୍ଥିତି ନାହିଁ। ଏହା ପ୍ରକୃତରେ ବ୍ୟକ୍ତିର ଅସ୍ମିତା ଓ ମହତ୍ତ୍ୱକୁ କ୍ଷୁଣ୍ଣ କରିବା ପାଇଁ ଉଦ୍ଦିଷ୍ଟ ଏକ କାଳ୍ପନିକ ମତବାଦ ମାତ୍ର। ଭାଗ୍ୟବାଦୀ ବ୍ୟକ୍ତିର ସ୍ୱାଧୀନ ଚିନ୍ତନ ବାଧିତ ହୁଏ ଓ ସେ ପୁରୁଷାର୍ଥ କରିବାରେ ଅବହେଳା ପ୍ରଦର୍ଶନ କରେ। ଭାଗ୍ୟରେ ଥିଲେ ଆପେ ଆପେ ହେବ ଓ ଯେତେ ପୁରୁଷାର୍ଥ କଲେ ବି ଭାଗ୍ୟରେ ନଥିଲେ ହେବନି ଭାବି ସେ କର୍ମବିମୁଖ ହୁଏ। ଭାଗ୍ୟବାଦୀ ବ୍ୟକ୍ତିର ସ୍ୱାଧୀନତା ଓ ମହତ୍ତ୍ୱକୁ ନ୍ୟୂନ ବା ଅସ୍ୱୀକାର କରୁଥିବା ଏକ ଭ୍ରମାତ୍ମକ କଳ୍ପନା। ବ୍ୟକ୍ତି ନିଜର ସ୍ୱତ୍ୱ ଓ ମହତ୍ତ୍ୱକୁ ବୁଝିପାରି ତଦନୁଯାୟୀ ଆଚରଣ କଲେ ତାହା ବିପ୍ଳବକୁ ଜନ୍ମ ଦିଏ। ବିପ୍ଳବ ବ୍ୟକ୍ତିକୁ ନିଜର ଅଧିକାର ପ୍ରତି ସଚେତନ କରେ ଓ ଏକ ନବ୍ୟ ପ୍ରଗତିଶୀଳ ବ୍ୟବସ୍ଥାକୁ ଜନ୍ମ ଦିଏ, ଅନୁପଯୋଗୀ ପୁରାତନକୁ ନଷ୍ଟକରି ଉପଯୁକ୍ତ ନୂତନ ମାର୍ଗ ଅନ୍ୱେଷଣ କରେ।

ବୁଦ୍ଧ ଯେଉଁଳି ବ୍ୟକ୍ତିସ୍ୱାଧୀନତାର ଅବତାରଣା କରିଛନ୍ତି, ସେଭଳି ଅନ୍ୟ କୌଣସିଠାରେ ଶୁଣାଯାଏ ନାହିଁ। ଏହି ସ୍ୱାଧୀନତାର ଆବଶ୍ୟକତା ରହିଛି, କାରଣ ବୁଦ୍ଧଙ୍କ ଅନୁଯାୟୀ, ମଣିଷର ମୁକ୍ତି ତା' ସତ୍ୟର ଉପଲବ୍ଧି ଉପରେ ନିର୍ଭର କରେ।

କୌଣସି ବାହ୍ୟଶକ୍ତିର ଆଜ୍ଞାନୁବର୍ତ୍ତୀ ହେବା ଦ୍ୱାରା ବା ଉତ୍ତମ ବ୍ୟବହାର କରିବା ଫଳରେ ପୁରସ୍କାର ସ୍ୱରୂପ ଏହି ମୁକ୍ତି ମଣିଷକୁ ମିଳେ ନାହିଁ। ମୃତ୍ୟୁ ପରେ କାହା ଦରବାରରେ ବିଚାର ହୁଏନା କି ସ୍ୱର୍ଗ-ନର୍କ ପ୍ରଦାନ କରାଯାଏନା। ଭଲ-ମନ୍ଦ ଓ ନ୍ୟାୟ-ଅନ୍ୟାୟ ଏସବୁ ସାପେକ୍ଷିକ ଶବ୍ଦ ଯାହାର କୌଣସି ନିର୍ଦ୍ଦିଷ୍ଟ ପରିଭାଷା ନାହିଁ। କର୍ମ ସିଦ୍ଧାନ୍ତ ହେଉଛି କ୍ରିୟା ଓ ପ୍ରତିକ୍ରିୟାର ସିଦ୍ଧାନ୍ତ। ଏହା ଏକ ପ୍ରାକୃତିକ ନିୟମ। ନ୍ୟାୟ ବା ପୁରସ୍କାର ଓ ଶାସ୍ତି ସହିତ ଏହାର କିଛି ଯାଏ ଆସେ ନାହିଁ। ପ୍ରତ୍ୟେକ ଇଚ୍ଛାକୃତ କାର୍ଯ୍ୟ ଏହାର ପ୍ରଭାବ ଜାତ କରେ। ଭଲ କାମ ଦ୍ୱାରା ଭଲ ଫଳ କିମ୍ବା ମନ୍ଦ କାର୍ଯ୍ୟ ଦ୍ୱାରା ମନ୍ଦ ଫଳ ହେଲେ ତାହା ନ୍ୟାୟ ନୁହେଁ। ଏହା ଆମେ କରୁଥିବା କାର୍ଯ୍ୟାବଳୀକୁ ଜଗିବସିଥିବା କୌଣସି ଶକ୍ତି ଦ୍ୱାରା ଦିଆଯାଇଥିବା ପୁରସ୍କାର ବା ଶାସ୍ତି ନୁହେଁ; ବରଂ ତାହା ସେହି କର୍ମର ନିଜସ୍ୱ ଅନ୍ତର୍ନିହିତ ସ୍ୱଭାବ ବା ନିୟମ ଯୋଗୁଁ ହିଁ ସଂଘଟିତ ହୁଏ।

ପୁନର୍ଜନ୍ମକୁ ବୁଦ୍ଧ ସ୍ୱୀକାର କରିଛନ୍ତି। ଦୃଢ଼ ଇଚ୍ଛା, ମାନସିକ ଶକ୍ତି, ଅଭିଳାଷ ଓ ବଞ୍ଚିରହିବାର କାମନା ଏକ ପ୍ରଚଣ୍ଡ ବଳ ଯାହା କେବଳ ଜୀବନ ନୁହେଁ, ସମ୍ପୂର୍ଣ୍ଣ ଜୀବସତ୍ତା ଓ ଏପରିକି ସାରା ଜଗତକୁ ମଧ୍ୟ ଚଳମାନ କରେ। ଏହା ଜଗତରେ ସବୁଠାରୁ ବଡ଼ ବଳ, ବଡ଼ ଶକ୍ତି। ବୌଦ୍ଧଧର୍ମ ଅନୁଯାୟୀ ଶରୀରର କ୍ରିୟା ବନ୍ଦ ହୋଇଯିବା ପରେ ଏହି ଶକ୍ତି ପ୍ରତିହତ ହୁଏନାହିଁ, ବରଂ ଆଉ ଗୋଟିଏ ରୂପରେ ଏହାର ଅଭିବ୍ୟକ୍ତି ଘଟେ, ଯାହାକୁ ଆମେ ପୁନର୍ଜନ୍ମ କହୁ। ପ୍ରାଣୀର ଚେତନାଶକ୍ତି ମୃତ୍ୟୁ ବେଳକୁ ମରିଯାଏନା ବରଂ ତାହା ପୁନର୍ଜନ୍ମ ଭାବେ ଆତ୍ମପ୍ରକାଶ କରେ। ଚେତନାରୁ କାମନା, କାମନାରୁ ଇଚ୍ଛାଶକ୍ତି ଓ ତହିଁରୁ କର୍ମଶକ୍ତି ଜାତ ହୁଏ। ପ୍ରାଣୀ କୌଣସି ବସ୍ତୁ ବା ସୁଖର ଲାଳସା ରଖିଲେ ତାକୁ ତୃଷ୍ଣା ବା କାମନା କୁହାଯାଏ। କାମନା ଚରିତାର୍ଥ ହେଲେ ବା ନହେଲେ ତାହା ବଢ଼ିବଢ଼ିଯାଏ। ଏହାଦ୍ୱାରା ଏକ ଭବଚକ୍ର ସୃଷ୍ଟିହୁଏ, ଯାହା ପୁନର୍ଜନ୍ମର କାରଣ। ତେଣୁ ମଣିଷ ଯଦି ଏହି ତୃଷ୍ଣା ବା କାମନାକୁ ସୃଷ୍ଟି ହେବାକୁ ନଦିଏ, ତେବେ ସେ ପୁନର୍ଜନ୍ମରୁ ମଧ୍ୟ ମୁକ୍ତି ପାଇପାରିବ, ଯାହାକୁ ବୁଦ୍ଧ ନିର୍ବାଣ ବୋଲି କହିଛନ୍ତି।

ବୌଦ୍ଧଧର୍ମ ଆତ୍ମା-ପରମାତ୍ମା, ଈଶ୍ୱର ଓ ଭାଗ୍ୟବାଦୀ ସିଦ୍ଧାନ୍ତ ଉପରେ କୁଠାରାଘାତ କରୁଥିବାରୁ ଏହି ବଦ୍ଧମୂଳ ଧାରଣାକୁ ପରିତ୍ୟାଗ କରିପାରୁନଥିବା ଚିନ୍ତକମାନେ ଅତି ସନ୍ତର୍ପଣରେ ନିରୀଶ୍ୱରବାଦୀ ବୁଦ୍ଧଙ୍କ ନାମରେ ଭଗବାନ ଶବ୍ଦକୁ

ଯୋଡ଼ି ବୌଦ୍ଧଧର୍ମକୁ ବୈଦିକଧର୍ମର ଏକ ଶାଖା ଭାବରେ ଅଭିହିତ କଲେ। ଭାଗବତ ଓ ଅଗ୍ନିପୁରାଣ ଭଳି ଗ୍ରନ୍ଥଗୁଡ଼ିକରେ ତଥାଗତ ବୁଦ୍ଧଙ୍କୁ ବୈଦିକ ମତର ସମର୍ଥକ ଓ ଉଦ୍ଧାରକ ଭାବେ ବର୍ଣ୍ଣନା କରି ତାଙ୍କୁ ବିଷ୍ଣୁଙ୍କ ନବମ ଅବତାର ଭାବେ ସ୍ଥାନିତ କରାଯାଇଛି।

ସଂସାରରେ ବିବିଧ ସେବାମୂଳକ କାର୍ଯ୍ୟକୁ ବି 'ବୌଦ୍ଧ ବା ଖ୍ରୀଷ୍ଟିଆନ ବଦାନ୍ୟତା' ଭଳି ବିଭିନ୍ନ ପ୍ରକାର ମାର୍କା ଦିଆଯାଉଛି। ସେବା ବା ଉଦାରତା କଦାପି ଗୋଷ୍ଠୀନିଷ୍ଠ ବା ସାମ୍ପ୍ରଦାୟିକ ହୋଇନପାରେ। ଏହା ବୌଦ୍ଧ ବା ଖ୍ରୀଷ୍ଟୀୟ ନୁହେଁ, ହିନ୍ଦୁ କି ମୁସଲମାନ ନୁହେଁ। ସୁତରାଂ ପ୍ରେମ, ଦାନ, ଦୟା, ସହୃଦୟତା, ସହିଷ୍ଣୁତା, ଧୈର୍ଯ୍ୟ, ବନ୍ଧୁତା, ଅଭିଳାଷ, ବିଦ୍ୱେଷ, ଘୃଣା, ଅଜ୍ଞତା ଓ ପ୍ରତାରଣା ଆଦି ମଣିଷର ତମାମ ଗୁଣଦୋଷ ଓ ଭାବପ୍ରବଣତାକୁ କୌଣସି ଗୋଷ୍ଠୀଭୁକ୍ତ କରାଯାଇପାରିବ ନାହିଁ; ଏଗୁଡ଼ିକ କୌଣସି ନିର୍ଦ୍ଦିଷ୍ଟ ସମ୍ପ୍ରଦାୟଭୁକ୍ତ ମଧ୍ୟ ନୁହନ୍ତି। ଜଣେ ସତ୍ୟାନ୍ୱେଷୀ ପାଇଁ କୌଣସି ଚିନ୍ତାସ୍ରୋତର ଉତ୍ପତ୍ତିସ୍ଥଳ ଆଦୌ ଗୁରୁତ୍ୱପୂର୍ଣ୍ଣ ନୁହେଁ; ବରଂ ଯାହା ଆବଶ୍ୟକ, ତାହା ହେଲା ତାକୁ ଠିକ୍ ଭାବରେ ଦେଖିବା ଓ ବୁଝିବା।

ଜୀବନ ଓ ଜଗତ ସମ୍ପର୍କରେ ବୁଦ୍ଧଙ୍କ ବସ୍ତୁନିଷ୍ଠ ବିଶ୍ଳେଷଣ ଓ କାମନାରହିତ ସରଳ ଜୀବନଯାପନରୁ ନିର୍ବାଣ ଲାଭର ପ୍ରଦର୍ଶିତ ମାର୍ଗ ମାନବ ସମାଜର ଆଲୋକ ବର୍ତ୍ତିକା କହିଲେ ଅତ୍ୟୁକ୍ତି ହେବନି। ବୁଦ୍ଧଙ୍କ ବାର୍ତ୍ତାକୁ ହୃଦୟଙ୍ଗମ ଓ ଅନୁକରଣ କଲେ ଯେ ମାନବ ସମାଜରେ ଚିରଶାନ୍ତି ସାଙ୍ଗକୁ ସୁଖ-ସମୃଦ୍ଧି ପ୍ରତିଷ୍ଠିତ ହୋଇପାରିବ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ।

*ସମ୍ବାଦ, ୧୪.୫.୨୦୧୪*

# ଅଦ୍ୱିତୀୟ କ୍ରାନ୍ତିକାରୀ
# ବିନାୟକ ଦାମୋଦର ସାବରକର

ମେ ୧୮, ୧୮୮୩ ମସିହାରେ ମହାରାଷ୍ଟ୍ରର ନାସିକ ଜିଲ୍ଲା ଅନ୍ତର୍ଗତ ଭାଗୁରଠାରେ ବିନାୟକ ଦାମୋଦର ସାବରକର ଏକ ଚିତ୍ତପବନ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିଲେ। ବୀର ସାବରକରଙ୍କର ଜୀବନୀ ବିଖ୍ୟାତ ଲେଖକ ଧନଞ୍ଜୟ କୀର ରଚନା କରିଛନ୍ତି। ତାକୁ ଅଧ୍ୟୟନ କଲେ ସାରାଜୀବନ ସାବରକର ଦେଶମାତୃକାର ସେବାପାଇଁ କିଭଳି ସାଲିସବିହୀନ ସଂଗ୍ରାମ ଜାରି ରଖିଥିଲେ ତା' ସମ୍ବନ୍ଧରେ ସମ୍ୟକ୍ ସୂଚନା ମିଳେ। ତାଙ୍କ ପୂର୍ବପୁରୁଷମାନେ ରାହୁରି ଗ୍ରାମର ଜାଗିରଦାର ଥିଲେ ଏବଂ ସଂସ୍କୃତ ଶାସ୍ତ୍ରରେ ପାଣ୍ଡିତ୍ୟ ଅର୍ଜନ କରିଥିଲେ। କିନ୍ତୁ ବିନାୟକ ସାବରକର ସ୍କୁଲରେ ପଢୁଥିଲାବେଳେ ବ୍ରିଟିଶ୍ ଶାସକମାନଙ୍କର ଅତ୍ୟାଚାରରେ ଅତିଷ୍ଠିତ ଦେଶବାସୀଙ୍କ ଦୁର୍ଦ୍ଦଶା ସ୍ୱଚକ୍ଷୁରେ ଦେଖି ମର୍ମାହତ ହୋଇଥିଲେ। ୧୮୯୭ ମସିହାରେ ମହାରାଣୀ ଭିକ୍ଟୋରିଆଙ୍କର ରାଜ୍ୟାଭିଷେକ ଭାରତବର୍ଷରେ ମହାସମାରୋହରେ ପାଳିତ ହେଉଥିଲାବେଳେ ନାସିକ ସମେତ ମହାରାଷ୍ଟ୍ରର ବିଭିନ୍ନ ସ୍ଥାନରେ ଶହ ଶହ ଲୋକ ପ୍ଲେଗ୍ ମହାମାରୀରେ ଆକ୍ରାନ୍ତ ହୋଇ ପ୍ରାଣତ୍ୟାଗ କରୁଥିଲେ। ସେଥିପ୍ରତି ବ୍ରିଟିଶ୍ ସରକାରଙ୍କର ତିଳେମାତ୍ର ସମ୍ବେଦନା ନଥିଲା। ଏହି ଘଟଣାଟି ଚଉଦ ବର୍ଷ ବୟସ୍କ ବାଳକ ସାବରକରଙ୍କର ଜୀବନର ମୋଡ଼ ବଦଳାଇ ଦେଇଥିଲା। ସେ ଦୁର୍ଗାଙ୍କ ମନ୍ଦିରରେ ଶପଥ କରିଥିଲେ ଯେ ଭାରତର ସ୍ୱାଧୀନତା ଆଣିବା ପାଇଁ ସେ ଆଜୀବନ ସଂଗ୍ରାମ କରିବେ। ସ୍କୁଲରେ ପଢୁଥିଲାବେଳେ ସେ 'ମିତ୍ରମେଳା' ନାମରେ ଏକ ସଂଗଠନ କରି ନିଜ ସାଙ୍ଗସାଥୀ ଓ ବଡ଼ଭାଇ ବାବାରାଓ (ଗଣେଶ)ଙ୍କ ସହାୟତାରେ ଛତ୍ରପତି ଶିବାଜୀ ଜୟନ୍ତୀ ଓ ଗଣେଶ ଚତୁର୍ଥୀ ପ୍ରଭୃତି ପାଳନକରି ସମସ୍ତଙ୍କୁ ଦେଶପ୍ରୀତିରେ ଉଦ୍‌ବୁଦ୍ଧ କରୁଥିଲେ। ସେ ନିଜ ସାଙ୍ଗମାନଙ୍କୁ ସଦାସର୍ବଦା ଶିବାଜୀ, ତାନାଜୀ, ବାସୁଦେବ ବଳବନ୍ତ ଫଡ଼କେ ଆଦି ମହାନ ବୀରଙ୍କର ଆଦର୍ଶରେ ପରିଚାଳିତ ହେବାକୁ ପ୍ରବର୍ତ୍ତାଉଥିଲେ। ସ୍କୁଲ ଶିକ୍ଷା ସମାପ୍ତ କଲାପରେ ପୁନାର ପ୍ରସିଦ୍ଧ ଫର୍ଗୁସନ୍ କଲେଜରେ ସେ ପାଠ ପଢ଼ିଲେ। ସେଠାରେ ମଧ୍ୟ ସେ ନିଜର ବନ୍ଧୁମାନଙ୍କୁ ଏକାଠି

କରି 'ମିତ୍ରମେଳା' ସଂଗଠନ ଚଳାଇ ରଖିଲେ । ଏହି ମିତ୍ରମେଳା ସଂଗଠନ ପରବର୍ତ୍ତୀ ସମୟରେ ୧୯୦୪ ମସିହାରେ 'ଅଭିନବ ଭାରତ ସମାଜ' ରୂପେ ମଧ୍ୟ ଓ ପଶ୍ଚିମ ଭାରତରେ ପ୍ରତିଷ୍ଠା ଲାଭ କରିଥିଲା ଏବଂ ପରେ ଏହା 'ଗଦ୍ଦର ପାର୍ଟି'ରେ ବିଲୀନ ହୋଇ ଭାରତର ସ୍ୱାଧୀନତା ସଶସ୍ତ୍ର ବିପ୍ଳବଦ୍ୱାରା ହାସଲ କରିବାକୁ ପ୍ରଚେଷ୍ଟା କରିଥିଲା ।

୧୯୦୧ ମସିହାରେ ସାବରକର ଅଠର ବର୍ଷ ବୟସରେ ଭାଉସାହେବ ଚିପଲୁଣକରଙ୍କ ଝିଅ ଯମୁନାଙ୍କୁ ବିବାହ କଲେ । ସେ ବି.ଏ. ଓ ଏଲ୍‌ଏଲ୍.ବି. ପାଶ୍ କରି ବମ୍ବେରେ ଓକିଲାତି ଆରମ୍ଭ କଲେ । ତାଙ୍କର ଉଗ୍ର ଜାତୀୟତାବାଦୀ ଲେଖା ନିୟମିତ ଭାବରେ ବିଭିନ୍ନ ଖବରକାଗଜରେ ପ୍ରକାଶିତ ହେଉଥିବାରୁ ସେ ସାଧାରଣ ଲୋକଙ୍କର ଯେତେ ନିକଟତର ହେଉଥିଲେ ବ୍ରିଟିଶ୍ ସରକାରଙ୍କର ସେତିକି କୋପଦୃଷ୍ଟିର ଶିକାର ହେଉଥିଲେ । ତାହାସତ୍ତ୍ୱେ ୧୯୦୬ ମସିହାରେ ସେ ଏକ ଛାତ୍ରବୃତ୍ତି ପାଇ ଇଂଲଣ୍ଡରେ ବାରିଷ୍ଟରି ପଢ଼ିବାକୁ ଚାଲିଗଲେ । ସେଠାରେ ସେ ଇଟାଲୀର ସ୍ୱାଧୀନତା ଆନ୍ଦୋଳନର ମୁଖ୍ୟ ମ୍ୟାଜିନୀଙ୍କ ଜୀବନୀ ଉପରେ ଏକ ପୁସ୍ତକ ରଚନା କଲେ ଯାହାକି ପ୍ରକାଶ ପାଇବା ପୂର୍ବରୁ ବ୍ରିଟିଶ୍ ସରକାରଙ୍କଦ୍ୱାରା ବ୍ୟାଜ୍ୟାପ୍ତ ହୋଇଥିଲା । ତାଙ୍କର ଦ୍ୱିତୀୟ ପୁସ୍ତକ '୧୮୫୭ ମସିହାର ଭାରତର ସ୍ୱାଧୀନତା ସଂଗ୍ରାମ' ପ୍ରକାଶ ପାଇବାକୁ ମଧ୍ୟ ବ୍ରିଟିଶ୍ ସରକାର ନିଷିଦ୍ଧ କରିଦେଲେ । ତାଙ୍କ ବଡ଼ଭାଇ ବାବାରାଓଙ୍କୁ ରାଜଦ୍ରୋହ ଅଭିଯୋଗରେ ଆଜୀବନ କାରାଦଣ୍ଡରେ ଦଣ୍ଡିତ କରି ଆଣ୍ଡାମାନ ସେଲୁଲାର ଜେଲ୍‌ରେ ବନ୍ଦୀ କଲେ ।

ବୀର ସାବରକର ଲଣ୍ଡନରେ ୧୯୦୭ ମସିହାରେ ୧୮୫୭ ମସିହା ସଂଗ୍ରାମର ସ୍ୱର୍ଣ୍ଣଜୟନ୍ତୀ ପାଳନ କଲେ । ଏହି ଉତ୍ସବ ପରେ ଭାରତର ଛାତ୍ରମାନେ ଗୋପନରେ ଗୁଳିଗୋଳା ତିଆରି କରିବା ଓ ତାହାକୁ ପ୍ରୟୋଗ କରିବାର ତାଲିମ ହାସଲ କଲେ । ସେଠାରେ ବାବାରାଓଙ୍କୁ ଆଜୀବନ କାରାଦଣ୍ଡରେ ଦଣ୍ଡିତ କରିଥିବା ବ୍ରିଟିଶ୍ ଅଧିକାରୀ ଜାକ୍‌ସନ୍‌ଙ୍କୁ ଅନନ୍ତକାହ୍ନେର ନାମକ ଜଣେ ଯୁବକ ଗୁଳିକରି ହତ୍ୟାକଲେ । ଅନ୍ୟ ଜଣେ ବିପ୍ଳବୀ ଛାତ୍ର ମଦନଲାଲ ଢିଙ୍ଗରା ଭାରତୀୟ ଛାତ୍ରମାନଙ୍କ ସମ୍ପର୍କରେ ଗୁପ୍ତଚର କାର୍ଯ୍ୟ କରୁଥିବା କର୍ଜନ ୱାୟଲୀଙ୍କୁ ଗୁଳିକରି ହତ୍ୟାକଲେ । ମଦନଲାଲ ଢିଙ୍ଗରା ଘୋଷଣା କରିଥିଲେ ଯେ ଯେଉଁ ବ୍ରିଟିଶ୍ ଅଧିକାରୀ ଭାରତୀୟମାନଙ୍କୁ କାରାଦଣ୍ଡ ଓ ଫାଶୀ ଦେବ ସେମାନଙ୍କୁ ହତ୍ୟା କରାଯିବ ।

ବିନାୟକ ସାବରକର କୃତିତ୍ୱର ସହ ବାରିଷ୍ଟରି ପାସ୍ କରି ଭାରତକୁ ଫେରିବା ପାଇଁ ପ୍ରସ୍ତୁତ ହେଉଥିବା ଅବସ୍ଥାରେ ରାଜଦ୍ରୋହ ଓ ଇଂରେଜ ଅଧିକାରୀଙ୍କୁ ହତ୍ୟା

ଷଡ଼ଯନ୍ତ୍ର ଅଭିଯୋଗରେ ଲଣ୍ଡନର ଭିକ୍ଟୋରିଆ ଷ୍ଟେସନଠାରେ ତାଙ୍କୁ ଗିରଫ କରାଗଲା ଏବଂ ବନ୍ଦୀ ଅବସ୍ଥାରେ ଜାହାଜ ଯୋଗେ ଭାରତ ପଠାଇଦିଆଗଲା । କିନ୍ତୁ ଫ୍ରାନ୍ସର ମାର୍ସେଲିସ୍ ବନ୍ଦରଠାରେ ଜାହାଜ ଅଟକିଥିବା ସମୟରେ ୧୦ ଜୁଲାଇ ୧୯୧୦ରେ ଜାହାଜରୁ ସମୁଦ୍ରକୁ ଡେଇଁପଡ଼ି ପଳାୟନ କରିଥିଲେ; କିନ୍ତୁ ଦୁର୍ଭାଗ୍ୟବଶତଃ ପୁନର୍ବାର ବନ୍ଦୀ ହେଲେ । ଭାରତରେ ପହଞ୍ଚିଲାପରେ ସାବରକରଙ୍କୁ ବ୍ରିଟିଶ୍ ସରକାରଙ୍କୁ ବହିଷ୍କାର କରିବା ଓ ଇଂରେଜ ଅଫିସରଙ୍କୁ ହତ୍ୟା କରିବା ଷଡ଼ଯନ୍ତ୍ରରେ ଦୋଷୀ ସାବ୍ୟସ୍ତ କରି ଆଣ୍ଡାମାନର ସେଲୁଲାର ଜେଲରେ ବନ୍ଦୀ କରାଗଲା । ସେଠାରେ ସେ ଅକଥନୀୟ ନିର୍ଯାତନାର ସମ୍ମୁଖୀନ ହେବାରୁ ରୁଗ୍ଣ ହୋଇପଡ଼ିଥିଲେ । ଭାରତରେ ତାଙ୍କର ମୁକ୍ତିପାଇଁ ଚାରିଆଡ଼େ ସଭାସମିତି ଜରିଆରେ ଦାବୀ ହେବାରୁ ୧୯୨୧ ମସିହାରେ ଇଂରେଜ ସରକାର ତାଙ୍କୁ ସେଲୁଲାର ଜେଲ୍‌ରୁ ଆଣି ରତ୍ନଗିରି ଜେଲ୍‌ରେ ବନ୍ଦୀ କଲେ । ୧୯୨୪ ମସିହାରେ ତାଙ୍କୁ ଜେଲ୍‌ରୁ ମୁକ୍ତ କରିଦେଲେ କିନ୍ତୁ ସର୍ତ୍ତ ଥିଲା ଯେ ସେ ସକ୍ରିୟ ରାଜନୀତିରେ ଭାଗ ନେଇପାରିବେ ନାହିଁ ଓ ରତ୍ନଗିରି ବାହାରକୁ ଯାଇପାରିବେ ନାହିଁ । ୧୯୩୭ ପର୍ଯ୍ୟନ୍ତ ତାଙ୍କ ଉପରେ ଏହି ଆଦେଶ ଲାଗୁ ରହିଥିଲା । ରତ୍ନଗିରିରେ ଥିବା ସମୟରେ ତାଙ୍କର ଦୁଇଟି ସନ୍ତାନ ଜନ୍ମଗ୍ରହଣ କରିଥିଲେ । ୧୯୩୭ ମସିହାପରେ ତାଙ୍କ ଉପରେ ଥିବା ନିଷେଧାଜ୍ଞା ସରକାର ଉଠାଇ ନେଇଥିଲେ ଏବଂ ସେହିବର୍ଷ ସେ ସକ୍ରିୟ ରାଜନୀତିରେ ଭାଗନେଇ 'ହିନ୍ଦୁ ମହାସଭା'ର ଅଧ୍ୟକ୍ଷ ଭାବରେ ନିର୍ବାଚିତ ହେଲେ । ଏହି ଅବସରରେ ରାଜଗୋପାଳଚାରୀ, ସୁଭାଷ ଚନ୍ଦ୍ର ବୋଷ, ଭାଇ ପରମାନନ୍ଦ, ଜବାହରଲାଲ ନେହେରୁ, ଶ୍ରୀ କେଲକାର ପ୍ରମୁଖ ତାଙ୍କୁ ଅଭିନନ୍ଦନ ଜ୍ଞାପନ କରିଥିଲେ ।

ବୀର ସାବରକର ଦେଶର ବିକାଶ ପାଇଁ ସଦାସର୍ବଦା ଚିନ୍ତା କରୁଥିଲେ । ସେ ହିନ୍ଦୁ ସମାଜରେ ଥିବା କୁସଂସ୍କାର ଓ ଅସ୍ପୃଶ୍ୟତା ନିରାକରଣ ଦିଗରେ ସଦାସର୍ବଦା ଆନ୍ଦୋଳନ କରିଥିଲେ । ଅସ୍ପୃଶ୍ୟତା ଏକ ସାମାଜିକ ବ୍ୟାଧି ବୋଲି ସେ ସମସ୍ତଙ୍କୁ ବୁଝାଉଥିଲେ । ତାଙ୍କର ପ୍ରଚେଷ୍ଟା ଯୋଗୁଁ ରତ୍ନଗିରିର ବିଠ୍ଠଲ ମନ୍ଦିରରେ ଅସ୍ପୃଶ୍ୟମାନେ ପ୍ରବେଶର ଅଧିକାର ପାଇଲେ । ଛୁଆଁଅଛୁଆଁ ନିର୍ବିଶେଷରେ ସମସ୍ତେ ଏକାଠି ପଙ୍‌କ୍ତି ଭୋଜନ କରିବାକୁ ସେ 'ସହଭୋଜ' କାର୍ଯ୍ୟକ୍ରମମାନ ଆୟୋଜନ କରୁଥିଲେ । ତାଙ୍କର ଏହି କାର୍ଯ୍ୟକ୍ରମଗୁଡ଼ିକୁ ଡକ୍ଟର ଭୀମରାଓ ଆମ୍ବେଦକର ଉଚ୍ଛ୍ୱସିତ ପ୍ରଶଂସା କରିଛନ୍ତି । ସେ ଯେଉଁମାନେ ହିନ୍ଦୁଧର୍ମ ପରିତ୍ୟାଗ କରିଥିଲେ ସେମାନଙ୍କୁ ଆର୍ଯ୍ୟ ସମାଜ ମାଧ୍ୟମରେ

ପୁଣି ହିନ୍ଦୁଧର୍ମକୁ ଫେରାଇ ଆଣିବାକୁ ଉଦ୍ୟମ ଜାରି ରଖିଥିଲେ। ୧୯୪୮ ମସିହା ଜାନୁଆରୀ ୩୦ ତାରିଖରେ ମହାତ୍ମାଗାନ୍ଧିଙ୍କର ହତ୍ୟା ମାମଲାରେ ତାଙ୍କୁ ସନ୍ଦେହରେ ବନ୍ଦୀ କରାଯାଇଥିଲା, କିନ୍ତୁ ପରେ ସେ ନିର୍ଦ୍ଦୋଷ ସାବ୍ୟସ୍ତ ହେଲେ। ୧୯୬୫ ମସିହାରେ ମହାରାଷ୍ଟ୍ର ସରକାର ଓ ଭାରତ ସରକାର ତାଙ୍କୁ 'ସ୍ୱାତନ୍ତ୍ର୍ୟବୀର' ଭାବରେ ସମ୍ମାନିତ କଲେ। ସେ ହିନ୍ଦୁତ୍ୱର ନୂତନ ବ୍ୟାଖ୍ୟା କରି କହିଥିଲେ ଯେ ସେ ହିନ୍ଦ୍‌ମହାସାଗରଠାରୁ ସିନ୍ଧୁନଦୀ ପର୍ଯ୍ୟନ୍ତ ପରିବ୍ୟାପ୍ତ ଭାରତ ଭୂଖଣ୍ଡକୁ ନିଜର ମାତୃଭୂମି, ପିତୃଭୂମି ଓ ପୁଣ୍ୟଭୂମି ମନେକରୁଥିବା ଲୋକଙ୍କୁ ହିନ୍ଦୁଭାବେ ବିବେଚିତ କରାଯିବା ଉଚିତ।

ନେତାଜୀ ସୁଭାଷଚନ୍ଦ୍ର ବୋଷ ବୀର ସାବରକରଙ୍କ ଆଦର୍ଶରେ ନିଜକୁ ଅନୁପ୍ରାଣିତ କରି ସଶସ୍ତ୍ର ବିପ୍ଳବ ଦ୍ୱାରା ଇଂରେଜ ସରକାରଙ୍କୁ ଭାରତରୁ ତଡ଼ିହେବ ବୋଲି ବିଶ୍ୱାସ ଜନ୍ମାଇଥିଲେ। ଏହି ମହାବିପ୍ଳବୀଙ୍କର ୨୬ ଫେବୃୟାରୀ ୧୯୬୬ରେ ମହାପ୍ରୟାଣ ଘଟିଥିଲା। କିନ୍ତୁ ଭାରତର ସ୍ୱାଧୀନତା ପାଇଁ ତାଙ୍କର ଅମୂଲ୍ୟ ଯୋଗଦାନ ଭାରତର ଯୁବସମାଜକୁ ଚିରଦିନ ପ୍ରେରଣା ଯୋଗାଉଥିବ।

*ଓଡ଼ିଶା ଭାସ୍କର, ୧.୬.୨୦୧୪*

# ବିପ୍ଳବୀ ପ୍ରାଣନାଥ

ବିପ୍ଳବୀ ପ୍ରାଣନାଥ ପଟ୍ଟନାୟକ ୧୯୦୫ ମସିହା ନଭେମ୍ବର ୧୬ ତାରିଖ ଦିନ କଣାସ ଥାନା ଅନ୍ତର୍ଗତ ଡିମିରି ଗ୍ରାମରେ ଜନ୍ମଗ୍ରହଣ କରିଥିଲେ। ତାଙ୍କ ପିତାଙ୍କ ନାମ ମଦନମୋହନ ପଟ୍ଟନାୟକ ଓ ମାତାଙ୍କ ନାମ ଚିତ୍ରାଦେବୀ। ପ୍ରାଣନାଥଙ୍କୁ ଅଢ଼େଇ ବର୍ଷ ହୋଇଥିଲାବେଳେ ତାଙ୍କର ମାତୃ ବିୟୋଗ ଘଟିଥିଲା। ଛଅ ଭାଇଭଉଣୀଙ୍କ ମଧ୍ୟରେ ସେ ଥିଲେ ସର୍ବକନିଷ୍ଠ। ତାଙ୍କ ଲାଳନପାଳନର ଦାୟିତ୍ୱ ମୁଖ୍ୟତଃ ବଡ଼ଭଉଣୀ ଧନମଣିଙ୍କ ଉପରେ ନ୍ୟସ୍ତ ଥିଲା। ତିନିବର୍ଷ ବୟସରେ ଶିଶୁ ପ୍ରାଣନାଥ ଗାଁ ଚାଟଶାଳୀରେ ପାଠପଢ଼ା ଆରମ୍ଭ କଲେ। ଗ୍ରାମର ଏକମାତ୍ର ଚାଟଶାଳୀରେ ଧନୀ-ଦରିଦ୍ର, ଛୁଆଁ-ଅଛୁଆଁ ସମସ୍ତଙ୍କ ମେଳରେ ବସି ସେ ପାଠ ପଢ଼ିଲେ। ଗାଁର ଦରିଦ୍ର ପିଲାମାନଙ୍କୁ ଦେଖି ସେ ପିଲାବେଳୁ ସେମାନଙ୍କ ପ୍ରତି ସହାନୁଭୂତିଶୀଳ ଥିଲେ। ସେତେବେଳର ସାମାଜିକ ଚାଲିଚଳଣି ଓଡ଼ିଶାର ଗାଁଗହଳିରେ କୁସଂସ୍କାର, ଅନ୍ଧବିଶ୍ୱାସ, ଅବିଶ୍ୱାସ ଓ ଶିକ୍ଷାର ଅଭାବ ଯୋଗୁଁ ଜୀବନ ଦୁର୍ବିଷହ ଥିଲା। ଜାତିଭେଦ, ଛୁଆଁ-ଅଛୁଆଁ ଭେଦଭାବ ଚରମସୀମାରେ ପହଞ୍ଚିଥିଲା। ପ୍ରାଣନାଥ କିନ୍ତୁ କୌଣସି ଭେଦଭାବକୁ ଖାତିର ନକରି ସବୁ ସମୟରେ ସେହି ଦରିଦ୍ର, ଅଛବ ଜାତିର ପିଲାମାନଙ୍କ ସହିତ ଖେଳୁଥିଲେ ଏବଂ ବଡ଼ମାନଙ୍କର ଆକଟକୁ ଭ୍ରୂକ୍ଷେପ କରୁନଥିଲେ। ବାପା ମଦନମୋହନ କେବେ ବି ପ୍ରାଣନାଥଙ୍କ କାର୍ଯ୍ୟକୁ ନିରୁତ୍ସାହିତ କରୁନଥିଲେ। ପ୍ରାଣନାଥ ମା'ଛେଉଣ୍ଡ ହୋଇଥିବାରୁ ସିଏ ଯାହା ଠିକ୍ ଭାବୁଛି ତାହା କରୁ, ଯେଉଁଥିରେ ସେ ଆନନ୍ଦ ପାଉଛି ତାକୁ କରିବାକୁ ଦିଆଯାଉ ବୋଲି ସବୁବେଳେ ମଦନମୋହନ ସମସ୍ତଙ୍କୁ ବୁଝାଉଥିଲେ।

ଗାଁ ଚାଟଶାଳୀରେ ପାଠ ଶେଷ କଲାପରେ ସେ ପଢ଼ିବାକୁ ଗଲେ ନିଜ ଗ୍ରାମଠାରୁ ପ୍ରାୟ ତିନିକିଲୋମିଟର ଦୂରରେ ଅବସ୍ଥିତ କଣାସ ପ୍ରାଇମେରୀ ସ୍କୁଲକୁ। ସେଠାରୁ ପାଠ ଶେଷ କଲାପରେ ପୁରୀ ଜିଲ୍ଲା ସ୍କୁଲକୁ ପଢ଼ିବାକୁ ଗଲେ ଓ ସେଠି ସପ୍ତମ ଶ୍ରେଣୀରେ ନାମ ଲେଖାଇଲେ ଏବଂ ଏହି ସ୍କୁଲ ଜୀବନରେ ସେ ନିଜ ଜୀବନକୁ ସମ୍ପୂର୍ଣ୍ଣ ନିଆରା ଭାବରେ ଗଢ଼ିବାକୁ ସୁଯୋଗ ପାଇଲେ। ଏହିଠାରେ ଭଗବତୀ ପାଣିଗ୍ରାହୀଙ୍କ ସହିତ ତାଙ୍କର ବନ୍ଧୁତ୍ୱ ସ୍ଥାପନ ହେଲା ଏବଂ ଗୋପବନ୍ଧୁ ଦାସଙ୍କ ସହିତ

ପ୍ରାଣନାଥଙ୍କର ସାକ୍ଷାତ ହେଲା। ଗୋପବନ୍ଧୁ ଦାସଙ୍କ ଚରିତ୍ର, କାର୍ଯ୍ୟାବଳୀ, ସେବା ମନୋବୃତ୍ତି ପ୍ରାଣନାଥଙ୍କ ଉପରେ ବିଶେଷ ପ୍ରଭାବ ପକାଇଲା। ସେହିଦିନଠାରୁ ଲୋକଙ୍କୁ ଭଲପାଇବା, ଦେଶକୁ ଭଲପାଇବାର ମନ୍ତ୍ରରେ ସେ ଦୀକ୍ଷିତ ହେଲେ। ମୂଳଦୁଆ ପଡ଼ିଲା ଭବିଷ୍ୟତ ଓଡ଼ିଶାର ଜଣେ ବିପ୍ଳବୀ ଜନନାୟକ, ମହାନ ସ୍ୱାଧୀନତା ସଂଗ୍ରାମୀ, ଶ୍ରେଣୀହୀନ, ଶୋଷଣବିହୀନ, ସାମ୍ୟବାଦ ସମାଜ ଗଠନର ସାଲିସବିହୀନ ସଂଗ୍ରାମୀ ଓ ଦୃଢ଼ ପ୍ରବକ୍ତା ପ୍ରାଣନାଥ ପଟ୍ଟନାୟକଙ୍କ ଜୀବନର।

୧୯୨୦ ମସିହାରେ ଭାରତୀୟ ଜାତୀୟ କଂଗ୍ରେସର ଏକ ଗୁରୁତ୍ୱପୂର୍ଣ୍ଣ ଅଧିବେଶନ ନାଗପୁରଠାରେ ଅନୁଷ୍ଠିତ ହୋଇଥିଲା, ଯେଉଁଥିରେ କଂଗ୍ରେସ ନେତୃବୃନ୍ଦ ଛାତ୍ରଛାତ୍ରୀମାନଙ୍କୁ ଶିକ୍ଷାୟତନ ବର୍ଜନ କରି ବ୍ରିଟିଶ୍ ସରକାର ସହିତ ଅସହଯୋଗ କରିବାକୁ ଡାକରା ଦେଲେ। ତେଣୁ ପୁରୀ ଜିଲ୍ଲା ସ୍କୁଲର ଛାତ୍ରମାନେ ଧର୍ମଘଟ କଲେ। ପୁରୀ ସହରରେ ସଭାସମିତିମାନ ଅନୁଷ୍ଠିତ ହେଲା, ଯାହା ପ୍ରାଣନାଥଙ୍କୁ ଜାତୀୟ ଆନ୍ଦୋଳନରେ ସାମିଲ ହେବାକୁ ପ୍ରେରଣା ଯୋଗାଇଥିଲା। ମାଟ୍ରିକ୍ୟୁଲେସନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାପରେ ପ୍ରାଣନାଥ ରେଭେନ୍ସା କଲେଜର ବିଜ୍ଞାନ ଶ୍ରେଣୀରେ ଯୋଗଦେଲେ। ଏହିଠାରେ ସେ ଭଗବତୀଚରଣ ପାଣିଗ୍ରାହୀଙ୍କ ସହିତ ଛାତ୍ରାବାସରେ ଗୋଟିଏ କୋଠରୀରେ ରହିଲେ ଏବଂ ଦୁହେଁ ନିବିଡ଼ ଭାବରେ ମିଶିବାର ସୁଯୋଗ ପାଇଥିଲେ। ପ୍ରାଣନାଥ ରେଭେନ୍ସା କଲେଜରେ ଛାତ୍ରମାନଙ୍କ ନେତୃତ୍ୱ ନେଇ ବିକ୍ଷୋଭ ଓ କଳାପତାକା ପ୍ରଦର୍ଶନ ଆଦି କାର୍ଯ୍ୟକ୍ରମ ଜରିଆରେ ସ୍ୱାଧୀନତା ସଂଗ୍ରାମରେ ସକ୍ରିୟ ଯୋଗଦାନ କଲେ। ୧୯୨୮ ମସିହାରେ ସାଇମନ୍ କମିଶନକୁ ବିରୋଧ କରିବା, ୧୯୩୦ ମସିହା ସମଗ୍ର ଦେଶରେ ହେଉଥିବା ଜାନୁୟାରୀ ୨୬କୁ ପୂର୍ଣ୍ଣସ୍ୱରାଜ ଦିବସ ପାଳନ କରିବା, ୧୯୩୦ ମସିହା ଏପ୍ରିଲ ମାସରେ ଲବଣ ସତ୍ୟାଗ୍ରହୀମାନଙ୍କ ପାଇଁ କଟକଠାରେ ବିପୁଳ ସମ୍ବର୍ଦ୍ଧନାର ଆୟୋଜନ କରିବା ଆଦି କାର୍ଯ୍ୟରେ ସକ୍ରିୟ ଭାଗ ନେବାରୁ ସେ ଏକ ଆଗଧାଡ଼ିର ଛାତ୍ରନେତା ଭାବରେ ପରିଗଣିତ ହେବାକୁ ଲାଗିଲେ। ସେ କଲେଜ ଶିକ୍ଷାକୁ ବର୍ଜନ କରି ଜାତୀୟ ମୁକ୍ତି ସଂଗ୍ରାମରେ ଲମ୍ଫପ୍ରଦାନ କଲେ। ଲୁଣମରା, ବିଦେଶୀ ବସ୍ତ୍ର ବର୍ଜନ ପାଇଁ ପିକେଟିଂ, ମଦ-ଗଞ୍ଜେଇ ଦୋକାନ ଆଗରେ ପିକେଟିଂ କରି ପୁରୀ ଓ ବାଲେଶ୍ୱରରେ ଦୁଇଥର କାରାବରଣ କଲେ। ୧୯୩୨ରେ ପୁନର୍ବାର ଆଇନ ଅମାନ୍ୟ ଆନ୍ଦୋଳନରେ ପୁରୀ, ଖୋର୍ଦ୍ଧା ଓ ଜଟଣୀ ଆଦି ଅଞ୍ଚଳରେ ଆନ୍ଦୋଳନ କରି ପୋଲିସ ଦ୍ୱାରା ଗିରଫ ହୋଇ ପୁରୀ ଜେଲ୍ ଓ ପରେ ପାଟଣା କ୍ୟାମ୍ପ

ଜେଲ୍‌ରେ ବନ୍ଦୀ ହେଲେ। ସ୍ୱାଧୀନତା ସଂଗ୍ରାମରେ ସତ୍ୟାଗ୍ରହ, ଭାରତଛାଡ଼ ଆନ୍ଦୋଳନ ଆଦି କାର୍ଯ୍ୟରେ ସେ ନିଜକୁ ନିୟୋଜିତ କରି, କୃଷକମାନଙ୍କୁ ସଂଗଠିତ କରି ସେମାନଙ୍କ ସ୍ୱାର୍ଥରକ୍ଷା ପାଇଁ ସଂଘର୍ଷ କରି ଓଡ଼ିଶାରେ ଜଣେ ପ୍ରଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ଓ ବିପ୍ଳବୀ ରୂପେ ପରିଗଣିତ ହୋଇଥିଲେ।

ଜୁନ୍ ୨୮ ତାରିଖ ୧୯୩୫ ମସିହାରେ ପ୍ରାଣନାଥ ପଟ୍ଟନାୟକଙ୍କର ଚଣାହାଟ ଗାଁର ବିଶିଷ୍ଟ ବ୍ୟକ୍ତି କବି କୃଷ୍ଣମୋହନ ପଟ୍ଟନାୟକଙ୍କ ଝିଅ ମଂଜରୀଦେବୀଙ୍କ ସହିତ ବିବାହ ସମ୍ପନ୍ନ ହୋଇଥିଲା। ଏହି ବିବାହ ଥିଲା ଏକ ଆଦର୍ଶ ବିବାହ। ବାଣ ନ ଥିଲା, ବାଜା ନ ଥିଲା, ରୋଷଣି ନ ଥିଲା, ପାଲିଙ୍କି ନ ଥିଲା, ପ୍ରାଣନାଥ ଚାଲିଚାଲି କୃଷ୍ଣମୋହନ ପଟ୍ଟନାୟକଙ୍କ ଘରେ ପହଞ୍ଚିଲେ। ଅତି ନିରାଡ଼ମ୍ବର ଭାବରେ ବିବାହ ସମ୍ପନ୍ନ ହେଲା। ଯାନିଯୌତୁକର ପ୍ରଶ୍ନ ନାହିଁ। ମଂଜରୀ ଦେବୀ ଥିଲେ ପ୍ରାଣନାଥବାବୁଙ୍କର ଉପଯୁକ୍ତ ସହଧର୍ମିଣୀ। ତାଙ୍କ ସହାୟତା ଯୋଗୁଁ ପ୍ରାଣନାଥବାବୁ ସମାଜରେ ପ୍ରତିଷ୍ଠା ଲାଭ କରିଥିଲେ। ମଂଜରୀଦେବୀଙ୍କ ଭଳି ସ୍ୱାମୀପରାୟଣା, କଷ୍ଟସହିଷ୍ଣୁ, ସୁଗୃହିଣୀ, ସର୍ବୋପରି ଜଣେ ଦେଶସେବିକା ବିରଳ।

୧୯୩୬ ମସିହା ଏପ୍ରିଲ ପହିଲାରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବାପରେ ସେ ଷାଠିଏ ଜଣିଆ ବିଧାନସଭାକୁ ଖୋର୍ଦ୍ଧା ନିର୍ବାଚନ ମଣ୍ଡଳୀରୁ କଂଗ୍ରେସ ପ୍ରାର୍ଥୀ ରୂପେ ନିର୍ବାଚିତ ହୋଇଥିଲେ। ପ୍ରାଣନାଥଙ୍କ ପାଇଁ ଗୌରବର ବିଷୟ ଯେ ଜବାହରଲାଲ ନେହେରୁ ତାଙ୍କ ନିର୍ବାଚନ ପ୍ରଚାର ଲାଗି ଖୋର୍ଦ୍ଧା ଆସିଥିଲେ। ଏହି ସମୟରେ ପ୍ରାଣନାଥ ତାଙ୍କ ଜୀବନର ଏକ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ଗ୍ରହଣ କରିଥିଲେ। କଂଗ୍ରେସର ବ୍ୟବସ୍ଥାପକ ଥାଇ ସେ ଗୁରୁଚରଣ ପଟ୍ଟନାୟକ ଓ ଭଗବତୀ ପାଣିଗ୍ରାହୀଙ୍କ ସହିତ ମିଶି ଗୁପ୍ତ କମ୍ୟୁନିଷ୍ଟ ଦଳ ଗଠନ କଲେ। ସେହିଦିନଠାରୁ ଜୀବନର ଶେଷ ପର୍ଯ୍ୟନ୍ତ ସେ କମ୍ୟୁନିଷ୍ଟ ଦଳର ସଦସ୍ୟ ରହିଲେ। କଂଗ୍ରେସ ଦଳରେ ରହିଥିଲେ ସେ ରାଜ୍ୟ ଓ କେନ୍ଦ୍ର ସ୍ତରରେ ମନ୍ତ୍ରୀପଦ ମଣ୍ଡନ କରିପାରିଥାନ୍ତେ, କିନ୍ତୁ କଂଗ୍ରେସ ଦଳର ନୀତି, ଆଦର୍ଶ ଓ ଦର୍ଶନରେ ଏକମତ ନ ହୋଇପାରି କ୍ଷମତା ଲୋଭକୁ ପରିତ୍ୟାଗ କରି ସମାଜରେ ଶୋଷଣର ବିଲୋପ ଘଟାଇବାକୁ କମ୍ୟୁନିଷ୍ଟ ପାର୍ଟି ଆଦର୍ଶରେ ନିଜକୁ ବ୍ରତୀ କରି ଦୁଃଖ-କଷ୍ଟର ଜୀବନକୁ ସ୍ୱଇଚ୍ଛାରେ ବରଣ କରିନେଲେ।

୧୯୪୨ ମସିହା ଅଗଷ୍ଟ ୯ ତାରିଖ ଦିନ କଟକଠାରେ ସ୍ୱାମୀ ସହଜାନନ୍ଦ ସରସ୍ୱତୀଙ୍କ ଉପସ୍ଥିତିରେ ଓଡ଼ିଶାରେ କମ୍ୟୁନିଷ୍ଟ ପାର୍ଟିର ରାଜ୍ୟଶାଖା ଅଫିସ୍ ଉଦ୍‌ଘାଟିତ

ହେଲା। ଭଗବତୀ ପାଣିଗ୍ରାହୀ ଏହି ପାର୍ଟିର ପ୍ରଥମ ସଂପାଦକ ହେଲେ। ପ୍ରାଣନାଥ ପଟ୍ଟନାୟକ ସେହିଦିନ ନିଜକୁ ଖୋଲାଖୋଲି ଭାବରେ ଜଣେ କମ୍ୟୁନିଷ୍ଟ ବୋଲି ଘୋଷଣା କଲେ। ସେହିଦିନ କଟକରୁ ଖୋର୍ଦ୍ଧା ଫେରିବା ବାଟରେ ପୋଲିସ୍ ତାଙ୍କୁ ଗିରଫ କରି ବ୍ରହ୍ମପୁର ଜେଲ୍‌କୁ ପଠାଇ ଦେଇଥିଲା, ଯେଉଁଠାରେ ସେ ୧୯୪୫ ମସିହା ଯାଏ ବନ୍ଦୀ ଜୀବନଯାପନ କରିଥିଲେ। ୧୯୪୭ ଅଗଷ୍ଟ ୧୫ରେ ଭାରତ ସ୍ୱାଧୀନତା ପାଇଲା ପରେ ମଧ୍ୟ ସେ ଆନନ୍ଦିତ ହୋଇପାରି ନଥିଲେ, କାରଣ ଭାରତର ଖଟିଖିଆ ଲୋକ ଏହି ସ୍ୱାଧୀନତା ଦ୍ୱାରା ଲାଭବାନ ହେବେ ନାହିଁ ବୋଲି ତାଙ୍କର ହୃଦ୍‌ବୋଧ ହୋଇଥିଲା। କମ୍ୟୁନିଷ୍ଟମାନେ କହୁଥିଲେ "ୟେ ଆଜାଦି ଝୁଟା ହେ"। ଲୋକମାନଙ୍କ ସାମୁହିକ ଶକ୍ତି ଉପରେ ତାଙ୍କର ସମ୍ପୂର୍ଣ୍ଣ ବିଶ୍ୱାସ ଥିଲା। ତେଣୁ ଦୟାନଦୀ ବନ୍ୟାରୁ ଶତାଧିକ ଗ୍ରାମକୁ ରକ୍ଷା କରିବା ପାଇଁ ଜଟଣୀ-ପିପିଲି ମଧ୍ୟବର୍ତ୍ତୀ କାକୁଡ଼ିଆ ନିକଟରେ ଜନସାଧାରଣଙ୍କୁ ଏକତ୍ର କରାଇ ସେ କେତେକୀ ଘାଇ ବନ୍ଧ ନିର୍ମାଣ କରାଇଥିଲେ। ୧୯୪୮ ମସିହାରେ କେନ୍ଦ୍ର ସରକାର କମ୍ୟୁନିଷ୍ଟ ପାର୍ଟିକୁ ବେଆଇନ ଘୋଷଣା କରିଥିଲେ। ପ୍ରାଣନାଥଙ୍କୁ କିଛିଦିନ ଆତ୍ମଗୋପନ କରିବାକୁ ପଡ଼ିଥିଲା; କିନ୍ତୁ ପରେ ସେ ପୋଲିସ୍ ଦ୍ୱାରା ଗିରଫ ହେଲେ ଓ ତାଙ୍କୁ ବ୍ରହ୍ମପୁର ଜେଲ୍‌ରେ ବନ୍ଦୀ କରାଗଲା। ବ୍ରହ୍ମପୁର ଜେଲ୍‌ରେ ସେ କଂଗ୍ରେସର ମେରିରାୟ ଶାସନ ଓ ପୋଲିସ୍ ଅତ୍ୟାଚାର ବିରୁଦ୍ଧରେ ୪୭ ଦିନ କାଳ ଅନଶନ କରିଥିଲେ। ସଂଗ୍ରାମମୟ ଜୀବନରେ ପ୍ରାଣନାଥ ଦଶଥର କାରାବରଣ କରି ଏଗାରବର୍ଷକାଳ ବନ୍ଦୀଜୀବନ ବିତାଇଥିଲେ। ସେଥିପାଇଁ ତାଙ୍କର ଦୁଃଖ ନ ଥିଲା। ୧୯୫୨ ମସିହାରେ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ସମ୍ପାଦକ ଅଜୟ ଘୋଷଙ୍କ ସହିତ ଆଲୋଚନା ପରେ କମ୍ୟୁନିଷ୍ଟ ପାର୍ଟି ଉପରୁ ବେଆଇନ ଘୋଷଣା ହଟାଇ ନିଆଗଲା। ପ୍ରାଣନାଥ ଜେଲ୍‌ରୁ ଖଲାସ ହେଲେ।

ସେ ଏକାଧାରରେ ଥିଲେ ଜଣେ ଜନସେବକ, ବିଧାୟକ, ରାଜନୀତିଜ୍ଞ, ସମାଜ ସଂସ୍କାରକ ଓ ସାହିତ୍ୟିକ। ୧୯୫୭ ମସିହାରୁ ୧୯୬୧ ମସିହା ଯାଏ ପ୍ରାଣନାଥ ବିଧାୟକ ରହିଥିଲେ। ତାଙ୍କ ଜୀବନ ସବୁବେଳେ ଅନ୍ୟ ପାଇଁ ସମର୍ପିତ ଥିଲା। ସେ ଥିଲେ କାମର ମଣିଷ, କଥାର ନୁହଁ। ଓଡ଼ିଶାରେ କୃଷକ, ଚାଷୀ, କ୍ଷେତମଜଦୁରମାନଙ୍କୁ ନାନା ଭାବରେ ଶୋଷଣ କରୁଥିବା ମହାଜନ, ଜମିଦାର ଓ ସାମନ୍ତ ଗୋଷ୍ଠୀଙ୍କ ବିରୁଦ୍ଧରେ ସେ ସଦାସର୍ବଦା ସ୍ୱର ଉତ୍ତୋଳନ କରୁଥିଲେ। ଶିକ୍ଷାର ପ୍ରସାର ପାଇଁ ସେ ସବୁବେଳେ ଚିନ୍ତିତ ଥିଲେ। ସେ ୧୯୪୫ରେ ଜଟଣୀଠାରେ ଏକ ହାଇସ୍କୁଲ ପ୍ରତିଷ୍ଠା

କରିଥିଲେ ଓ ତହିଁରେ ନିଜେ ଶିକ୍ଷକତା କରି ପିଲାମାନଙ୍କୁ ପାଠ ପଢ଼ାଉଥିଲେ। ତାଙ୍କ ପ୍ରଚେଷ୍ଟାରେ ୧୯୫୯ ମସିହା ଜୁଲାଇ ମାସ ୧୯ ତାରିଖରେ ଖୋର୍ଦ୍ଧା କଲେଜ ପ୍ରତିଷ୍ଠା ହୋଇଥିଲା। ଏହାର ଉଦ୍‌ଘାଟନୀ ଉତ୍ସବରେ ମୁଖ୍ୟମନ୍ତ୍ରୀ ଡକ୍ଟର ହରେକୃଷ୍ଣ ମହତାବ, ଅନ୍ୟ ଦୁଇଜଣ ମନ୍ତ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଓ ଡକ୍ଟର ରାଧାନାଥ ରଥ ଯୋଗଦାନ କରିଥିଲେ। ଏହି କଲେଜ ଆଜି ପ୍ରାଣନାଥ ସ୍ୱୟଂଶାସିତ ମହାବିଦ୍ୟାଳୟରୂପେ ସାରା ଓଡ଼ିଶାରେ ଖ୍ୟାତି ଅର୍ଜନ କରିଛି।

ପ୍ରାଣନାଥ ପଟ୍ଟନାୟକଙ୍କ ବହୁମୁଖୀ ପ୍ରତିଭା ଭାରତର ପ୍ରଖ୍ୟାତ କମ୍ୟୁନିଷ୍ଟ ପାର୍ଟିର ଯେକୌଣସି ନେତାଙ୍କ ସହିତ ତୁଳନୀୟ। ତାଙ୍କ ସଂଗଠନ ଶକ୍ତି ଏସ୍.ଏ. ଡାଙ୍ଗେ, ପି.ସି. ଜୋଷୀଙ୍କ ସହିତ ତୁଳନୀୟ। ତାଙ୍କର ବକ୍ତୃତା ଶୈଳୀ ଇ.ଏମ୍.ଏସ୍. ନାମ୍ବୁଦିପଦ, ମିର୍ଜାକର ଓ ସୂର୍ଯ୍ୟ ସେନଙ୍କ ଠାରୁ କୌଣସି ଗୁଣରେ କମ୍ ନୁହେଁ।

ଓଡ଼ିଶାର ଆର୍ଥିକ ଉନ୍ନତି କିଭଳି ସମ୍ଭବ ସେ ସଂକ୍ରାନ୍ତରେ ସେ ବହୁ ଦଲିଲ ପ୍ରସ୍ତୁତ କରି ସରକାରଙ୍କ ପାଖରେ ପେଶ୍ କରିଥିଲେ। ଓଡ଼ିଶାର ରାଜନୀତି, ଅର୍ଥନୀତି, କଳା, ସାହିତ୍ୟ, ସଂସ୍କୃତି, ଶିକ୍ଷା ସବୁ କ୍ଷେତ୍ରରେ ସେ ନିଜକୁ ଜଡ଼ିତ କରିଥିଲେ। କୃଷକ ଆନ୍ଦୋଳନ, ଛାତ୍ର ଆନ୍ଦୋଳନ, ଗଡ଼ଜାତ ପ୍ରଜା ଆନ୍ଦୋଳନ, ଭାରତର ସ୍ୱାଧୀନତା ଆନ୍ଦୋଳନ ସବୁ କ୍ଷେତ୍ରରେ ତାଙ୍କର ନିଷ୍ଠାପର ଯୋଗଦାନ ବହୁ ଲୋକଙ୍କୁ ଅନୁପ୍ରାଣିତ କରିଛି। ଆଜିବି ଯେଉଁଠି ଦରିଦ୍ର-ଦଳିତ-ନିଷ୍ପେଷିତ-ଅତ୍ୟାଚାରିତ ଜନସାଧାରଣ ଶୋଷଣର ଶିକାର ହେଉଛନ୍ତି ସେମାନେ ଏବେ ମଧ୍ୟ ପ୍ରାଣନାଥ ପଟ୍ଟନାୟକଙ୍କ ଭଳି ନେତାଙ୍କୁ ସ୍ମରଣ କରୁଛନ୍ତି। କାରଣ ପ୍ରାଣନାଥଙ୍କ ଜୀବନ ସଦାସର୍ବଦା ଅନ୍ୟପାଇଁ ସମର୍ପିତ ଥିଲା।

ଓଡ଼ିଶାର ଏହି ସୁଯୋଗ୍ୟ ସନ୍ତାନଙ୍କର ୧୯୭୦ ମସିହା ଅକ୍ଟୋବର ୫ ତାରିଖରେ ଦେହାବସାନ ଘଟିଥିଲା। ଆଜି ସମାଜସେବା ନାମରେ ଯେଉଁଭଳି ଭ୍ରଷ୍ଟାଚାର, ବ୍ୟଭିଚାର, ନାରୀନିର୍ଯାତନା ଭଳି ଅପକର୍ମମାନ ବ୍ୟାପିବାରେ ଲାଗିଛି ସେହି ସମୟର ନିଷ୍ଠାପର, ତ୍ୟାଗୀ, ପରୋପକାରୀ, ସଚ୍ଚୋଟ ନେତା ପ୍ରାଣନାଥ ପଟ୍ଟନାୟକଙ୍କର କାର୍ଯ୍ୟାବଳୀକୁ ଓଡ଼ିଶାର ଜନସାଧାରଣ ଝୁରି ହେଉଛନ୍ତି। ତାଙ୍କର ପୁଣ୍ୟତିଥିରେ ପ୍ରାର୍ଥନା କରିବା ସେ ପୁନର୍ଜନ୍ମ ଲାଭକରି ଓଡ଼ିଶାବାସୀଙ୍କୁ ଦୁର୍ଦ୍ଦିନରୁ ମୁକ୍ତ କରନ୍ତୁ।

# 'ବୃହତ୍ତର ବାଂଲାଦେଶ ଗଠନ' ପ୍ରକ୍ରିୟା ଦାନା ବାନ୍ଧୁଛି

୯ ଅଗଷ୍ଟରେ 'ଭାରତ ରକ୍ଷାମଂଚ' ଓଡ଼ିଶା ଶାଖା ତରଫରୁ ଭଂଜକଳା ମଣ୍ଡପଠାରେ କ୍ରାନ୍ତିଦିବସ ପାଳିତ ହୋଇଥିଲା। ଅନ୍ୟାନ୍ୟ ପ୍ରସଂଗ ମଧ୍ୟରେ ଆମ ଦେଶରେ ବଂଗଳାଦେଶୀ ଅନୁପ୍ରବେଶକାରୀଙ୍କ ଦ୍ୱାରା ସୃଷ୍ଟି ହୋଇଥିବା ବିଭିନ୍ନ ସମସ୍ୟା ସମ୍ପର୍କରେ ଆଲୋଚନା ହୋଇଥିଲା। ଏହି ଆଲୋଚନା ଏକ ବିରାଟ ସଂକଟର ସଂକେତ ଦେଇଛି।

ନିଜର ଅସାଧାରଣ ବୀରତ୍ୱ ଯୋଗୁଁ କୀର୍ତ୍ତିଚକ୍ର ଉପାଧିରେ ଭୂଷିତ ୧୯୬୮ ବ୍ୟାଚର ଆଇ.ପି.ଏସ୍. ଅଫିସର ଅଜିତ ଡୋଭଲ ଜାନୁୟାରୀ ୨୦୦୫ ମସିହାରେ ଭାରତର ଇଣ୍ଟେଲିଜେନ୍ସ ବ୍ୟୁରୋ ମୁଖ୍ୟ ହିସାବରେ କାର୍ଯ୍ୟକରି ଅବସର ଗ୍ରହଣ କରିଛନ୍ତି। କିଛିଦିନ ତଳେ ଶ୍ରୀ ଡୋଭଲ ଭାରତର ଆଭ୍ୟନ୍ତରୀଣ ସୁରକ୍ଷା ସମ୍ପର୍କରେ ନିଜର ମତ ପ୍ରଦାନ କରି କହିଛନ୍ତି ଯେ, ବଂଗଳାଦେଶୀମାନଙ୍କ ଅନୁପ୍ରବେଶ ବର୍ତ୍ତମାନ ଦେଶର ପ୍ରଧାନ ଆଭ୍ୟନ୍ତରୀଣ ସଂକଟ ରୂପେ ଦେଖାଦେଇଛି। ଏପର୍ଯ୍ୟନ୍ତ ଭାରତ ସରକାର ଅନ୍ୟୁନ ଦୁଇ କୋଟି ବଂଗଳାଦେଶୀ ଅନୁପ୍ରବେଶକାରୀଙ୍କୁ ଦେଶରୁ ବିଦା କରିବାକୁ ସକ୍ଷମ ହୋଇପାରି ନାହାନ୍ତି। ଅନ୍ୟପକ୍ଷରେ ଏହି ଅନୁପ୍ରବେଶକାରୀମାନେ ଦେଶର ବଡ଼ ବଡ଼ ମହାନଗର ଯଥା– ଦିଲ୍ଲୀ, ମୁମ୍ବାଇ, କୋଲକତା, ଚେନ୍ନାଇ ଓ ଅନ୍ୟାନ୍ୟ ସହରରେ ଅବସ୍ଥାପନ କରୁଥିବା ସମ୍ପର୍କରେ ଜ୍ଞାତ ଥାଇ ମଧ୍ୟ ସରକାର କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରୁନାହାନ୍ତି।

ବେସରକାରୀ ସୂତ୍ରରୁ ଜଣାଯାଏ ଯେ, ବର୍ତ୍ତମାନ ଅନ୍ୟୂନ ୫ କୋଟି ବଂଗଳାଦେଶୀ ନାଗରିକ ବେଆଇନ ଭାବେ ଭାରତରେ ଅବସ୍ଥାନ କରୁଛନ୍ତି ଏବଂ ସେମାନେ ତାଙ୍କର ଆସ୍ଥାନ ଦୃଢ଼ କରିବାରେ ଲାଗିଛନ୍ତି। ଭାରତ-ବାଂଲାଦେଶ ମଧ୍ୟରେ ଥିବା ୪,୦୯୬ କିଲୋମିଟର ସୀମାନ୍ତ ଦେଇ ସେମାନେ କୌଣସି ନା କୌଣସି ଉପାୟରେ ପ୍ରତିଦିନ ପ୍ରବେଶ କରିବାରେ ଲାଗିଛନ୍ତି। ଭାରତ-ବାଂଲାଦେଶ ସୀମା ସ୍ଥଳପଥ, ଜଳପଥ, କୃଷିକ୍ଷେତ୍ର, ଜଂଗଲ, ଗ୍ରାମ ସବୁଆଡ଼େ ଉନ୍ମୁକ୍ତ। ପଶ୍ଚିମବଂଗ,

ଆସାମ, ବିହାରରେ ସେମାନେ ମୁଖ୍ୟ ଆସ୍ଥାନ ଜମାଇଥିଲେ ମଧ୍ୟ ଭାରତର ବିଭିନ୍ନ ପ୍ରଦେଶକୁ ଏବେ ବ୍ୟାପିଗଲେଣି । ଓଡ଼ିଶାରେ କେନ୍ଦ୍ରାପଡ଼ା, ବାଲେଶ୍ୱର, ଭଦ୍ରଖ, ପୁରୀ ଆଦି ଜିଲ୍ଲାମାନଙ୍କରେ ଏହି ବଂଗଳାଦେଶୀମାନେ ୧୯୫୦ ମସିହା ପରଠାରୁ ବସତି ସ୍ଥାପନ କରିବା ଆରମ୍ଭ କରିଛନ୍ତି । ପ୍ରଥମେ ବଂଗଳାଦେଶର ହିନ୍ଦୁମାନେ ପୂର୍ବପାକିସ୍ଥାନର ମୁସଲମାନମାନଙ୍କ ଦ୍ୱାରା ଅତ୍ୟାଚାରିତ ହୋଇ ପଳାଇଆସି ବସବାସ କରୁଥିଲେ । କିନ୍ତୁ ୧୯୭୧ ମସିହାର ଭାରତ-ପାକିସ୍ଥାନ ଯୁଦ୍ଧପରେ ହିନ୍ଦୁ-ମୁସଲମାନ ନିର୍ବିଶେଷରେ ବଂଗଳାଦେଶୀମାନେ ଜଳପଥରେ ଆସି ଶହ ଶହ ସଂଖ୍ୟାରେ ସମୁଦ୍ରକୂଳିଆ ଓ ନଦୀକୂଳିଆ ଅଂଚଳମାନଙ୍କରେ ସ୍ୱତନ୍ତ୍ର ବସତିମାନ ସ୍ଥାପନ କରି ରହିବାକୁ ଲାଗିଛନ୍ତି । ରାଜନେତାମାନେ ସେମାନଙ୍କୁ ଭୋଟ ପାଇବା ଲାଳସାରେ ନାଗରିକତ୍ୱର ସମସ୍ତ ସୁବିଧା ସୁଯୋଗ ଯୋଗାଇ ଦେଉଛନ୍ତି ।

ଅନ୍ୟ କେତେକ ରାଜ୍ୟର ପରିସ୍ଥିତି ଆମ ରାଜ୍ୟ ଅପେକ୍ଷା ଗୁରୁତର । ପଶ୍ଚିମବଂଗରେ ୨୯୪ ବିଧାନସଭା ଆସନରୁ ଅନ୍ୟୂନ ୫୩ଟି ଆସନ ବଂଗଳାଦେଶୀ ମୁସଲମାନ ଭୋଟରମାନଙ୍କ ଅକ୍ତିଆରରେ ରହିଛି । ସେହିଭଳି ଆସାମର ୪୦ଟି ବିଧାନସଭା ଆସନ ବଂଗଳାଦେଶୀ ଅନୁପ୍ରବେଶକାରୀଙ୍କ ଅକ୍ତିଆରକୁ ଚାଲିଯାଇଛି । "ଅଲ୍ ଆସାମ ଷ୍ଟୁଡେଣ୍ଟ୍ସ ୟୁନିଅନ" (ଆସୁ) ଆସାମର ଧୁବ୍ରି, ଗୋଆଲପଡ଼ା, ହଇଲାକାଣ୍ଡି, କରିମଗଜି, ବାରପେଟା, ବୋଙ୍ଗାଇଗାଁ, ନଳବାଡ଼ି, କୋକରାଝର, ଲକ୍ଷ୍ମୀପୁର, ଦାରଙ୍ଗ, ନାଗାଁଓ ଓ କାଚାର ଜିଲ୍ଲାଗୁଡ଼ିକରେ ବଂଗଳାଦେଶୀ ଅନୁପ୍ରବେଶକାରୀ ମୁସଲମାନମାନଙ୍କ ସଂଖ୍ୟା ସ୍ଥାନୀୟ ଅଧିବାସୀଙ୍କଠାରୁ ବହୁ ଅଧିକ ବୋଲି ବାରମ୍ବାର ଦର୍ଶାଇ ସେମାନଙ୍କୁ ଆସାମରୁ ବିତାଡ଼ିତ କରିବାକୁ ଦାବି କରିଆସୁଛନ୍ତି । ବିହାରର ପୂର୍ଣ୍ଣିଆ, ଆରହାରିଆ, କିଶନଗଞ୍ଜ, କଟିହାର ଏବଂ ପଶ୍ଚିମବଂଗର ଦକ୍ଷିଣ ୨୪ ପରଗଣା, ଉତ୍ତର ୨୪ ପରଗଣା, ନଦିଆଁ, ମୁର୍ଶିଦାବାଦ, ମାଳଦା, ବୀରଭୂମ ଓ ପଶ୍ଚିମ ଦିନାଜପୁର ଆଦି ଅଂଚଳରେ ମଧ୍ୟ ବଂଗଳାଦେଶୀ ମୁସଲମାନମାନଙ୍କ ସଂଖ୍ୟା ଅଧିକ । ଏମାନଙ୍କ ମଧ୍ୟରେ ରହିଥିବା ଉଗ୍ରପନ୍ଥୀ ମୁସଲମାନମାନେ ଭାରତରୁ ଅଲଗା ହୋଇ ବଂଗଳାଦେଶରେ ମିଶିଯିବାକୁ ଦାବି କରିବା ମତଲବରେ ଅଛନ୍ତି । ଆସାମର ପୂର୍ବତନ ରାଜ୍ୟପାଳ ଅବସରପ୍ରାପ୍ତ ଲେଫ୍ଟନାଣ୍ଟ ଜେନେରାଲ ଏସ୍.କେ. ସିହ୍ନା ତାଙ୍କ କାର୍ଯ୍ୟକାଳ ସମୟରେ ଭାରତ ସରକାରଙ୍କୁ ପତ୍ରଦ୍ୱାରା ସତର୍କ କରାଇ ଦେଇଥିଲେ ଯେ ଯଦି ଏହି ବଂଗଳାଦେଶୀ ମୁସଲମାନମାନଙ୍କ ଅନୁପ୍ରବେଶକୁ

ରୋକାନଯାଏ, ତେବେ ଦିନ ଆସିବ, ଯେତେବେଳେ ସେ ଅଂଚଳରେ କାଶ୍ମୀରଠାରୁ ଅଧିକ ସାଂଘାତିକ ପରିସ୍ଥିତି ସୃଷ୍ଟି ହେବ।

'ଓଡ଼ିଶା ପୋଷ୍ଟ'ର ୫ ଅଗଷ୍ଟ ସଂସ୍କରଣରେ ଶିବାଜୀ ସରକାରଙ୍କ ଦ୍ୱାରା ଲିଖିତ ଏକ ପ୍ରବନ୍ଧର ତଥ୍ୟ ଅନୁଯାୟୀ ଭାରତର ଅର୍ଥନୀତି ପ୍ରତି ବଂଗଳାଦେଶୀ ଅନୁପ୍ରବେଶକାରୀମାନେ ଏକ ଆହ୍ୱାନ ସୃଷ୍ଟି କରିଛନ୍ତି। ବେଆଇନ୍ ଭାବରେ କେବଳ ପଶ୍ଚିମବଂଗର ସୀମା ଅଂଚଳରେ ବାର୍ଷିକ ଚାରି ଲକ୍ଷ କୋଟି ଟଙ୍କାର ବାଣିଜ୍ୟ କାରବାର ବାଂଲାଦେଶୀମାନଙ୍କ ଦ୍ୱାରା ହେଉଅଛି। ପଶ୍ଚିମବଂଗର ମୁର୍ଶିଦାବାଦ, ମାଲଦା ଓ ବୀରଭୂମ ଜିଲ୍ଲାର ପ୍ରଶାସନିକ ଅଧିକାରୀ ଓ ସୀମା ସୁରକ୍ଷାବାହିନୀର କର୍ତ୍ତୃପକ୍ଷମାନେ ସମସ୍ତ ବିଷୟରେ ଅବଗତ ଥିଲେ ମଧ୍ୟ ନିଷିଦ୍ଧ ପଣ୍ୟଦ୍ରବ୍ୟଗୁଡ଼ିକର ଚାଲାଣକୁ ରୋକିବାକୁ କୌଣସି ପଦକ୍ଷେପ ଗ୍ରହଣ କରୁନାହାନ୍ତି। ମିଆଁମାର, ପାକିସ୍ଥାନ ଓ ଚାଇନାରେ ପ୍ରସ୍ତୁତ ହେଉଥିବା ଅତ୍ୟାଧୁନିକ ଅସ୍ତ୍ରଶସ୍ତ୍ର ବଂଗଳାଦେଶରୁ ମାଓବାଦୀମାନଙ୍କ ବ୍ୟବହାର ପାଇଁ ଝାଡ଼ଖଣ୍ଡକୁ ବହୁପରିମାଣରେ ଚାଲାଣ ହେଉଛି, ଯାହା ଅନ୍ୟାନ୍ୟ ଅଞ୍ଚଳକୁ ସୁଚିନ୍ତିତ ଯୋଜନା ଅନୁଯାୟୀ ପ୍ରେରିତ ହେଉଛି। ଭାରତକୁ ଜାଲ୍ ନୋଟ୍ ପଠାଇ ଓ ତାକୁ ପ୍ରଚଳନ କରାଇ ଭାରତ ଅର୍ଥନୀତିକୁ ମଧ୍ୟ ଏହି ଅନୁପ୍ରବେଶକାରୀମାନେ ବିପର୍ଯ୍ୟସ୍ତ କରିବାରେ ଲାଗିଛନ୍ତି। ୨୦୧୪ ମସିହା ଫେବୃୟାରୀ ୧୧ ତାରିଖରେ ପୂର୍ବତନ କେନ୍ଦ୍ର ଅର୍ଥମନ୍ତ୍ରୀ ପି. ଚିଦାମ୍ବରମ୍ ସ୍ୱୀକାର କରିଥିଲେ ଯେ, ୨୦୧୩ ମସିହା ଜୁନ୍ ମାସ ସୁଦ୍ଧା ୪୨ ମାସ ମଧ୍ୟରେ ୧୦୭ କୋଟି ୩୩ ଲକ୍ଷ ଟଙ୍କାର ଜାଲ ଭାରତୀୟ ମୁଦ୍ରା ବଂଗଳାଦେଶୀମାନଙ୍କଠାରୁ ଜବତ୍ କରାଯାଇଥିଲା। ଚଳିତବର୍ଷ ଜୁନ୍-ଜୁଲାଇ ମାସରେ କେବଳ ମୁର୍ଶିଦାବାଦ ଅଂଚଳରୁ ୧୯ ଲକ୍ଷ ଟଙ୍କାର ଜାଲ୍ ମୁଦ୍ରା ଜବତ୍ କରାଯାଇଛି। ପଶ୍ଚିମବଂଗ ସରକାର ମଧ୍ୟ ତାଙ୍କ ରାଜ୍ୟକୁ ବଂଗଳାଦେଶ ଓ ନେପାଳ ସୀମା ପଥ ଦେଇ ଭାରତୀୟ ବଜାରକୁ ଜାଲ୍ ମୁଦ୍ରା ଆସୁଛି ବୋଲି ସ୍ୱୀକାର କରିଛନ୍ତି। ସୀମା ଅଞ୍ଚଳରେ ଏଭଳି ସ୍ଥାନ ଅଛି, ଯେଉଁଠି ଗୋଟିଏ ଘରର ସମ୍ମୁଖ ଦ୍ୱାରଟି ଭାରତରେ ହୋଇଥିଲାବେଳେ ବାରିପଟ ଦ୍ୱାରଟି ବଂଗଳାଦେଶରେ। ତେଣୁ ଏ ସୀମା ଅଂଚଳରେ ଲୋକ ହେଉ, ମାଦକଦ୍ରବ୍ୟ ହେଉ, ଜାଲ୍ ମୁଦ୍ରା ହେଉ କିମ୍ବା ଅସ୍ତ୍ରଶସ୍ତ୍ର ହେଉ, ଚୋରାଚାଲାଣକାରୀମାନଙ୍କ ପାଇଁ ଏସବୁ କାରବାର କରିବାରେ ବିଶେଷ ଅସୁବିଧା ହୁଏନାହିଁ। ସୀମା ସୁରକ୍ଷାବାହିନୀର କର୍ତ୍ତୃପକ୍ଷ ପଶ୍ଚିମବଂଗ ସୀମାରେ ୪୬ଟି ସ୍ଥାନ ଚୋରାଚାଲାଣ ପାଇଁ ଅତ୍ୟନ୍ତ ସମ୍ବେଦନଶୀଳ ବୋଲି ଚିହ୍ନଟ କରିଛନ୍ତି।

ସୀମାବର୍ତ୍ତୀ କିଛି ଅଞ୍ଚଳ ତାରବାଡ଼ ଲଗାଇବା ଦ୍ୱାରା ଚୋରାଚାଲାଣ କିଞ୍ଚିତ୍ ପରିମାଣରେ ହ୍ରାସ ପାଇଛି। କିନ୍ତୁ ଯେପର୍ଯ୍ୟନ୍ତ ସମସ୍ତ ସୀମାକୁ ତାରବାଡ଼ ଦ୍ୱାରା ବନ୍ଦ ନ କରାଯାଇଛି ଓ ଜଳପଥଗୁଡ଼ିକରେ ଅତ୍ୟାଧୁନିକ ଯନ୍ତ୍ରଚାଳିତ ବୋଟ ସାହାଯ୍ୟରେ ଦିବାନିଶି ପେଟ୍ରୋଲିଂ କରିବାର ବ୍ୟବସ୍ଥା ନ କରାଯାଇଛି, ସେ ପର୍ଯ୍ୟନ୍ତ ଚୋରାସାମଗ୍ରୀ ଚାଲାଣକୁ ଓ ଲୁଚିଛପି ଚାଲିଆସୁଥିବା ବଂଗଳାଦେଶୀମାନଙ୍କୁ ଅଟକାଯିବା ସମ୍ଭବପର ହେବନାହିଁ। ଦୁର୍ଭାଗ୍ୟର କଥା ଯଦି କୌଣସି ବଂଗଳାଦେଶୀ ନାଗରିକକୁ ଭାରତରୁ ବିତାଡ଼ିତ କରିବାକୁ ସରକାର ପଦକ୍ଷେପ ଗ୍ରହଣ କରୁଛନ୍ତି, ତେବେ ସ୍ୱାର୍ଥାନ୍ଧ ବ୍ୟକ୍ତିମାନେ ଅଳ୍ପ ସଂଖ୍ୟକଙ୍କ ଅଧିକାର କ୍ଷୁଣ୍ଣ ହେଲା ଓ ମାନବାଧିକାରର ଉଲଂଘନ ହେଲା ବୋଲି ଚିତ୍କାର କରୁଛନ୍ତି।

ଜ୍ୟୋତି ବସୁଙ୍କ ମୁଖ୍ୟମନ୍ତ୍ରୀତ୍ୱ ସମୟରୁ ବଂଗଳାଦେଶୀ ମୁସଲମାନମାନଙ୍କୁ ଭାରତରେ ପ୍ରବେଶ କରି ବସତି ସ୍ଥାପନ କରିବାକୁ ଅବାଧ ସୁଯୋଗ ପ୍ରଦାନ କରାଯାଇଥିଲା। କାରଣ, ବଂଗଳାଦେଶୀ ମୁସଲମାନମାନେ ସି.ପି.ଆଇ.(ଏମ୍)କୁ ନିର୍ବାଚନରେ ଜିତାଇବାରେ ସାହାଯ୍ୟ କରୁଥିଲେ। ଅବଶ୍ୟ ବୁଦ୍ଧଦେବ ଭଟ୍ଟାଚାର୍ଯ୍ୟ ପଶ୍ଚିମବଂଗର ମୁଖ୍ୟମନ୍ତ୍ରୀ ହେବାପରେ ବଂଗଳାଦେଶୀମାନଙ୍କୁ ଭାରତରେ ପ୍ରବେଶ କରିବାରେ ବହୁ ପ୍ରତିବନ୍ଧକ ସୃଷ୍ଟି କରିଥିଲେ। ମାତ୍ର, ବର୍ତ୍ତମାନର ତୃଣମୂଳ କଂଗ୍ରେସ ସରକାରର ମୁଖ୍ୟ ସୁଶ୍ରୀ ମମତା ବାନାର୍ଜୀ, ନିଜ ଭୋଟବ୍ୟାଙ୍କର ସୁରକ୍ଷା ନିମନ୍ତେ "ଏହା ବାମପନ୍ଥୀ ସରକାର ଅମଳରେ ସୃଷ୍ଟି ହୋଇଥିବା ଏକ ସମସ୍ୟା ଏବଂ ବଂଗଳାଦେଶୀ ଅନୁପ୍ରବେଶକାରୀଙ୍କ ବିରୁଦ୍ଧରେ ପଦକ୍ଷେପ ଗ୍ରହଣ କଲେ ସାଂପ୍ରଦାୟିକ ସଦ୍‌ଭାବ କ୍ଷୁଣ୍ଣ ହେବାର ସମ୍ଭାବନା ଥିବାରୁ" କୌଣସି ଦୃଢ଼ କାର୍ଯ୍ୟାନୁଷ୍ଠାନ ନେବାକୁ ପଛଘୁଞ୍ଚା ଦେଉଛନ୍ତି। ପଶ୍ଚିମବଂଗରୁ ମଧ୍ୟ ଚୋରାବେପାରୀମାନେ ଫେନ୍‌ସିଡିଲ୍ କଫ୍ ସିରପ୍ ଓ ଅନ୍ୟାନ୍ୟ ଔଷଧ, ଚାଉଳ ପ୍ରଭୃତି ନିତ୍ୟ ବ୍ୟବହାର୍ଯ୍ୟ ସାମଗ୍ରୀ ନେଇ ବଂଗଳାଦେଶରେ ଅବାଧରେ ବିକ୍ରି କରୁଛନ୍ତି। ଏହା ବ୍ୟତୀତ ପ୍ରତିଦିନ ହଜାର ହଜାର ଗୋରୁଗାଈ ବଙ୍ଗଳାଦେଶକୁ ଚାଲାଣ କରାଯାଉଛି। ଏହା ସବୁ ରାଜ୍ୟ ସରକାର ଓ କେନ୍ଦ୍ର ସରକାରଙ୍କ ଜ୍ଞାତସାରରେ ଘଟୁଛି।

ଗୁରୁତର ବିଷୟ ହେଉଛି, ପାକିସ୍ଥାନର ଗୁଇନ୍ଦା ସଂସ୍ଥା ଆଇ.ଏସ୍.ଆଇ., କଠୋରପନ୍ଥୀ ବାଂଲାଦେଶୀ ମୁସଲମାନମାନଙ୍କୁ ଭାରତରେ ଅନୁପ୍ରବେଶ କରିବାକୁ ବିଭିନ୍ନ ସଂଗଠନ ମାଧ୍ୟମରେ ସାହାଯ୍ୟ କରୁଛି। ସୀମା ସୁରକ୍ଷା ବାହିନୀର ଏକ ଆକଳନ

ଅନୁଯାୟୀ ବର୍ତ୍ତମାନ ବଂଗଳାଦେଶ ମଧ୍ୟରେ ୧ ୯ ୨ଟି ଶିବିରରେ ସନ୍ତ୍ରାସବାଦୀମାନଙ୍କୁ ତାଲିମ ଦିଆଯାଉଛି । ଯେକୌଣସି ସମୟରେ ସେମାନଙ୍କ ଦ୍ୱାରା ଭାରତରେ ସନ୍ତ୍ରାସବାଦୀ କାର୍ଯ୍ୟକଳାପ ସୃଷ୍ଟି କରିବାର ସମ୍ଭାବନାକୁ ଏଡ଼ାଇଦେଇ ହେବନାହିଁ । ଆଇ.ଏସ୍.ଆଇ. ଦ୍ୱାରା ପ୍ରରୋଚିତ ହୋଇ ବଂଗଳାଦେଶୀ ଅନୁପ୍ରବେଶକାରୀମାନେ ଆସାମ, ପଶ୍ଚିମବଂଗ ଓ ବିହାରର ମୁସଲିମ ସଂଖ୍ୟାଗରିଷ୍ଠ ୨୩ଟି ଜିଲ୍ଲାକୁ ନେଇ "ବୃହତ୍ତର ବଂଗଳାଦେଶ" ଦାବି କରିବାର ସୁଯୋଗ ଅପେକ୍ଷାରେ ରହିଥିବା କଥା ବିଶ୍ୱସ୍ତ ସୂତ୍ରରୁ ଜଣାପଡ଼ିଛି ।

ଭାରତ ଓ ବଂଗଳାଦେଶ ମଧ୍ୟରେ ଉପୁଜିଥିବା ବାଂଗଲାଦେଶୀ ଅନୁପ୍ରବେଶ, ସୀମାନ୍ତବର୍ତ୍ତୀ ଅଂଚଳରେ ବେଆଇନ ଅସ୍ତ୍ରଶସ୍ତ୍ର ଚୋରାଚାଲାଣ ସମେତ ବିଭିନ୍ନ ସମସ୍ୟାଗୁଡ଼ିକୁ ଭାରତର ପ୍ରଧାନମନ୍ତ୍ରୀ ନରେନ୍ଦ୍ର ଦାମୋଦର ଦାସ ମୋଦି ଓ ବଂଗଳାଦେଶର ପ୍ରଧାନମନ୍ତ୍ରୀ ଶେଖ୍ ହସିନା ଏକ ଦ୍ୱିପାକ୍ଷିକ ଆଲୋଚନା ମାଧ୍ୟମରେ ସ୍ଥାୟୀ ସମାଧାନର ପନ୍ଥା ନିରୂପଣ ନ କଲେ ଆଗାମୀ ଦିନରେ ଆମ ଦେଶ ପାଇଁ ଏହା ଅସମ୍ଭାଳ ପରିସ୍ଥିତି ସୃଷ୍ଟି କରିବ ।

*ସମାଜ, ୨୬.୧୦.୨୦୧୪*

# ବିକାଶ ପାଇଁ ଏନ୍.ଜି.ଓ.ମାନଙ୍କ ଭୂମିକା

ନରେନ୍ଦ୍ର ମୋଦି ଦେଶର ପ୍ରଧାନମନ୍ତ୍ରୀ ଭାବେ ୨୬ ମେ' ୨୦୧୪ରେ ଶପଥ ଗ୍ରହଣ କରିବାର ମାତ୍ର ଏକ ସପ୍ତାହ ପରେ କେନ୍ଦ୍ର ସରକାରଙ୍କର ଗୁଇନ୍ଦା ବିଭାଗର ଯୁଗ୍ମ ନିର୍ଦ୍ଦେଶକ ଏସ୍. ଏ. ରିଜ୍‌ଭି ପ୍ରଧାନମନ୍ତ୍ରୀଙ୍କ ଦପ୍ତରକୁ କେତେକ ବିଦେଶୀ ଅନୁଦାନପ୍ରାପ୍ତ ଏନ୍.ଜି.ଓ.ଙ୍କ ସମ୍ବନ୍ଧରେ ୨୧ପୃଷ୍ଠାବିଶିଷ୍ଟ ଏକ ରିପୋର୍ଟ ପଠାଇ ସେଥିରେ ଉଲ୍ଲେଖ କରିଛନ୍ତି ଯେ, ଏହି ଏନ୍.ଜି.ଓ.ମାନେ ଦେଶର ବିକାଶ ବିରୋଧୀ କାର୍ଯ୍ୟରେ ଲିପ୍ତ ଅଛନ୍ତି । ଏହି ରିପୋର୍ଟ ସାର୍ବଜନୀନ ହେବାପରେ ଦେଶରେ ହଇଚଇ ସୃଷ୍ଟି ହୋଇଛି । ଏହି ରିପୋର୍ଟରେ ୪୧ ଜଣ ବିଶିଷ୍ଟ ବ୍ୟକ୍ତି ଓ ୭୯ଟି ସଂଗଠନର ନାମ ମଧ୍ୟ ଉଲ୍ଲେଖ କରାଯାଇଛି । ଏହି ବ୍ୟକ୍ତିମାନଙ୍କ ଭିତରେ ନାରାୟଣ ଦେଶାଇ, ଏସ୍. ପି. ଉଦୟକୁମାର, ଫାଦର ଆମ୍ବ୍ରୁ ଏସ୍., ଫାଦର ଥମାସ୍ କୋଚେରି, ଫାଦର ଜୟକୁମାର, ପ୍ରଫୁଲ୍ଲ ବିଦ୍ୱାଇ, ଆଡ଼ମିରାଲ୍ ରାମଦାସ, ଦେବଶାୟମ୍, ମେଧା ପାଟକର, ବନ୍ଦନା ଶିବା, ପ୍ରଶାନ୍ତ ଭୂଷଣ, ସ୍ୱାମୀ ଅଗ୍ନିବେଶ ପ୍ରଭୃତି ଅତ୍ୟନ୍ତ ମାନ୍ୟଗଣ୍ୟ ବ୍ୟକ୍ତିଙ୍କର ନାମ ରହିଛି । ଅନୁଷ୍ଠାନଗୁଡ଼ିକ ଭିତରେ ନ୍ୟାସନାଲ୍ ଆଲିଆନ୍ସ ଅଫ୍ ଆଣ୍ଟି ନ୍ୟୁକ୍ଲିଅର ମୁଭ୍‌ମେଣ୍ଟ, ଦି ପିପୁଲ୍ସ ମୁଭ୍‌ମେଣ୍ଟ ଏଗେନ୍‌ଷ୍ଟ ନ୍ୟୁକ୍ଲିଅର ଏନର୍ଜି, ଟୁଟିକୋରିନ୍ ଡାଓସେସିଆନ୍ ଆସୋସିଏସନ୍, ପିପୁଲ୍ସ ଏଡୁକେଶନ ଆଣ୍ଡ ଆକ୍ସନ୍ ଫର ଲିବରେସନ୍, ଗ୍ରୀନ୍‌ପିସ୍, ଇନ୍‌ସାଫ୍, ଗାନ୍ଧିଆନ୍ ୟୁନିଟ୍ ଫର୍ ଇଣ୍ଟିଗ୍ରେଟେଡ୍ ଡେଭେଲପମେଣ୍ଟ ଆଣ୍ଡ ଏଡୁକେଶନ୍, ଫ୍ରେଣ୍ଡସ୍ ଆସୋସିଏସନ୍ ଫର୍ ରୁରାଲ୍ ରିକନ୍‌ଷ୍ଟ୍ରକ୍ସନ୍, ଗ୍ରାମବିକାଶ, ଆମନେଷ୍ଟି ଇଣ୍ଟରନେସନାଲ୍, ପୋସ୍କୋ ପ୍ରତିରୋଧ ସମିତି, ଆମ୍ ଆଦ୍‌ମୀ ପାର୍ଟି, ବ୍ରେଡ୍ ଫର୍ ୱାର୍ଲଡ ପ୍ରଭୃତି ଅନ୍ତର୍ଭୁକ୍ତ ।

ଭାରତ ଭଳି ଏକ ବିଶାଳ ଜନସଂଖ୍ୟା ବିଶିଷ୍ଟ ଗଣତାନ୍ତ୍ରିକ ରାଷ୍ଟ୍ରରେ ସମସ୍ତ ଜନମଙ୍ଗଳ କାର୍ଯ୍ୟ କରିବା କେବଳ ସରକାରଙ୍କ ଦ୍ୱାରା ସମ୍ଭବ ନୁହେଁ । ତେଣୁ ସ୍ୱାଧୀନତା ପ୍ରାପ୍ତି ପରେ ପ୍ରତିରକ୍ଷା, ଆଭ୍ୟନ୍ତରୀଣ ସୁରକ୍ଷା, ବୈଦେଶିକ ବ୍ୟାପାର ଇତ୍ୟାଦି କେତେକ ବିଭାଗ ବ୍ୟତୀତ ଅନ୍ୟାନ୍ୟ କାର୍ଯ୍ୟରେ ବେସରକାରୀ ସଂସ୍ଥାର ସହାୟତା ଓ ଭାଗୀଦାରିକୁ ସ୍ୱାଗତ କରାହୋଇଆସିଅଛି । ବେସରକାରୀ ସଂସ୍ଥାଗୁଡ଼ିକ ସରକାରୀ ଯୋଜନାକୁ ଲୋକମାନଙ୍କ ପାଖରେ ପହଞ୍ଚାଇବା ପାଇଁ ସରକାର ଉତ୍ସାହିତ କରିଥାନ୍ତି ।

ଏନ୍.ଜି.ଓ.ମାନେ ସାଧାରଣତଃ ଶିକ୍ଷା, ସ୍ୱାସ୍ଥ୍ୟ, ଶିଶୁ ଓ ମହିଳାମାନଙ୍କ ବିକାଶ କାର୍ଯ୍ୟକ୍ରମରେ ନିଜକୁ ନିୟୋଜିତ କରିଥାନ୍ତି ।

ମାନ୍ୟବର ସୁପ୍ରିମ୍‌କୋର୍ଟଙ୍କ ନିର୍ଦ୍ଦେଶରେ ସି.ବି.ଆଇ. ଦାଖଲ କରିଥିବା ଏକ ତଥ୍ୟରୁ ଜଣାପଡ଼ିଛି ଯେ ଆମ ଦେଶରେ ଅନ୍ୟୂନ କୋଡ଼ିଏ ଲକ୍ଷ ବେସରକାରୀ ସଂଗଠନ କାର୍ଯ୍ୟରତ ଅଛନ୍ତି । ସି.ବି.ଆଇ. ଦେଶର ସମସ୍ତ ରାଜ୍ୟ ଓ କେନ୍ଦ୍ରଶାସିତ ଅଞ୍ଚଳରେ କାର୍ଯ୍ୟ କରୁଥିବା ଏନ୍.ଜି.ଓ.ମାନଙ୍କର ତାଲିକା ସେଠିକାର ରାଜ୍ୟ ସରକାରମାନଙ୍କୁ ମାଗିଥିଲେ; କିନ୍ତୁ ଆନ୍ଧ୍ରପ୍ରଦେଶ, ବିହାର, ଦିଲ୍ଲୀ, ହରିୟାନା, କର୍ଣ୍ଣାଟକ, ରାଜସ୍ଥାନ, ପଶ୍ଚିମବଂଗ, ଓଡ଼ିଶା, ତାମିଲନାଡୁ, ଛତିଶଗଡ଼ ଓ ହିମାଚଳପ୍ରଦେଶ ସି.ବି.ଆଇ.କୁ କୌଣସି ତଥ୍ୟ ପ୍ରଦାନ କରିନଥିଲେ । ଉପରୋକ୍ତ ୧୧ଟି ରାଜ୍ୟ ବ୍ୟତୀତ ଅନ୍ୟ ରାଜ୍ୟଗୁଡ଼ିକରେ ୧୩ ଲକ୍ଷ ଏନ୍.ଜି.ଓ. ଥିବାର ହିସାବ ପାଇବା ପରେ ସି.ବି.ଆଇ. ସୁପ୍ରିମ୍‌କୋର୍ଟରେ ସମଗ୍ର ଦେଶରେ ଆନୁମାନିକ ୨୦ ଲକ୍ଷ ଏନ୍.ଜି.ଓ. କାର୍ଯ୍ୟ କରୁଥିବାର ତଥ୍ୟ ପ୍ରଦାନ କରିଛନ୍ତି । ଏକ ବେସରକାରୀ ହିସାବରୁ ଜଣାଯାଏ ଯେ ଦେଶରେ ବର୍ତ୍ତମାନ ତିନି ଲକ୍ଷରୁ ଅଧିକ ଯୁବକସଂଘ ଓ ମହିଳାମଣ୍ଡଳ, ଧାର୍ମିକ ଅନୁଷ୍ଠାନ, ଆଧାତ୍ମିକ ସଂସ୍ଥା, ଜନକଲ୍ୟାଣ ଓ ସେବା ଅନୁଷ୍ଠାନ ଇତ୍ୟାଦି କାର୍ଯ୍ୟରତ ଅଛନ୍ତି । ବିଦେଶୀ ଅନୁଦାନ ପାଉଥିବା ପଂଜିକୃତ ସଂସ୍ଥା ମଧ୍ୟରୁ ଅଧିକାଂଶ ଧାର୍ମିକ ଅନୁଷ୍ଠାନ । 'ଚ୍ୟାରିଟି ଏଡ୍ ଫାଉଣ୍ଡେସନ୍'ଙ୍କ ହିସାବ ଅନୁସାରେ, ଭାରତରେ ପ୍ରାୟ ୩୦ ହଜାର ସ୍ୱେଚ୍ଛାସେବୀ ସଂସ୍ଥା ଅତ୍ୟନ୍ତ ସକ୍ରିୟ । ସେମାନଙ୍କ ମଧ୍ୟରୁ ଶତକଡ଼ା ୮୦ ଭାଗ ହେଉଛନ୍ତି ଛୋଟ ଛୋଟ ଅନୁଷ୍ଠାନ । ଏହି ଅନୁଷ୍ଠାନଗୁଡ଼ିକର କର୍ମଚାରୀ ସଂଖ୍ୟା ପାଞ୍ଚ ଜଣ ମଧ୍ୟରେ ସୀମିତ ଏବଂ ବାର୍ଷିକ ବଜେଟ୍ ୫୦ ହଜାରରୁ ପାଞ୍ଚ ଲକ୍ଷ ଟଙ୍କା ଭିତରେ । ଏସିଆ ମାନବାଧିକାର କେନ୍ଦ୍ର (ଏସିଆନ୍ ସେଣ୍ଟର ଫର୍ ହ୍ୟୁମାନ୍ ରାଇଟ୍ସ) ସୂଚନା ଅଧିକାର ଆଇନ୍ ଦ୍ୱାରା ପାଇଥିବା ତଥ୍ୟ ଅନୁଯାୟୀ, କେନ୍ଦ୍ର ଓ ରାଜ୍ୟ ସରକାର ୨୦୦୨ରୁ ୨୦୦୯ ମଧ୍ୟରେ ଏନ୍.ଜି.ଓ.ମାନଙ୍କୁ ୬,୬୫୪ କୋଟି ଟଙ୍କା ଅନୁଦାନରୂପେ ପ୍ରଦାନ କରିଥିଲେ । ୨୦୧୦-୧୧ ଆର୍ଥିକ ବର୍ଷରେ ୨୨ଶହ ଏନ୍.ଜି.ଓ. ୨୦୦ କୋଟିରୁ ଅଧିକ ଟଙ୍କା ବିଦେଶରୁ ଆର୍ଥିକ ସାହାଯ୍ୟ ପାଇଛନ୍ତି ବୋଲି ଜଣାଯାଏ । କିନ୍ତୁ ପରିତାପର ବିଷୟ ଯେ ସାରା ଦେଶରେ ବହୁ ଏନ୍.ଜି.ଓ. ସେମାନଙ୍କର ବାର୍ଷିକ ଖର୍ଚ୍ଚ ସମ୍ବନ୍ଧରେ ଠିକ୍ ବିବରଣୀ ସରକାରଙ୍କୁ ପ୍ରଦାନ କରୁନାହାନ୍ତି ଏବଂ କେତେକ କ୍ଷେତ୍ରରେ ପାଉଥିବା ଅନୁଦାନ ରାଶିକୁ ନିଜର ଇଚ୍ଛା ମୁତାବକ ଖର୍ଚ୍ଚ କରୁଛନ୍ତି । ଏପରିକି ଆନ୍ନା ହଜାରେଙ୍କ ଦ୍ୱାରା ପ୍ରତିଷ୍ଠିତ ଏନ୍.ଜି.ଓ. 'ହିନ୍ଦ୍ ସ୍ୱରାଜ୍

ଟ୍ରଷ୍ଟ'ର ପାଣ୍ଠିର ଅପବ୍ୟବହାର କରାଯାଇଥିବା ନେଇ ଏମ୍.ଏଲ୍. ଶର୍ମା ନାମକ ଜଣେ ଆଇନଜୀବୀ ଗତବର୍ଷ ସୁପ୍ରିମ୍‌କୋର୍ଟରେ ଏକ ଜନସ୍ୱାର୍ଥ ମାମଲା ଦାୟର କରିଥିଲେ। ଅନୁସନ୍ଧାନରୁ ଜଣାପଡ଼ିଲା ଯେ ତିନୋଟି ଗ୍ରାମର ଜଳବିଭାଜିକାର ଉନ୍ନତି ପାଇଁ 'କାପାର୍ଟ' ଦେଇଥିବା ଏକଲକ୍ଷ ଟଙ୍କାକୁ ଆନ୍ନା ହଜାରେଙ୍କ ଟ୍ରଷ୍ଟ ତା'ର ୯୦ ପ୍ରତିଶତ ଅର୍ଥ ଦରମା, ଗସ୍ତଖର୍ଚ୍ଚ, ଛାପାଖର୍ଚ୍ଚ ଇତ୍ୟାଦିରେ ଖର୍ଚ୍ଚ କରିଛନ୍ତି। ଯେଉଁ ଉଦ୍ଦେଶ୍ୟରେ ଅନୁଦାନ ଦିଆଯାଇଥିଲା ଏହା ତାହାର ଖିଲାପ କରୁଛି। ଅଳ୍ପ କିଛିଦିନ ତଳେ କେନ୍ଦ୍ର ସରକାରଙ୍କ ସ୍ୱରାଷ୍ଟ୍ର ବିଭାଗର ବିଦେଶୀ ମୁଦ୍ରା ନିୟନ୍ତ୍ରଣ ଆଇନ୍ (ଏଫ୍.ସି.ଆର୍.ଏ.) ଶାଖା ଓଡ଼ିଶାର ୬୪୩ଟି ସ୍ୱେଚ୍ଛାସେବୀ ସଂଗଠନକୁ ସେମାନେ ବିଦେଶରୁ ପାଇଥିବା ଅର୍ଥ ଉପଯୋଗ ବିଷୟରେ କୌଣସି ତଥ୍ୟ ଜଣାଇନଥିବାରୁ ଏହା ୨୦୧୦ର ଧାରା ୨୮ ଏବଂ ନିୟମ ୧୭(୧) ୨୦୧୧ ଅନୁଯାୟୀ ସେମାନଙ୍କର ପଂଜିକରଣକୁ କାହିଁକି ଅବୈଧ ଘୋଷଣା କରାନଯିବ ସେଥିପାଇଁ ନୋଟିସ୍ ଜାରି କରିଛନ୍ତି। ଏକଥା ସତ୍ୟ ଯେ କେତେକ ଏନ୍.ଜି.ଓ. ଲୋକଙ୍କ ମଙ୍ଗଳ ପାଇଁ ଆସୁଥିବା ଅନୁଦାନକୁ ହେରଫେର୍ କରି ନିଜର ଓ ନିଜ ଅନୁଷ୍ଠାନକୁ ପରିପୁଷ୍ଟ କରୁଛନ୍ତି।

ଓଡ଼ିଶାର ବହୁ ଏନ୍.ଜି.ଓ. ନିଜ କର୍ତ୍ତବ୍ୟରେ ଅହେତୁକ ଅବହେଳା କରୁଥିବା ଆଦିବାସୀ ଅଧ୍ୟୁଷିତ ବିଶେଷକରି କେ.ବି.କେ. ଅଞ୍ଚଳରେ ସେମାନଙ୍କର ନିମ୍ନମାନର କାର୍ଯ୍ୟ ଦେଖିଲେ ଜଣାପଡ଼େ। ଦୁଇବର୍ଷ ତଳେ ଓଡ଼ିଶା ସରକାର ଏହିଭଳି କେତେକ ଏନ୍.ଜି.ଓ.ଙ୍କ ବିରୋଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିଥିଲେ ମଧ ଏହା ଏନ୍.ଜି.ଓ.ମାନଙ୍କ ଉପରେ ବିଶେଷ ପ୍ରଭାବ ପକାଇ ପାରିନାହିଁ। ଏବେ ୨୭ ମେ' ୨୦୧୪ରେ ପୁନର୍ବାର ଓଡ଼ିଶା ସରକାରଙ୍କ ଯୋଜନା ଓ ସମନ୍ୱୟ ବିଭାଗର ଅତିରିକ୍ତ ସଚିବ ରାଜ୍ୟର ୩୧୪ଟି ଏନ୍.ଜି.ଓ.କୁ କଳାତାଲିକାଭୁକ୍ତ କରିଛନ୍ତି। କିନ୍ତୁ ସରକାର ସମସ୍ତ ଏନ୍.ଜି.ଓ.ଙ୍କୁ ଗୋଟିଏ ନିକିତିରେ ତଉଲିବା ଉଚିତ ନୁହେଁ। ଏନ୍.ଜି.ଓ. ଗୁଡ଼ିକରେ ବହୁ ଯୁବକଯୁବତୀ ନିଯୁକ୍ତି ପାଇଛନ୍ତି ଏବଂ ଆମ ଦେଶର ଶିକ୍ଷା, ସ୍ୱାସ୍ଥ୍ୟ, ପରିବେଶ ସୁରକ୍ଷା, ଶିଶୁ ଓ ମହିଳା କଲ୍ୟାଣ କ୍ଷେତ୍ରରେ ଏହି ସଂସ୍ଥାଗୁଡ଼ିକ ଉଲ୍ଲେଖନୀୟ କାର୍ଯ୍ୟ କରିଛନ୍ତି। ଯେଉଁସବୁ ନିପଟ ମଫସଲ ଅଞ୍ଚଳରେ ସରକାରୀ ବ୍ୟବସ୍ଥା ଅପହଞ୍ଚ, ସେଠାରେ ଏନ୍.ଜି.ଓ.ମାନେ କାର୍ଯ୍ୟରତ ଅଛନ୍ତି। ୨୦୦୭ ମସିହାରେ ଭଲ୍ୟୁଣ୍ଟାରୀ ସେକ୍ଟର ପାଇଁ ଏକ ରାଷ୍ଟ୍ରୀୟ ନୀତି ପ୍ରଣୟନ କରାଯାଇଛି। ଦେଶର ସାମାଜିକ, ଆର୍ଥିକ ପ୍ରଗତିରେ ସ୍ୱେଚ୍ଛାସେବୀ ସଂସ୍ଥାଗୁଡ଼ିକର ଅମୂଲ୍ୟ ଅବଦାନକୁ ସ୍ୱୀକାର କରାଯାଇଛି। ଓଡ଼ିଶାରେ ପ୍ରାକୃତିକ ସଂପଦର ସୁରକ୍ଷା, ଜୀବନ ଜୀବିକାର ସୁରକ୍ଷା,

ବିସ୍ଥାପନ ବିରୋଧୀ ସଂଗ୍ରାମ ଓ ଲୋକାଭିମୁଖୀ ଶାସନ ପ୍ରତିଷ୍ଠା ପାଇଁ ସ୍ୱେଚ୍ଛାସେବୀ ସଂଗଠନମାନେ କାର୍ଯ୍ୟରତ ଅଛନ୍ତି ।

ଭାରତର ପୂର୍ବତନ ରାଷ୍ଟ୍ରପତି ଡକ୍ଟର ଏ.ପି.ଜେ. ଅବଦୁଲ କଲାମ 'ଇଣ୍ଡିଆ-୨୦୨୦–ଏ ଭିଜନ୍ ଫର୍ ଦି ନିଉ ମିଲେନିୟମ୍' ପୁସ୍ତକରେ ମାନବ ସମ୍ବଳ ବିକାଶରେ ଘରୋଇ ସଂସ୍ଥା ଏବଂ ସ୍ୱେଚ୍ଛାସେବୀ ସଂଗଠନମାନଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି ବୋଲି ଅବତାରଣା କରିଛନ୍ତି । (ପୃଷ୍ଠା-୧୭୨-୧୮୦)

ଏନ୍.ଜି.ଓ.ମାନଙ୍କର ବହୁ ଦୁର୍ବଳତା ସତ୍ତ୍ୱେ ସେମାନଙ୍କର ସେବା ଯେ ଆମ ଦେଶ ପାଇଁ ଅପରିହାର୍ଯ୍ୟ ଏହା କହିଲେ ଭୁଲ୍ ହେବନାହିଁ । ଆମ ଦେଶ ଓ ରାଜ୍ୟର ଅଳ୍ପ କେତୋଟି ଏନ୍.ଜି.ଓ.ଙ୍କର ଉଦାହରଣ ଦେଲେ ସମସ୍ତେ ଜାଣିପାରିବେ ଯେ ସେମାନେ କିଭଳି ଦେଶର ବିକାଶରେ ନିଜକୁ ନିଷ୍ଠାର ସହିତ ନିୟୋଜିତ କରିଛନ୍ତି । ବିଜୟ ମହାଜନ ଓ ଦୀପ୍ ଜୋଷୀଙ୍କ ଦ୍ୱାରା ପ୍ରତିଷ୍ଠିତ ଅନୁଷ୍ଠାନ 'ପ୍ରଦାନ' (ପ୍ରଫେସନାଲ୍ ଆସିଷ୍ଟାନ୍ସ ଫର୍ ଡେଭେଲପମେଣ୍ଟ ଆକ୍ସନ୍), ଡକ୍ଟର ମନୁଭାଇ ଦେଶାଇଙ୍କ ଦ୍ୱାରା ପ୍ରତିଷ୍ଠିତ 'ବି.ଏ.ଆଇ.ଏଫ୍' (ଭାରତୀୟ ଆଗ୍ରୋ ଇଣ୍ଡଷ୍ଟ୍ରି ଫେଡେରେସନ୍), ଇଲ୍ଲା ଭଟ୍ଟଙ୍କ ଦ୍ୱାରା ପ୍ରତିଷ୍ଠିତ ସଂସ୍ଥା 'ସେବା', ମ୍ୟାରୀ ନର୍ଥମାନ ହଜାରେଙ୍କ ଦ୍ୱାରା ପ୍ରତିଷ୍ଠିତ 'ସ୍ମାଇଲ୍ ଫାଉଣ୍ଡେସନ୍' ଏବଂ ଏ ବର୍ଷର ନୋବେଲ ଶାନ୍ତି ପୁରସ୍କାରପ୍ରାପ୍ତ କୈଳାସ ସତ୍ୟାର୍ଥୀଙ୍କ ଦ୍ୱାରା ପ୍ରତିଷ୍ଠିତ 'ବଚପନ ବଚାଓ ଆନ୍ଦୋଳନ' ଆଦି ଏହାର ଉଦାହରଣ । ସେହିପରି ଓଡ଼ିଶାରେ 'ସି.ୱାଇ.ଏସ୍.ଡି.' (ସେଣ୍ଟର ଫର୍ ୟୁଥ୍ ଆଣ୍ଡ ସୋସିଆଲ୍ ଡେଭେଲପମେଣ୍ଟ), କଟକର 'ନ୍ୟାସନାଲ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ହେଲ୍‌ଥ ଆଣ୍ଡ ରୁରାଲ୍ ଡେଭେଲପମେଣ୍ଟ', କଳାହାଣ୍ଡିର 'ରାମକୃଷ୍ଣ ଆଶ୍ରମ', ଭୁବନେଶ୍ୱରର 'ଜୀବନରେଖା ପରିଷଦ', 'ଆଶା', 'ମା'ଘର' ଓ 'ସ୍ୱର୍ଗ', ନୟାଗଡ଼ର 'ସମ୍ଭବ', କୋରାପୁଟର 'ଶୋଭା', କଳାହାଣ୍ଡିର 'ମଦତ' ପ୍ରଭୃତି ନାମ ଏ ପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ ।

ଗୁଇନ୍ଦା ବିଭାଗର ଯୁଗ୍ମ ନିର୍ଦ୍ଦେଶକ ଏସ୍.ଏ. ରିଜ୍‌ଭି ଦେଇଥିବା ତଥ୍ୟରେ ମଧ୍ୟ ଗୁରୁତର ତ୍ରୁଟି ରହିଛି । ସେଥିରେ ବନୱାରିଲାଲ ଶର୍ମା ନାମକ ଜଣେ ବ୍ୟକ୍ତିଙ୍କର ନାମ ଉଲ୍ଲେଖ ରହିଛି, ଯାହାଙ୍କର ମୃତ୍ୟୁ ୨୬ ସେପ୍ଟେମ୍ବର ୨୦୧୨ରେ ହୋଇଥିଲା । ତେଣୁ ରିଜ୍‌ଭି ତାଙ୍କ ତଥ୍ୟର ପୁନଃସମୀକ୍ଷା କରିବା ଦରକାର କିମ୍ବା ବର୍ତ୍ତମାନ ପ୍ରଧାନମନ୍ତ୍ରୀଙ୍କ ଦପ୍ତରରେ କାର୍ଯ୍ୟରତ ଗୋଇନ୍ଦାବିଭାଗର ଅବସରପ୍ରାପ୍ତ ପୋଲିସ ମହାନିର୍ଦ୍ଦେଶକ ଅଜିତ ଡୋଭାଲ ଏହି ରିପୋର୍ଟର ପୁଙ୍ଖାନୁପୁଙ୍ଖ ତଦନ୍ତ କରିବା ଉଚିତ ।

*ସମୟ, ୧୦.୧୧.୨୦୧୪*

# କଳାଟଙ୍କା ନିଶ୍ଚିତ ଫେରିବ

ନଭେମ୍ବର ୨ ଆକାଶବାଣୀରେ ପ୍ରସାରିତ 'ମନ୍ କୀ ବାତ୍' କାର୍ଯ୍ୟକ୍ରମରେ ପ୍ରଧାନମନ୍ତ୍ରୀ ନରେନ୍ଦ୍ର ମୋଦି ବିଦେଶରେ ଗଚ୍ଛିତ ସବୁ କଳାଟଙ୍କା ଦେଶକୁ ନିଶ୍ଚୟ ଫେରାଇ ଅଣାଯିବା ନେଇ ଦେଶବାସୀଙ୍କୁ ନିର୍ଭର ପ୍ରତିଶ୍ରୁତି ଦେଇଛନ୍ତି । ନଭେମ୍ବର ୯ ତାରିଖ ଦିନ ମଧ୍ୟ ଭୁବନେଶ୍ୱରଠାରେ ଏକ ସାମ୍ବାଦିକ ସମ୍ମିଳନୀରେ ବିଜେପି ବରିଷ୍ଠ ନେତା ଓ ସାଂସଦ ସୁବ୍ରମଣ୍ୟମ୍ ସ୍ୱାମୀ ଦୃଢ଼ୋକ୍ତି ପ୍ରକାଶ କରିଛନ୍ତି ଯେ ବିଶ୍ୱର ସତୁରୀଟି ଦେଶର ବିଭିନ୍ନ ବ୍ୟାଙ୍କରେ ଭାରତୀୟମାନଙ୍କର ଯେଉଁ ୧ ୨ ୦ ଲକ୍ଷ କୋଟି କଳାଟଙ୍କା ଗଚ୍ଛିତ ରହିଛି, ତାହା ମୋଦି ସରକାର ଆଗାମୀ ଏକବର୍ଷ ମଧ୍ୟରେ ଆମ ଦେଶକୁ ଫେରାଇ ଆଣିବାକୁ ସକ୍ଷମ ହେବେ । ଯଦି ଆମେରିକା ସରକାର ସୁଇସ୍ ବ୍ୟାଙ୍କଗୁଡ଼ିକରୁ କଳାଧନ ଠୁଳକାରୀଙ୍କ ତାଲିକା ପାଇବା ପରେ କାଳବିଳମ୍ବ ନକରି ନିଜ ଦେଶକୁ କଳାଟଙ୍କା ଫେରାଇ ନେଇପାରିଲେ, ଭାରତ ମଧ୍ୟ ସେହିପରି ନିଜ ଦେଶର ଲୋକମାନେ ବିଦେଶରେ ଜମା କରିଥିବା ଅର୍ଥ ଫେରାଇ ଆଣିବାକୁ ସମର୍ଥ ହେବେ ନାହିଁ କାହିଁକି ? ଏଥିଲାଗି ପ୍ରୟୋଜନ ସରକାରଙ୍କର ଦୃଢ଼ ଇଚ୍ଛାଶକ୍ତି, ଯାହାକି ମୋଦିଙ୍କଠାରେ ଅଭାବ ନାହିଁ । ୨୦୦୮ ମସିହାରେ ଜର୍ମାନ ସରକାରଙ୍କ ପାଖରେ ଲିସେନ୍‌ଷ୍ଟିନ୍‌ର ଏଲ୍‌ଜିଟି ବ୍ୟାଙ୍କରେ କଳାଧନ ଜମା ରଖିଥିବା ପ୍ରାୟ ୧୪ଶହ ଜମାକାରୀଙ୍କର ଟିକିନିଖି ବିବରଣୀ ଥିଲା । ସେମାନଙ୍କର ଜାତୀୟତା ଜାଣିବା ପରେ ଜର୍ମାନ୍ ସରକାର ଆମ ଦେଶର ତତ୍କାଳୀନ ଉପା ସରକାରଙ୍କୁ ମଧ୍ୟ ଚିଠି ଲେଖି ତାହାର ସୂଚନା ପ୍ରଦାନ କରିଥିଲେ । କିନ୍ତୁ କଂଗ୍ରେସ ନେତୃତ୍ୱାଧୀନ ଉପା ସରକାର ଜର୍ମାନୀ ଚିଠି ଉପରେ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ କଲେନାହିଁ । ଟ୍ରାନ୍ସପାରେନ୍ସି ଇଣ୍ଟରନେଶନାଲ ଓ ଗଣମାଧ୍ୟମର ଚାପର ସମ୍ମୁଖୀନ ହେବାରୁ ବହୁ ବିଳମ୍ବରେ ଭାରତ ସରକାର ଜର୍ମାନୀଠାରୁ ତାଲିକା ସଂଗ୍ରହ କଲେ । କଂଗ୍ରେସ ନେତୃତ୍ୱାଧୀନ ଦୁଇ ଦୁଇଟି ସରକାର ବିଦେଶରୁ କଳାଧନ ଫେରାଇ ଆଣିବା ପାଇଁ ସାମାନ୍ୟତମ ଉଦ୍ୟମ କଲେନାହିଁ । ବରଂ ଏହି କଳାଟଙ୍କାକୁ ଫେରାଇ ଆଣିବା ଦାବିନେଇ ଦିଲ୍ଲୀର ରାମଲୀଳା ମୈଦାନଠାରେ ଲକ୍ଷାଧିକ ଭକ୍ତଙ୍କ ଗହଣରେ ଅନଶନରତ ଓ ପୂଜ୍ୟ ବାବା ରାମଦେବଙ୍କ

ଶିବିରରେ ରାତିଅଧିଆ ଆକ୍ରମଣ କରାଗଲା; ଏପରିକି ପୋଲିସ ପକ୍ଷରୁ ଭକ୍ତମାନଙ୍କ ତମ୍ବୁରେ ନିଆଁ ମଧ ଲଗାଇ ଦିଆଗଲା।

ବରିଷ୍ଠ ଆଇନଜୀବୀ ରାମ ଜେଠାମାଲାନୀ ଓ ଅନ୍ୟ ପାଂଚଜଣ ସୁପ୍ରିମକୋର୍ଟରେ ୧୫ ମାର୍ଚ୍ଚ ୨୦୦୯ରେ ଏକ ଜନସ୍ୱାର୍ଥ ମାମଲା ଦାୟର କରି ବିଦେଶୀ ବ୍ୟାଙ୍କରେ ଗଚ୍ଛିତ ଭାରତୀୟଙ୍କର ୭୦ ଲକ୍ଷ କୋଟି ଟଙ୍କାର କଳାଧନକୁ ଫେରାଇ ଆଣିବା ପାଇଁ ଅନୁରୋଧ କଲେ। ଏହି ମାମଲାର ଶୁଣାଣିବେଳେ ୧୭ ଜୁନ୍ ୨୦୧୦ରେ ମାନ୍ୟବର ସୁପ୍ରିମକୋର୍ଟ ବିଦେଶରେ ଥିବା କଳାଧନକୁ ଫେରାଇ ଆଣିବାପାଇଁ କେନ୍ଦ୍ର ସରକାରଙ୍କୁ ନିର୍ଦ୍ଦେଶ ଦେଲେ। ୨୦୧୧ ମସିହା ଜୁଲାଇ ୪ ତାରିଖରେ ସୁପ୍ରିମକୋର୍ଟ ପୁନର୍ବାର ବିଚାର କରି କଳାଧନ ସଂପର୍କରେ ତୁରନ୍ତ ପଦକ୍ଷେପ ନେବାପାଇଁ ଏକ ସ୍ୱତନ୍ତ୍ର ଟିମ୍ ଗଠନ କରିବାକୁ କେନ୍ଦ୍ର ସରକାରଙ୍କୁ ପରାମର୍ଶ ଦେଲେ। କିନ୍ତୁ ଉପା ସରକାର ବିଭିନ୍ନ ଆଳରେ ସୁପ୍ରିମକୋର୍ଟର ନିର୍ଦ୍ଦେଶ ପାଳନ କରିନଥିଲେ। ସେହିଦିନଠାରୁ ବାରମ୍ବାର ସୁପ୍ରିମକୋର୍ଟ କଳାଧନକୁ ଫେରାଇ ଆଣିବା ପାଇଁ ସରକାରଙ୍କୁ ବିଭିନ୍ନ ସମୟରେ ନିର୍ଦ୍ଦେଶ ଦେଇଥିଲେ ମଧ ୨୮ ଅକ୍ଟୋବର ୨୦୧୪ରେ ସୁପ୍ରିମକୋର୍ଟଙ୍କ କଡ଼ା ଆଭିମୁଖ୍ୟ ଯୋଗୁଁ ୨୯ ଅକ୍ଟୋବର ଦିନ ବର୍ତ୍ତମାନର ସରକାର ୬୨୭ ଜଣ ଭାରତୀୟଙ୍କ ତାଲିକା ସୁପ୍ରିମକୋର୍ଟରେ ଦାଖଲ କଲେ, ଯାହାକୁ କୋର୍ଟ ସ୍ପେଶାଲ ଇନ୍‌ଭେଷ୍ଟିଗେସନ ଟିମ୍‌କୁ ହସ୍ତାନ୍ତର କରି ୨୦୧୫ ମାର୍ଚ୍ଚ ସୁଦ୍ଧା ରିପୋର୍ଟ ଦେବାକୁ କହିଛନ୍ତି। ସୁବ୍ରମଣ୍ୟମ୍ ସ୍ୱାମୀଙ୍କର ଅନୁମାନ ଠିକ୍ ହେଲେ ୨୦୧୫ ଶେଷ ସୁଦ୍ଧା ବିଦେଶରେ ଥିବା କଳାଟଙ୍କା ଫେରିଆସିବ, ଯାହାକି ଦେଶର ଅର୍ଥନୀତିକୁ ଅଭୂତପୂର୍ବ ଶକ୍ତି ପ୍ରଦାନ କରିବ।

ଦେଶର ସାଧାରଣ ନାଗରିକ ଓ ବୁଦ୍ଧିଜୀବୀମାନଙ୍କର ଏକାନ୍ତ ଇଚ୍ଛା ଏହିକି ଯେ ବିଦେଶରେ ରହିଥିବା କଳାଧନ ସ୍ୱଦେଶକୁ ଫେରାଇ ଆଣିବାକୁ ଉଦ୍ୟମ କରିବା ସଙ୍ଗେ ସଙ୍ଗେ ଦେଶ ଭିତରେ ଲୁକ୍‌କାୟିତ ଭାବେ ରହିଥିବା କଳାଟଙ୍କାକୁ ମଧ ଜବତ କରିବାକୁ କେନ୍ଦ୍ର ସରକାର ଉପଯୁକ୍ତ ପଦକ୍ଷେପ ଗ୍ରହଣ କରିବା ଉଚିତ। ଅର୍ଥନୀତିଜ୍ଞମାନଙ୍କର କହିବା ଅନୁଯାୟୀ ୨୦୦୭-୦୮ରେ ଆମ ଜାତୀୟ ଆୟର ୨୦ ପ୍ରତିଶତ କଳାଟଙ୍କା ଆକାରରେ ଲୁକ୍‌କାୟିତ ଅଛି। ଯାହାର ପରିମାଣ ୮,୫୯,୪୦୩ କୋଟି ଟଙ୍କା। ଦେଶରେ କଳାଟଙ୍କାକୁ ଜବତ କରିବାକୁ ସେଣ୍ଟ୍ରାଲ ବୋର୍ଡ ଅଫ୍ ଡାଇରେକ୍ଟ ଟ୍ୟାକ୍ସେସକୁ ଅମାପ କ୍ଷମତା ଦିଆଯାଇଛି। ଆୟକର ବିଭାଗର

ମହାନିର୍ଦ୍ଦେଶକ (ଇଣ୍ଟରନ୍ୟାଶନାଲ ଟ୍ୟାକ୍ସେସନ) ଗତ ୫୦ ବର୍ଷ ଧରି କଳାଟଙ୍କାକୁ ଜବତ କରିବାକୁ କାର୍ଯ୍ୟରତ। ୫୧୦ଟି ସହରରେ ୮୦୦ ସ୍ଥାନରେ ତାଙ୍କର କାର୍ଯ୍ୟାଳୟମାନ ରହିଛି ଏବଂ ଏହି କାର୍ଯ୍ୟାଳୟମାନଙ୍କରେ ୫୫ ହଜାର କର୍ମଚାରୀ କାର୍ଯ୍ୟରତ। ସେମାନଙ୍କ ମଧ୍ୟରେ ବହୁ ସଂଖ୍ୟକ ପୋଲିସ୍ ଅଫିସର ମଧ୍ୟ ଅଛନ୍ତି। ଆମ ଦେଶରେ ୧୯୫୬ ମସିହାରୁ ଏନ୍‌ଫୋର୍ସମେଣ୍ଟ ଡାଇରେକ୍ଟୋରେଟ କାର୍ଯ୍ୟରତ। ଫେରା ଅର୍ଥାତ୍ ଫରେନ୍ ଏକ୍ସଚେଞ୍ଜ ରେଗୁଲେସନ ଆକ୍ଟ ଭଳି ମନି ଲଣ୍ଡରିଙ୍ଗ୍ ହାୱାଲା କାରବାର ଅର୍ଥନୈତିକ କାରବାରକୁ ନିୟନ୍ତ୍ରିତ କରିବାକୁ ଉଦ୍ଦିଷ୍ଟ। ଏହି ଆଇନ ପରବର୍ତ୍ତୀ ସମୟରେ ଫରେନ୍ ଏକ୍ସଚେଞ୍ଜ ମ୍ୟାନେଜମେଣ୍ଟ ଆକ୍ଟରେ ପରିଣତ ହୋଇଛି। ଏହି ନିର୍ଦ୍ଦେଶାଳୟ ଅଧିନରେ ୩୯ଟି ଅଫିସ ଓ ୨୦୦୦ କର୍ମଚାରୀ ନିୟୋଜିତ। ସେଣ୍ଟ୍ରାଲ ବୋର୍ଡ ଅଫ୍ ଏକ୍ସାଇଜ ଆଣ୍ଡ କଷ୍ଟମ ଆଣ୍ଡ ଡାଇରେକ୍ଟୋରେଟ ଅଫ୍ ରେଭିନ୍ୟୁ ଇଣ୍ଟେଲିଜେନ୍ସ, ସେଣ୍ଟ୍ରାଲ ଏକ୍ସାଇଜ ଆଣ୍ଡ ସର୍ଭିସ୍ ଟ୍ୟାକ୍ସ ଚୋରିକୁ ପ୍ରତିହତ କରିବା ପାଇଁ ଉଦ୍ଦିଷ୍ଟ। କେନ୍ଦ୍ରୀୟ ଓ ରାଜ୍ୟସ୍ତରରେ ଏହିଭଳି ଆହୁରି ଅନେକ ଆଇନ ଓ ବିଭାଗ ରହିଛି। ଭାରତ ସରକାରଙ୍କ ନ୍ୟାସନାଲ ଇନଭେଷ୍ଟିଗେସନ ଏଜେନ୍ସି ଓ ନ୍ୟାସନାଲ କ୍ରାଇମ୍ସ ରେକର୍ଡ ବ୍ୟୁରୋ ଭଳି ବିଭାଗଗୁଡ଼ିକ କଳାଧନ ମାମଲାଗୁଡ଼ିକୁ ଠାବ କରିବା, ତଦନ୍ତ କରିବା ଓ ଦୋଷୀକୁ ଦଣ୍ଡିତ କରିବା ନିମନ୍ତେ ଉଦ୍ଦିଷ୍ଟ। ଏତଦ୍‌ବ୍ୟତୀତ ସିବିଆଇ ଏବଂ ରାଜ୍ୟ ପୋଲିସ ଓ ଗୁଇନ୍ଦା ବିଭାଗ ମଧ୍ୟ ଏହି କାର୍ଯ୍ୟର ତଦାରଖ କରିପାରିବେ। ତେଣୁ ବର୍ତ୍ତମାନର ଆବଶ୍ୟକତା ହେଉଛି ଯେ, ବିଦେଶରେ ଗଚ୍ଛିତ କଳାଧନକୁ ଦେଶକୁ ଫେରାଇ ଆଣିବା ସାଙ୍ଗକୁ ଦେଶ ଭିତରେ ଚଳାଚଳ କରୁଥିବା ବିପୁଳ ପରିମାଣର କଳାଧନକୁ ମଧ୍ୟ ଠାବ କରି ଜନକଲ୍ୟାଣରେ ତାହାର ସୁବିନିଯୋଗ ଦିଗରେ ପଦକ୍ଷେପ ନେବା। ତମାମ ଧନସମ୍ପତ୍ତି ଥାଇ ଜଣେ ଭୋକରେ ରହିବାକୁ ବାଧ୍ୟ ହେବା ଭଳି ଆମ ନିକଟରେ ଉପଯୁକ୍ତ ଆଇନ ଓ ତାହାକୁ କାର୍ଯ୍ୟକାରୀ କରିବାକୁ ଯଥେଷ୍ଟ ଭିତିଭୂମି ଥିବା ସତ୍ତ୍ୱେ କଳାଧନର ସାମ୍ରାଜ୍ୟ ଦିନକୁ ଦିନ ବଢ଼ିବା ବାସ୍ତବିକ୍ କ୍ଷୋଭର ବିଷୟ। ତେଣୁ କେନ୍ଦ୍ର ସରକାର ଏହିସବୁ ବିଭାଗକୁ କୁମ୍ଭକର୍ଣ୍ଣ ନିଦରୁ ଉଠାଇ କର୍ମମୁଖର କରିପାରିଲେ ତାହା ଆମ ଦେଶକୁ ସ୍ୱାବଲମ୍ବୀ ଓ ଜନସାଧାରଣଙ୍କ ଜୀବନସ୍ତରକୁ ଉଚ୍ଚତର କରିବାରେ ସହାୟକ ହେବ।

କଳାଟଙ୍କା ହେଉଛି ସରକାରଙ୍କଠାରୁ ଅସାଧୁ ବ୍ୟକ୍ତିମାନଙ୍କ ଦ୍ୱାରା ଲୁକ୍କାୟିତ ରଖାଯାଇଥିବା ଟଙ୍କା। ଏହି ଟଙ୍କା ସବୁ ବେଆଇନ ଟଙ୍କା। ତାହା ଧରାପଡ଼ିଲେ

ସରକାରଙ୍କ ଦ୍ୱାରା ଜବତ ହୋଇ ସରକାରୀ ଧନରେ ପରିଣତ ହେବ ଏବଂ ବେଆଇନ ଅର୍ଥ ପାଖରେ ରଖିଥିବା ବ୍ୟକ୍ତିମାନଙ୍କୁ ଜେଲ୍ ଏବଂ ଜୋରିମାନା ଦଣ୍ଡ ଭୋଗିବାକୁ ପଡ଼ିବ। ତେଣୁ କଳାଟଙ୍କାକୁ ଲୁଚାଇ ରଖିବାକୁ ଲୋକେ ନିଜର ସମସ୍ତ ଶକ୍ତି ପ୍ରୟୋଗ କରିଥାନ୍ତି। ଏହି ଲୋକମାନେ ଆମ ଦେଶର ଅର୍ଥନୀତିକୁ ବହୁ ଭାବରେ ପ୍ରଭାବିତ କରୁଛନ୍ତି। ଗ୍ଲୋବାଲ ଫାଇନାନ୍ସିଆଲ ଇଣ୍ଟିଗ୍ରିଟିର ଡାଇରେକ୍ଟର ରେମଣ୍ଡ ବେକରଙ୍କ ମତରେ ବିଶ୍ୱ ଜନସଂଖ୍ୟାର ମାତ୍ର ଏକ ପ୍ରତିଶତ ଲୋକ ୫୭ ଭାଗ ସଂପଦର ଅଧିକାରୀ ହୋଇଛନ୍ତି।

ଭାରତର ହଜାର ହଜାର ଲୋକ ବେନାମୀ ଓ ଅନାମଧେୟ କର୍ପୋରେଶନମାନଙ୍କ ଜରିଆରେ ଗୁପ୍ତ ଟଙ୍କାର କାରବାର କରୁଛନ୍ତି। ଏହି ବିଷୟ ସରକାରଙ୍କର ତଳୁ ଉପର ପର୍ଯ୍ୟନ୍ତ ସମସ୍ତେ ଜାଣି ମଧ୍ୟ ସରକାରୀ କାର୍ଯ୍ୟରେ ସଂପୂର୍ଣ୍ଣ ଅବହେଳା ଯୋଗୁଁ କଳାଧନ ବଢ଼ିବାରେ ଲାଗିଛି। ଏ ସଂପର୍କରେ ଏକ ଦୃଷ୍ଟାନ୍ତ ଦେଲେ ଉଚିତ ହେବ। ନିକଟ ଅତୀତରେ ପୁନାର ଜଣେ ବ୍ୟବସାୟୀ ହାସାନ୍ ଅଲ୍ଲୀ ଖାଁ ନିଜର ସ୍ତ୍ରୀଙ୍କ ନାମରେ ରଖିଥିବା ଏକ ଆକାଉଣ୍ଟରୁ ଏକାଥରକେ ୪୦ ହଜାର କୋଟି ଟଙ୍କା ଟ୍ରାନଫର କରିଛନ୍ତି। ତାଙ୍କ ସ୍ତ୍ରୀ ଏତେ ଟଙ୍କା କିଭଳି ବ୍ୟାଙ୍କରେ ଜମା ରଖିଲେ ତାହାର ଖୋଳତାଡ଼ ହେଲେ ମଧ୍ୟ କିଛି ସନ୍ତୋଷ ଜନକ ଉତ୍ତର ମିଳି ନଥିଲା। ଏହା କଳାଟଙ୍କା ବୋଲି ସମସ୍ତେ ଜାଣିଲେ ମଧ୍ୟ ହାସାନ ଅଲ୍ଲୀ ଖାଁ କିମ୍ବା ତାଙ୍କ ସ୍ତ୍ରୀଙ୍କ ଉପରେ କିଛି ଦୃଷ୍ଟାନ୍ତମୂଳକ କାର୍ଯ୍ୟାନୁଷ୍ଠାନ ସରକାର ଗ୍ରହଣ କଲେନାହିଁ।

ସ୍ୱାଧୀନତା ପରେ ଭାରତର ପ୍ରଧାନମନ୍ତ୍ରୀ ଜବାହରଲାଲ ନେହ୍ରୁରୁ ଲାଂଚଖୋର କଳାବଜାରୀମାନଙ୍କୁ ଦେଶର ପ୍ରଧାନ ଶତ୍ରୁ ଭାବେ ବର୍ଣ୍ଣନା କରିଥିଲେ ଏବଂ ଏମାନଙ୍କୁ ସର୍ବସାଧାରଣରେ ବତୀଖୁଣ୍ଟରେ ଫାଶୀ ଦିଆଯିବା ଉଚିତ ବୋଲି କହିଥିଲେ। କିନ୍ତୁ ବିଡ଼ମ୍ବନାର କଥା ତାଙ୍କରି ପ୍ରଧାନମନ୍ତ୍ରିତ୍ୱ କାଳରେ ପ୍ରତିରକ୍ଷା ବିଭାଗ ପାଇଁ ଇଂଲଣ୍ଡରୁ ଜିପ୍ କିଣାରେ ଦୁର୍ନୀତି, ପଂଜାବର ମୁଖ୍ୟମନ୍ତ୍ରୀ ପ୍ରତାପ ସିଂହ କାଇରନଙ୍କ ବିରୋଧରେ ଗୁରୁତର ଦୁର୍ନୀତି ଅଭିଯୋଗ ହୋଇଥିଲେ ମଧ୍ୟ ସେଗୁଡ଼ିକୁ ସେ ଅଣଦେଖା କରିଥିଲେ। ଇନ୍ଦିରାଗାନ୍ଧିଙ୍କ ସମୟରେ ନଗରୱାଲା ଦୁର୍ନୀତି, ମାରୁତି ଦୁର୍ନୀତି, ଏ. ଆର. ଆନ୍ତୁଲେଙ୍କ ସଂପୃକ୍ତିରେ ଘଟିଥିବା ସିମେଣ୍ଟ ସ୍କାମ୍ ପ୍ରଭୃତି ଦୁର୍ନୀତିର କୌଣସି କାର୍ଯ୍ୟାନୁଷ୍ଠାନ ହୋଇନଥିଲା। ମନମୋହନ ସିଂଙ୍କ ୧୦ ବର୍ଷର ପ୍ରଧାନମନ୍ତ୍ରୀତ୍ୱ ସମୟରେ ଦୁର୍ନୀତି ସୀମା ଟପି ଯାଇଥିଲା। ଆଜି ପର୍ଯ୍ୟନ୍ତ କେନ୍ଦ୍ରର ବିଭିନ୍ନ ସରକାରମାନେ ପ୍ରାୟ ୪୫ଟି

କମିଶନ, କମିଟି ଓ ଷ୍ଟଡି ଟିମ୍ ଗଠନ କରିଛନ୍ତି, କିନ୍ତୁ ସେହି କମିଟି ବହୁ ଉପାଦେୟ ପରାମର୍ଶ ଦେଇଥିଲେ ମଧ୍ୟ ସରକାର ସେଗୁଡ଼ିକୁ କାର୍ଯ୍ୟକାରୀ କରିବାରେ ଯଥୋଚିତ ଗୁରୁତ୍ୱ ଦେଇ ନାହାନ୍ତି । କାରଣ ଏହି କଳାଟଙ୍କା କାରବାରରେ କେବଳ ବ୍ୟବସାୟୀମାନେ ନୁହନ୍ତି, ଉଚ୍ଚ ପଦପଦବୀରେ ଥିବା ଦୁର୍ନୀତିଗ୍ରସ୍ତ କର୍ମଚାରୀ ଓ ରାଜନୈତିକ ନେତାମାନେ ମଧ୍ୟ ନିବିଡ଼ ଭାବରେ ସଂପୃକ୍ତ ଅଛନ୍ତି ।

ଏବେ କିନ୍ତୁ ପରିସ୍ଥିତି ବଦଳି ଯାଇଛି । ପ୍ରଧାନମନ୍ତ୍ରୀ ନରେନ୍ଦ୍ର ମୋଦି କେବଳ କହିବାରେ ବିଶ୍ୱାସ କରନ୍ତି ନାହିଁ । ସେ ଦେଶବାସୀଙ୍କୁ କଳାଧନ ଫେରାଇ ଆଣିବାକୁ ଯେଉଁ ପ୍ରତିଶ୍ରୁତି ଦେଇଛନ୍ତି ତାହାକୁ ନିଶ୍ଚିତ ଭାବରେ ପାଳନ କରିବେ ଏହା ତାଙ୍କ କାର୍ଯ୍ୟଧାରାରୁ ଜଣାପଡୁଛି । କେନ୍ଦ୍ର ସରକାର ଏମ.ସି. ଜୋଷି ଦେଇଥିବା ରିପୋର୍ଟରେ ଭ୍ରଷ୍ଟାଚାର ନିରୋଧ ଆଇନରେ କଳାଟଙ୍କା ଠୁଳ କରିଥିବା ବ୍ୟକ୍ତିଙ୍କ ବିରୋଧରେ କଠୋର ଦଣ୍ଡର ବ୍ୟବସ୍ଥା କରିବାପାଇଁ ଯେଉଁ ଅନୁରୋଧ କରିଛନ୍ତି ଓ ଆମେରିକା ସରକାର ପ୍ରଣିତ କରିଥିବା ବିଦେଶୀ ଆକାଉଣ୍ଟ ଟ୍ୟାକ୍ସ କମ୍ପ୍ଲାଏନ୍ସ ଆକ୍ଟ ଭଳି ଏକ ଆଇନ ପ୍ରଣୟନ କରିବାକୁ ପୂର୍ବତନ କେନ୍ଦ୍ର ତଦନ୍ତ ବ୍ୟୁରୋର ନିର୍ଦ୍ଦେଶକ ଯୋଗୀନ୍ଦର ସିଂ ଯେଉଁ ପ୍ରସ୍ତାବ ଦେଇଛନ୍ତି ତାହାର ସରକାର ବିଚାର କରୁଥିବା ଅସମର୍ଥିତ ସୂତ୍ରରୁ ଜଣାଯାଇଛି । ଆନ୍ନା ହଜାରେ ବିଜେପି ସରକାରଙ୍କ ଉପରେ କଳାଟଙ୍କା ଜବତ କରିବାକୁ ମଧ୍ୟ ଚାପ ପକାଇବା ଆରମ୍ଭ କଲେଣି । ବିଶିଷ୍ଟ ଆଇନଜୀବୀ ରାମ ଜେଠାମାଲାନୀ ମଧ୍ୟ ନିକଟରେ ବିଜେପି କଳାଟଙ୍କା ଜମାକାରୀ ଦେଶଦ୍ରୋହୀମାନଙ୍କୁ ଘଣ୍ଟ ଘୋଡ଼ାଉଛନ୍ତି ବୋଲି ଅଭିଯୋଗ ଆଣିଛନ୍ତି । କିନ୍ତୁ ସାଧାରଣ ଜନତାଙ୍କ ବିଶ୍ୱାସ ମୋଦି ସରକାରଙ୍କ ଉପରେ ଏବେ ମଧ୍ୟ ଅତୁଟ ରହିଛି । ସେ ଯେ ଦେଶ ଭିତରେ ଥିବା କଳାଧନକୁ ଜବତ କରିବାରେ ସକ୍ଷମ ହେବେ ଏବଂ ବିଦେଶରେ ଥିବା ସମସ୍ତ କଳାଧନ ଜମାକାରୀଙ୍କ ବିଷୟରେ ଦୃଢ଼ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରି ସେଠାରେ ଥିବା ଟଙ୍କା ମଧ୍ୟ ଆମ ଦେଶକୁ ଫେରାଇ ଆଣିବେ, ଏହା ନିଶ୍ଚୟ ସମ୍ଭବ ହେବ । ସରକାରୀ କର୍ମଚାରୀ ତଥା ଦେଶବାସୀଙ୍କର ସାହାଯ୍ୟ ସମର୍ଥନ ଏଥିପାଇଁ ଅତ୍ୟନ୍ତ ଜରୁରୀ ।

*ସମାଜ, ୨୧.୧୧.୨୦୧୪*

# ଗୁସି ଶାନ୍ତି ପୁରସ୍କାର ବିଜେତା ଡକ୍ଟର ଅଚ୍ୟୁତ ସାମନ୍ତ

୨୦୧୪ ମସିହା ପାଇଁ ବିଶ୍ୱର ଅନ୍ୟ ୧୪ ଜଣ ପ୍ରତିଭା ସମ୍ପନ୍ନ ବ୍ୟକ୍ତିମାନଙ୍କ ମଧ୍ୟରେ ଅନ୍ତରାଷ୍ଟ୍ରୀୟ ଗୁସି ଶାନ୍ତି ପୁରସ୍କାର ପାଇ ଓଡ଼ିଶାକୁ ସମଗ୍ର ବିଶ୍ୱରେ ଗୌରବାନ୍ୱିତ କରାଇଛନ୍ତି ଡକ୍ଟର ଅଚ୍ୟୁତ ସାମନ୍ତ। ଏହି ପୁରସ୍କାର ପାଇବାରେ ସେ ହେଉଛନ୍ତି ପ୍ରଥମ ଓଡ଼ିଆ ଓ ତୃତୀୟ ଭାରତୀୟ। ଚଳିତ ନଭେମ୍ବର ୨୬ ତାରିଖ ଦିନ ମାଲେସିଆ ରାଜଧାନୀ ମାନିଲାଠାରେ ଏକ ବର୍ଣ୍ଣାଢ଼୍ୟ ଉତ୍ସବରେ ତାଙ୍କୁ ଏହି ପୁରସ୍କାର ପ୍ରଦାନ କରାଯାଇଥିଲା। ସମଗ୍ର ଏସିଆ, ଆରବ, ୟୁରୋପ, ଆଫ୍ରିକା, ଆମେରିକା ଓ ଜର୍ମାନୀ ପ୍ରଭୃତି ୫୩ଟି ଦେଶର ଦୂରଦର୍ଶନରେ ଏହି କାର୍ଯ୍ୟକ୍ରମର ସିଧାପ୍ରସାରଣ ହୋଇଥିଲା। ଓଡ଼ିଶାର ଜଣେ ବିଶିଷ୍ଟ ବ୍ୟକ୍ତି ଏଭଳି ଏକ ସମ୍ମାନଜନକ ପୁରସ୍କାର ପାଇଥିବା ଖବର ପ୍ରଚାରିତ ହେବାପରେ ରାଜ୍ୟର ସର୍ବତ୍ର ଆନନ୍ଦର ଲହରୀ ଖେଳିଯାଇଥିଲା। ଗୁସି ଶାନ୍ତି ପୁରସ୍କାର ପାଇବାପରେ ସେଠାରେ ଗଣମାଧ୍ୟମ ପ୍ରତିନିଧିମାନଙ୍କୁ ସାକ୍ଷାତକାର ଦେଇ ଡକ୍ଟର ସାମନ୍ତ ଭାବବିହ୍ୱଳ ହୋଇ କହିଉଠିଥିଲେ ଯେ ଏ ଗୌରବ ତାଙ୍କର ନୁହେଁ, ବରଂ ଏହା ତାଙ୍କ ଜନ୍ମଭୂମି ଓଡ଼ିଶାର ଜନସାଧାରଣଙ୍କର।

ଏଠାରେ ଗୁସି ଶାନ୍ତି ପୁରସ୍କାର ସମ୍ବନ୍ଧରେ କିଛିଟା ସୂଚନା ଦେବା ସମୀଚୀନ ମନେହୁଏ। ଗୁସି ଶାନ୍ତି ପୁରସ୍କାର ଫାଉଣ୍ଡେସନ ଚ୍ୟାରିଟେବଲ ସଙ୍ଗଠନ ଫିଲିପାଇନ୍ସ ରାଜଧାନୀ ମାନିଲାଠାରେ କ୍ୟାପ୍ଟେନ୍ ଜେମିନିୟାନେ ଜେଭିୟର ଗୁସିଙ୍କ ଦ୍ୱାରା ୧୪୭୬ ମସିହାରେ ପ୍ରତିଷ୍ଠିତ ହୋଇଥିଲା। ଏହି ପୁରସ୍କାର ବିଶ୍ୱରେ ଦରିଦ୍ର ଅବହେଳିତମାନଙ୍କ ସେବାରେ ନିୟୋଜିତ ବ୍ୟକ୍ତି, ରାଜନୀତି, କଳା, ସଂସ୍କୃତି, ସାହିତ୍ୟ, ବିଜ୍ଞାନ, ଚିକିତ୍ସା, ସାମ୍ବାଦିକତା, ସମାଜସେବା, ଅର୍ଥନୀତି ଓ ବାଣିଜ୍ୟ ଆଦି କ୍ଷେତ୍ରରେ ଉଲ୍ଲେଖନୀୟ ଅବଦାନ ପାଇଁ ପ୍ରତିବର୍ଷ ବିଭିନ୍ନ ବ୍ୟକ୍ତିବିଶେଷ ଓ ଅନୁଷ୍ଠାନକୁ ଫିଲିପାଇନ୍ସ ପାର୍ଲିଆମେଣ୍ଟର ଅନୁମୋଦନ କ୍ରମେ ପ୍ରଦାନ କରାଯାଇଥାଏ। ଏହି ପୁରସ୍କାର ନୋବେଲ ପୁରସ୍କାର ଓ ଆମେରିକାର ପୁଲିତ୍‌ଜର ପୁରସ୍କାର ସହିତ ସମକକ୍ଷ ବୋଲି ବିବେଚନା କରାଯାଏ।

୧୯୬୫ ମସିହା ଜାନୁୟାରୀ ୨୦ ତାରିଖ ଦିନ ଅବିଭକ୍ତ କଟକ ଜିଲ୍ଲାର

କଲରାବାଙ୍କ ଗ୍ରାମର ଏକ ଦରିଦ୍ର ପରିବାରରେ ଜନ୍ମିତ ଡକ୍ଟର ଅଚ୍ୟୁତ ସାମନ୍ତ ମାତ୍ର ଚାରି ବର୍ଷ ବୟସରେ ପିତୃହରା ହୋଇ ଜୀବନ ସଂଗ୍ରାମରେ ଅବତୀର୍ଣ୍ଣ ହୋଇଥିଲେ। ନିଜେ ଜୀବନଧାରଣ କରିବାପାଇଁ ସଂଘର୍ଷରତ ଥିଲେ ମଧ୍ୟ ପିଲାଦିନୁ ଅନ୍ୟମାନଙ୍କୁ ସାହାଯ୍ୟ କରିବାରେ ସେ ଅପୂର୍ବ ଆନନ୍ଦ ପାଉଥିଲେ। ପରୋପକାରୀ ଅଚ୍ୟୁତ ଉତ୍କଳ ବିଶ୍ୱବିଦ୍ୟାଳୟରୁ ରସାୟନ ବିଜ୍ଞାନରେ ସ୍ନାତକୋତର ଉପାଧି ହାସଲ କଲାପରେ ମହର୍ଷି ମହାବିଦ୍ୟାଳୟରେ ଅଧ୍ୟାପକ ଭାବରେ ଯୋଗ ଦେଇଥିଲେ। କିନ୍ତୁ ସେଥିରେ ସେ ସନ୍ତୁଷ୍ଟ ହୋଇପାରିନଥିଲେ। ୧୯୯୨-୯୩ରେ ମାତ୍ର ୫,୦୦୦ ଟଙ୍କାର ପୁଞ୍ଜିରେ ଏକ ଭଡ଼ାଘରେ କିଟ୍-କିସ୍‌ର ଶୁଭାରମ୍ଭ ହୋଇଥିଲା, ଯାହା ଆଜି କିଟ୍ ବୈଷୟିକ ବିଶ୍ୱବିଦ୍ୟାଳୟ ଓ ବିଶ୍ୱର ସର୍ବବୃହତ ଆଦିବାସୀ ଆବାସିକ ବିଦ୍ୟାଳୟ (କଓଝଝ)ରେ ପରିଣତ ହୋଇଛି। କିଟ୍ ବିଶ୍ୱବିଦ୍ୟାଳୟ ଏବେ ଓଡ଼ିଶା ସମେତ ସମଗ୍ର ବିଶ୍ୱର ପ୍ରାୟ ୨୫,୦୦୦ ଛାତ୍ରଛାତ୍ରୀଙ୍କୁ ବୈଷୟିକ ଶିକ୍ଷା ପ୍ରଦାନ କରୁଥିବା ବେଳେ କିସ୍‌ରେ ୨୨,୫୦୦ ଜନଜାତି ପିଲା ଅତ୍ୟାଧୁନିକ ଆବାସିକ ପରିବେଶରେ ପ୍ରତିପାଳିତ ହୋଇ କେଜିଠାରୁ ପିଜି ପର୍ଯ୍ୟନ୍ତ ନିଃଶୁଳ୍କ ଶିକ୍ଷା ଲାଭ କରୁଛନ୍ତି।

ଘୋର ଆର୍ଥିକ ସଙ୍କଟରେ ପ୍ରତିପାଳିତ ଡକ୍ଟର ଅଚ୍ୟୁତ ସାମନ୍ତ ନିଜର ଜନ୍ମସ୍ଥାନ କଲରାବାଙ୍କ ଗ୍ରାମକୁ ଏକ ଆଦର୍ଶ ଗ୍ରାମରେ ପରିଣତ କରିଛନ୍ତି। ଏତଦ୍‌ବ୍ୟତୀତ ସେ ଓଡ଼ିଶାର କଳା, ସଂସ୍କୃତି, ସିନେମା, ସାହିତ୍ୟ ଓ ଆଧ୍ୟାତ୍ମିକତା ଆଦି କ୍ଷେତ୍ରର ବିକାଶରେ ମଧ୍ୟ ବ୍ରତୀ ହୋଇଛନ୍ତି। ସମସ୍ତଙ୍କୁ ସବୁକିଛି ଦେବାକୁ ସତତ ଆଗ୍ରହୀ ଅନନ୍ୟ ପ୍ରତିଭାବାନ୍ ଡକ୍ଟର ସାମନ୍ତ ନିଜେ କିନ୍ତୁ ଭୁବନେଶ୍ୱରରେ ଏକ ଭଡ଼ାଘରେ ଜଣେ ସାଧାରଣ ମଣିଷ ଭାବେ ସନ୍ନ୍ୟାସୀ ସଦୃଶ ନିରାଡ଼ମ୍ବର ଜୀବନ ଯାପନ କରନ୍ତି। ନିଜେ ଆଜୀବନ ଅବିବାହିତ ରହିବାକୁ ପଣକରି ଦୁର୍ବଳ ଶ୍ରେଣୀର ସେବାକୁ ଜୀବନର ଏକମାତ୍ର ବ୍ରତଭାବେ ଗ୍ରହଣ କରିନେଇଥିବା ଡକ୍ଟର ସାମନ୍ତ ନିଜର ଭବିଷ୍ୟତ ଜୀବନ ସମ୍ପର୍କରେ ସମ୍ପୂର୍ଣ୍ଣ ଉଦାସୀନ। ଜାତି, ଲିଙ୍ଗ ଓ ସମ୍ପ୍ରଦାୟ ନିର୍ବିଶେଷରେ ଲକ୍ଷ ଲକ୍ଷ ଗରିବ ଅସହାୟ ପିଲାଙ୍କର ଆଜୀବନ ସହାୟକ ହେବା ହେଉଛି ତାଙ୍କର ଏକମାତ୍ର ଲକ୍ଷ୍ୟ। ଗରିବ, ନାଚାର ଓ ଅସହାୟ ପିଲାମାନଙ୍କୁ ସାକ୍ଷର କରିବା, ସମୁଚିତ ଶିକ୍ଷା ଦେଇ ସେମାନଙ୍କ ମୁହଁରେ ହସ ଫୁଟାଇବାରେ ସେ ଅପାର ଆନନ୍ଦ ପାଇଥାନ୍ତି। ବାଲ୍ୟକାଳରୁ ଦାନଶୀଳତାରେ ଅଭ୍ୟସ୍ତ ଡକ୍ଟର ଅଚ୍ୟୁତ ସାମନ୍ତ ୨୦୧୩ ମସିହା ମଇ ୧୭ ତାରିଖରୁ 'ଦେବାରେ ଆନନ୍ଦ' (ଆର୍ଟ ଅଫ୍ ଗିଭିଙ୍ଗ୍)ର ପ୍ରତିଷ୍ଠା କରି ଅନ୍ୟମାନଙ୍କୁ

ମଧ୍ୟ ଏହି ଆଦର୍ଶରେ ଅନୁପ୍ରାଣିତ କରିବାରେ ଲାଗିପଡ଼ିଛନ୍ତି। ଆମ ଦେଶର ପୂର୍ବତନ ରାଷ୍ଟ୍ରପତି ଡକ୍ଟର ଏ.ପି.ଜେ. ଅବଦୁଲ କଲାମ କିଟ୍-କିସ୍ ପରିଦର୍ଶନ କରି ଡକ୍ଟର ସାମନ୍ତଙ୍କ ପ୍ରତିଷ୍ଠିତ କିଟ୍ ଓ କିସ୍ ଛାତ୍ରଛାତ୍ରୀଙ୍କ ଚରିତ୍ର ଗଠନରେ ଏକ ପ୍ରମୁଖ ଭୂମିକା ଗ୍ରହଣ କରୁଛି ବୋଲି କହି ତାଙ୍କୁ ଅଭିନନ୍ଦନ ଜ୍ଞାପନ କରିଥିଲେ। ଉପରାଷ୍ଟ୍ରପତି ଏମ୍. ହମିଦ୍ ଆନସାରୀ କିସ୍ ପରିଦର୍ଶନ ସମୟରେ କହିଥିଲେ ଦୃଢ଼ ଇଚ୍ଛାଶକ୍ତି ବଳରେ ସବୁକିଛି ସମ୍ଭବ ହୋଇପାରେ ବୋଲି ଡକ୍ଟର ସାମନ୍ତ ପ୍ରମାଣିତ କରିଛନ୍ତି। ସୁପ୍ରିମ୍ କୋର୍ଟର ନ୍ୟାୟମୂର୍ତ୍ତି ଜ୍ଞାନସୁଧା ମିଶ୍ର କିସ୍‌ରେ ଅଧ୍ୟୟନରତ ଜନଜାତି ସମ୍ପ୍ରଦାୟର ଛାତ୍ରଛାତ୍ରୀଙ୍କୁ ଦେଖି ସମାଜକୁ ଡକ୍ଟର ସାମନ୍ତଙ୍କର ଅବଦାନ ଭଳି ଦୃଷ୍ଟାନ୍ତ ସେ ଅନ୍ୟ କେଉଁଠି ଦେଖିନାହାନ୍ତି ବୋଲି କହିଛନ୍ତି।

କିଟ୍ ଓ କିସ୍‌ର ସଂସ୍ଥାପକ ହେବା ସାଙ୍ଗକୁ ଡକ୍ଟର ଅଚ୍ୟୁତ ସାମନ୍ତ କିଟ୍ ଫାଉଣ୍ଡେସନ ଇଣ୍ଡିଆ ଓ କିସ୍ ଫାଉଣ୍ଡେସନ ୟୁନାଇଟେଡ୍ କିଙ୍ଗଡମ୍‌ର ଆଜୀବନ ସଂସ୍ଥାପକ ମଧ୍ୟ। କିଟ୍ ଓ କିସ୍ କେବଳ ଶିକ୍ଷାନୁଷ୍ଠାନ ନୁହେଁ, ବରଂ ଏହା ଏକ ପର୍ଯ୍ୟଟନସ୍ଥଳୀରେ ପରିଣତ ହୋଇଛି। କିଟ୍-କିସ୍‌ରେ ପ୍ରାୟ ଦଶ ହଜାର କର୍ମଚାରୀ କାର୍ଯ୍ୟରତ ଅଛନ୍ତି ଏବଂ ପରୋକ୍ଷଭାବରେ ଲକ୍ଷାଧିକ ଲୋକଙ୍କ ଜୀବିକା ଅର୍ଜନରେ ଏହା ସହାୟକ ହୋଇଛି। ପ୍ରତିଦିନ ହଜାର ହଜାର ସଂଖ୍ୟାରେ ଅଭିଭାବକ ଓ ଅନ୍ୟାନ୍ୟ ଅନୁସନ୍ଧିତ୍ସୁ ବ୍ୟକ୍ତି କିଟ୍-କିସ୍ ପରିସରକୁ ବିଭିନ୍ନ କାର୍ଯ୍ୟରେ ଆସିଥାନ୍ତି।

ଯୋଗଜନ୍ମା ଡକ୍ଟର ଅଚ୍ୟୁତ ସାମନ୍ତଙ୍କ ଜୀବନ ସମଗ୍ର ବିଶ୍ୱପାଇଁ ଅନୁକରଣୀୟ। ଶିକ୍ଷାକୁ ସେ ଦାରିଦ୍ର୍ୟ ଦୂରୀକରଣର ମୂଳମନ୍ତ୍ର ମନେକରନ୍ତି। ଜଣେ ଦୂରଦର୍ଶୀ ଶିକ୍ଷାବିତ୍ ଓ ଆଦିବାସୀସମୂହର ପୃଷ୍ଠପୋଷକଭାବେ ଆଜି ସେ ସମଗ୍ର ବିଶ୍ୱରେ ପରିଚିତ। ଏହି ବ୍ୟକ୍ତି ଆହୁରି ଅନେକ ବିଶ୍ୱସ୍ତରୀୟ ସମ୍ମାନର ଅଧିକାରୀ ହେବେ ସେ ଆଶା ଓଡ଼ିଶାବାସୀଙ୍କ ମନରେ ରହିଛି। ଡକ୍ଟର ସାମନ୍ତଙ୍କ ଆଦର୍ଶ ଜୀବନଶୈଳୀ ଭବିଷ୍ୟତରେ ଏ ଦେଶରେ ତାଙ୍କଭଳି ଆହୁରି ଅନେକ ବ୍ୟକ୍ତି ସୃଷ୍ଟି କରିବାରେ ସହାୟକ ହେବ ବୋଲି ଆଶା ଓ ବିଶ୍ୱାସ।

*ସମ୍ବାଦ କଳିକା, ୩.୧୨.୨୦୧୪*

# ପାକିସ୍ତାନୀ-ହିନ୍ଦୁ ଶରଣାର୍ଥୀଙ୍କ ଦୁର୍ଦ୍ଦଶା

ପାକିସ୍ତାନରେ ମୁସଲମାନବହୁଳ ସମାଜ, ସରକାର ଓ ଏପରିକି ନ୍ୟାୟାଳୟ ମଧ୍ୟ ଧର୍ମଭିତ୍ତିରେ ହିନ୍ଦୁମାନଙ୍କ ପ୍ରତି ଅନ୍ୟାୟ ଅବିଚାର କରୁଥିବାରୁ ସ୍ୱାଧୀନତା ପରଠାରୁ ଏଯାବତ୍ ଅନ୍ୟୂନ ୮ ଲକ୍ଷ ହିନ୍ଦୁ ଶରଣାର୍ଥୀ ଭାବେ ଭାରତରେ ଅନୁପ୍ରବେଶ କରି ରାଜସ୍ଥାନ, ଗୁଜୁରାଟ, ମଧ୍ୟପ୍ରଦେଶ ଓ ଅନ୍ୟ ରାଜ୍ୟମାନଙ୍କରେ ଆଶ୍ରୟ ନେଇଛନ୍ତି। ଅତ୍ୟାଚାର ସହିନପାରି କୋଟି କୋଟି ସଂଖ୍ୟାରେ ହିନ୍ଦୁମାନେ ମୁସଲମାନ ହୋଇଯାଇଥିଲେ ମଧ୍ୟ ତମାମ ଅତ୍ୟାଚାର ସତ୍ୱେ ନିଜର ପାରମ୍ପରିକ ଧର୍ମବିଶ୍ୱାସ ଓ ସ୍ୱାଭିମାନକୁ ବଳିଦେବାକୁ ରାଜି ନଥିବା ଲୋକମାନେ ଏଭଳି ଦୁର୍ଦ୍ଦଶା ଭୋଗ କରୁଛନ୍ତି। ପାକିସ୍ତାନର ସୃଷ୍ଟି ସମୟରେ ମହମ୍ମଦ ଅଲ୍ଲୀ ଜିନ୍ନା କହିଥିଲେ ଯେ ହିନ୍ଦୁସ୍ତାନରେ ମୁସଲମାନମାନଙ୍କ ସହିତ ଯେପରି ବ୍ୟବହାର ପ୍ରଦର୍ଶନ କରାଯିବ, ତାହା ପାକିସ୍ତାନରେ ହିନ୍ଦୁମାନଙ୍କ ପ୍ରତି ବ୍ୟବହାରର ଦିଶା ନିର୍ଣ୍ଣୟ କରିବ। ଭାରତ ଏକ ଧର୍ମନିରପେକ୍ଷ ରାଷ୍ଟ୍ର ହୋଇଥିବାରୁ ସ୍ୱାଧୀନତା ପରଠାରୁ ଭାରତରେ ମୁସଲମାନ, ଖ୍ରୀଷ୍ଟିୟାନ, ବୌଦ୍ଧଧର୍ମାବଲମ୍ବୀ ଓ ଅନ୍ୟମାନେ ବିନା ବାଧାବିଘ୍ନରେ ନିଜର ଧାର୍ମିକ, ସାମାଜିକ, ଅର୍ଥନୈତିକ ଜୀବନ ସୁଚାରୁରୂପେ ଅତିବାହିତ କରୁଛନ୍ତି। ଏପରିକି ସଂଖ୍ୟାଲଘୁମାନଙ୍କର ସ୍ୱାର୍ଥରକ୍ଷା ପାଇଁ କେନ୍ଦ୍ରରେ ଏକ ସ୍ୱତନ୍ତ୍ର ମନ୍ତ୍ରଣାଳୟ ଗଠିତ ହୋଇଛି। କିନ୍ତୁ ପାକିସ୍ତାନରେ ସଂଖ୍ୟାଲଘୁ ଲୋକମାନଙ୍କର ଧନଜୀବନ ସୁରକ୍ଷିତ ନୁହେଁ। ବିଶେଷକରି ହିନ୍ଦୁମାନେ ସେଠାରେ ଅକଥନୀୟ ଅତ୍ୟାଚାରର ଶିକାର ହେଉଛନ୍ତି ଏବଂ ସର୍ବଦା ଏକ ଭୟଭୀତ ବାତାବରଣରେ ଜୀବନଯାପନ କରୁଛନ୍ତି। ଭାରତରେ ବାସ କରୁଥିବା ମୁସଲମାନମାନେ ହିନ୍ଦୁମାନଙ୍କ ଭଳି ଏ ଦେଶକୁ ନିଜର ଜନ୍ମଭୂମି ରୂପେ ବିବେଚନା କରି ଦେଶର ସୁରକ୍ଷା ପାଇଁ ଆତ୍ମବଳୀ ଦେଉଥିବାର ଅନେକ ଦୃଷ୍ଟାନ୍ତ ଅଛି। ଆଜି କେହିଜଣେ ବି ମୁସଲମାନ ନିଜ ଦେଶ ଭାରତ ଛାଡ଼ି ଅନ୍ୟତ୍ର ଯିବାକୁ ଚାହୁଁନଥିବା ବେଳେ ପାକିସ୍ତାନରୁ ହିନ୍ଦୁମାନଙ୍କର ପଳାୟନ ନିରନ୍ତର ଲାଗିରହିଛି। ୨୦୧୨ ମସିହାରେ ପାକିସ୍ତାନରେ ଜଣେ ହିନ୍ଦୁଧର୍ମାଚାର୍ଯ୍ୟଙ୍କୁ ଅପହରଣ କରି ନିଆଯାଇ ନିର୍ମମ ଭାବେ ହତ୍ୟା କରାଯାଇଥିଲା। ହତ୍ୟାକାରୀମାନଙ୍କ ବିରୁଦ୍ଧରେ ପାକ୍ ସରକାର କୌଣସି କାର୍ଯ୍ୟାନୁଷ୍ଠାନ କରିନଥିଲେ। ଗତବର୍ଷ ରିଙ୍କଲ କୁମାରୀ ନାମ୍ନୀ ହିନ୍ଦୁଝିଅକୁ ବଳପୂର୍ବକ ମୁସଲମାନ

କରିଦିଆଗଲା। ତା' ସହିତ ଇସ୍‌ଲାମିକ କଠୋରପନ୍ଥୀମାନେ ଦୁର୍ବ୍ୟବହାର କଲେ। ଝିଅଟିର ପରିବାରବର୍ଗ ନ୍ୟାୟ ପାଇବା ଆଶାରେ ଅଦାଲତର ଦ୍ୱାରସ୍ଥ ହେଲେ ମଧ୍ୟ ଅଦାଲତ ଦୋଷୀମାନଙ୍କୁ ଦଣ୍ଡ ଦେବାରୁ ନିବୃତ୍ତ ରହିଲା। ପାକିସ୍ଥାନର ମାନବାଧିକାର ଆୟୋଗ ତାଙ୍କ ରିପୋର୍ଟରେ କହିଛନ୍ତି ଯେ ପାକିସ୍ଥାନରେ ହିନ୍ଦୁମାନଙ୍କ ପ୍ରତି ଅତ୍ୟାଚାର ବଢ଼ିଚାଲିଛି। ତେଣୁ ହିନ୍ଦୁଧର୍ମାବଲମ୍ବୀମାନେ ଦେଶଛାଡ଼ି ପଳାଇବାକୁ ସବୁବେଳେ ଗୋଡ଼ଟେକି ବସିଛନ୍ତି।

ଗତବର୍ଷ ପାକିସ୍ଥାନର ସିନ୍ଧୁପ୍ରଦେଶରୁ ୪୭୯ ଜଣ ହିନ୍ଦୁ କୁମ୍ଭମେଳାରେ ଯୋଗଦେବାକୁ ତୀର୍ଥଯାତ୍ରୀଭାବରେ ଆସି ଦିଲ୍ଲୀରେ ପହଂଚିଥିଲେ। ନାହର ସିଂହ ନାମକ ଜଣେ ପରୋପକାରୀ ବ୍ୟକ୍ତି ସେମାନଙ୍କୁ ଦକ୍ଷିଣ ଦିଲ୍ଲୀସ୍ଥିତ ନିଜର ଏକ ୨୮ ବଖରା ବିଶିଷ୍ଟ ଘରେ ଆଶ୍ରୟ ଦେଇଥିଲେ। ସେମାନେ ପାକିସ୍ଥାନରେ ହିନ୍ଦୁମାନଙ୍କ ମଧ୍ୟରେ ଏକ ସାମୂହିକ ଭୟ ସବୁବେଳେ ରହିଛି ବୋଲି ବର୍ଣ୍ଣନା କରିଛନ୍ତି। ପାକିସ୍ଥାନର ମୋଟ ଜନସଂଖ୍ୟା ୧୮ କୋଟିରୁ ହିନ୍ଦୁଙ୍କ ସଂଖ୍ୟା ଶତକଡ଼ା ୧.୬ ଭାଗ ଅର୍ଥାତ୍ ୨୮ ଲକ୍ଷ ୮୦ ହଜାର। ଏହି ଜନସଂଖ୍ୟାର ୯୫ ପ୍ରତିଶତ ଲୋକ ଦକ୍ଷିଣ ପାକିସ୍ଥାନର ପଞ୍ଜାବ ଓ ସିନ୍ଧୁପ୍ରଦେଶରେ ବସବାସ କରନ୍ତି। ସିନ୍ଧୁପ୍ରଦେଶର ହିନ୍ଦୁମାନେ ଅଧିକାଂଶ ବ୍ୟବସାୟୀ ବା ଜମିଦାର ଶ୍ରେଣୀୟ। ମୁସଲମାନ ଉଗ୍ରପନ୍ଥୀମାନେ ସେମାନଙ୍କୁ ହତ୍ୟା, ଅପହରଣ, ବଳପୂର୍ବକ ଧର୍ମ ପରିବର୍ତ୍ତନ ଓ ଝିଅମାନଙ୍କୁ ବାଧ୍ୟକରି ବିବାହ କରିବା ଓ ମହିଳାମାନଙ୍କୁ ବଳାତ୍କାର କରିବା ଏକ ସାଧାରଣ ଘଟଣା ହୋଇଯାଇଛି। ହିନ୍ଦୁମାନଙ୍କୁ ଧମକ ଦେଇ ତାଙ୍କ ଭିଟାମାଟିରୁ ତଡ଼ିଦେଇ ସେମାନଙ୍କ ଭୂସମ୍ପତି ଓ ବାଣିଜ୍ୟ ବ୍ୟବସାୟକୁ ଜବରଦସ୍ତ ଅକ୍ତିଆର କରୁଛନ୍ତି। ପାକିସ୍ଥାନର ଅନ୍ୟତ୍ର ବସବାସ କରୁଥିବା ହିନ୍ଦୁମାନଙ୍କୁ ସେଠାର ଧନାଢ଼୍ୟ ଜମିଦାରମାନେ ଗୋତିଶ୍ରମିକ ଭାବେ ଖଟାଉଛନ୍ତି। ହିନ୍ଦୁମନ୍ଦିର ଓ ଧର୍ମସ୍ଥଳଗୁଡ଼ିକୁ ଭାଙ୍ଗି ଦିଆଯାଉଛି। ଏପରିକି ଅନେକ ସମୟରେ ମୃତ ବ୍ୟକ୍ତିକୁ ଦାହସଂସ୍କାର ବଦଳରେ କବର ଦେବାକୁ ବାଧ୍ୟ କରାଯାଉଛି।

ପାକ୍ ମାନବାଧିକାର କମିଶନଙ୍କ ପ୍ରଦତ୍ତ ତଥ୍ୟ ଅନୁଯାୟୀ ହିନ୍ଦୁଙ୍କ ପ୍ରତି ଧାର୍ମିକ ଅସହିଷ୍ଣୁତା ଜନିତ ଦୁର୍ବ୍ୟବହାର ଯୋଗୁଁ ସେଠାରୁ ହିନ୍ଦୁମାନଙ୍କ ପଳାୟନ ଜାରି ରହିଛି। ୨୦୧୨-୧୩ ମସିହାରେ ୬୦୦ରୁ ୧୦୦୦ ହିନ୍ଦୁ ପରିବାର ଭାରତକୁ ପଳାଇ ଆସିଛନ୍ତି। ଇସ୍‌ଲାମାବାଦସ୍ଥିତ ଜିନ୍ନା ଇନ୍‌ଷ୍ଟିଚ୍ୟୁଟରେ ଏକ ସଦ୍ୟ ପ୍ରଦତ୍ତ ତଥ୍ୟରେ କୁହାଯାଇଛି ଯେ ହିନ୍ଦୁଙ୍କ ପ୍ରତି କରାଯାଉଥିବା ଅତ୍ୟାଚାରରେ ପାକ୍ ସରକାରଙ୍କର ସହମତି ରହିଛି। ପାକ୍ ନାଗରିକଙ୍କୁ ମୁସଲମାନ ଓ ଅଣ-ମୁସଲମାନ ଏହିପରି ଦୁଇ

ଭାଗରେ ବିଭକ୍ତ କରାଯାଇଛି । ପାକିସ୍ତାନରେ ଦ୍ୱୈତ ନାଗରିକତାର ସ୍ଥାପନରେ ବିଧାୟିକା, ପ୍ରଶାସନ ଓ ନ୍ୟାୟାଳୟର ଐତିହାସିକ ଭୂମିକା ରହିଛି । ଗଣତାନ୍ତ୍ରିକ ଶାସନ ହେଉ କିମ୍ବା ସାମରିକ ଶାସନ, ସବୁବେଳେ ଅଣ-ମୁସଲମାନ ନାଗରିକମାନଙ୍କ ପ୍ରତି ହେୟଭାବ ପ୍ରଦର୍ଶନ ଜାରି ରହିଛି । ସେଠାରେ ସଂଖ୍ୟାଲଘୁମାନେ ଗୋଟିଏ ପଟେ ଇସ୍‌ଲାମିକ କଠୋରପନ୍ଥୀମାନଙ୍କ ଆକ୍ରମଣ ଓ ସାମାଜିକ ବାସନ୍ଦର ଶିକାର ହେଉଥିବା ବେଳେ ଅନ୍ୟ ଦିଗରେ ଆଇନଗତ ଭେଦଭାବ ଯୋଗୁଁ ପ୍ରଶାସନ ସେମାନଙ୍କୁ ଏଥିରୁ ସୁରକ୍ଷା ଦେବାକୁ ଚାହୁଁନାହିଁ ।

ସାଧାରଣତଃ ରାଜସ୍ଥାନ ସୀମାଦେଇ ପାକିସ୍ତାନର ହିନ୍ଦୁମାନେ ଭାରତକୁ ଆସିଥାନ୍ତି । ଯୋଧପୁର, ଜୈସଲମେର, ବିକାନିର ଓ ଜୟପୁର ଭଳି ସହରଗୁଡ଼ିକରେ ପ୍ରାୟ ୪୦୦ ଶରଣାର୍ଥୀ ବସ୍ତି ରହିଛି । ସେମାନେ ଥର୍ ଏକ୍ସପ୍ରେସରେ ଭାରତରେ ସୁରକ୍ଷିତ ଓ ଶାନ୍ତିପୂର୍ଣ୍ଣ ଜୀବନଯାପନ କରିବାକୁ ପାକିସ୍ତାନ ଛାଡ଼ି ପଳାଇ ଆସିଥାନ୍ତି । ଭାରତୀୟ ନାଗରିକତା ପାଇବା ଆଶାରେ ପ୍ରତିବର୍ଷ ଅନ୍ୟୂନ ୧୦୦୦ ପାକିସ୍ତାନୀ ହିନ୍ଦୁ ରାଜସ୍ଥାନ ସୀମା ଅତିକ୍ରମ କରୁଛନ୍ତି । ସେମାନେ କିନ୍ତୁ ବାଂଲାଦେଶୀ ମୁସଲମାନଙ୍କ ଭଳି ବେଆଇନ ଅନୁପ୍ରବେଶକାରୀ ନୁହନ୍ତି । କାରଣ ସେମାନେ ସେଠାରୁ ଭିସା ନେଇ ଭାରତକୁ ଆସୁଛନ୍ତି ଓ ଏଠାରେ ଥାଇ ନିଜ ଭିସାର ଅବଧି ବଢ଼ାଇବାକୁ ଚେଷ୍ଟା କରନ୍ତି । କିନ୍ତୁ ବିଡ଼ମ୍ବନା ଏହିକି ଯେ ଏହି ହତଭାଗ୍ୟ ହିନ୍ଦୁମାନଙ୍କୁ ଗୋଟିଏପଟେ ଭାରତ ସରକାର ଶରଣାର୍ଥୀ ଭାବେ ସ୍ୱୀକାର କରୁନଥିବା ବେଳେ ଅନ୍ୟପଟେ ପାକ୍ ହାଇକମିଶନର ସେମାନଙ୍କ ଭିସାର ଅବଧି ବଢ଼ାଇବାକୁ ଅନିଚ୍ଛା ପ୍ରକାଶ କରନ୍ତି । ୧୪ ଡିସେମ୍ବରରେ ଗଣମାଧ୍ୟମରେ ପ୍ରସାରିତ ସମ୍ବାଦ ଅନୁଯାୟୀ ଦୁଇଦିନ ତଳେ ୪୦୦ ହିନ୍ଦୁ ଶରଣାର୍ଥୀ ପାକିସ୍ତାନରୁ ପଳାଇଆସି ଦିଲ୍ଲୀରେ ପହଂଚିଛନ୍ତି । ସେମାନେ ପିଲାଛୁଆ ଧରି ଗଛମୂଳରେ ପ୍ରବଳ ଥଣ୍ଡାରେ ପଡ଼ିରହି କେନ୍ଦ୍ର ସରକାରଙ୍କର ସହାୟତା ଭିକ୍ଷା କରୁଛନ୍ତି ।

ହସ୍ତଗତ ହୋଇଥିବା ତଥ୍ୟ ଅନୁଯାୟୀ ଭାରତ ଏ ପର୍ଯ୍ୟନ୍ତ ବିଭିନ୍ନ ଦେଶରୁ ଆସିଥିବା ଅନ୍ୟୂନ ଦୁଇ ଲକ୍ଷ ଲୋକଙ୍କୁ ଆଶ୍ରୟ ଦେଇସାରିଛି । ଭାରତ ୧୯୫୧ର ଅନ୍ତର୍ରାଷ୍ଟ୍ରୀୟ ଶରଣାର୍ଥୀ ସନ୍ଧିରେ ସ୍ୱାକ୍ଷର କରିନାହିଁ କି ଏ ସମ୍ବନ୍ଧୀୟ ୧୯୬୭ ପ୍ରୋଟୋକଲରେ ବି ସ୍ୱାକ୍ଷର କରିନାହିଁ । ତଥାପି କୌଣସି ବ୍ୟକ୍ତିକୁ ଶରଣାର୍ଥୀ ଭାବେ ଆଶ୍ରୟ ଦେଲାବେଳେ ବ୍ୟକ୍ତିର ରାଷ୍ଟ୍ରୀୟତା, ଜାତି, ସମ୍ପ୍ରଦାୟ ଓ ଉତ୍ପୀଡ଼ନର ଭୟାବହତା ଉପରେ ସମୁଚିତ ଧ୍ୟାନ ଦିଆଯାଇଥାଏ ।

ଆମ ଦେଶ ଆଫଗାନିସ୍ତାନ, ଶ୍ରୀଲଙ୍କା, ମିଆଁମାର, କଙ୍ଗୋ, ଇରିଷ୍ଟ୍ରିୟା, ଇରାନ, ଇରାକ, ସୋମାଲିଆ ଓ ସୁଦାନ ଭଳି ଦେଶରୁ ଆସୁଥିବା ଶରଣାର୍ଥୀମାନଙ୍କୁ ନିଃସଙ୍କୋଚରେ ସାହାଯ୍ୟ କରୁଥିବାବେଳେ ପାକିସ୍ତାନରୁ ଆସୁଥିବା ହିନ୍ଦୁଙ୍କୁ ଏହି ସୁବିଧା ସୁଯୋଗରୁ ବଂଚିତ କରୁଥିବା ପରିଲକ୍ଷିତ ହେଉଛି। ୯୦ଟି ଦେଶର ଲୋକଙ୍କୁ ଭାରତ ଆସିବାକୁ ଭିସା ଦେବାର ବ୍ୟବସ୍ଥା ରହିଛି। ଆମ ସମ୍ବିଧାନର ଷଷ୍ଠ ଅନୁଚ୍ଛେଦ ଅନୁଯାୟୀ ଅବିଭାଜିତ ଭାରତର ଲୋକମାନେ ସ୍ୱାଭାବିକ ନାଗରିକ ହୋଇଥିଲେ ମଧ୍ୟ ପାକିସ୍ତାନରୁ ଆସୁଥିବା ହିନ୍ଦୁମାନଙ୍କ ପ୍ରତି ସରକାର ସହାନୁଭୂତି ପ୍ରଦର୍ଶନ ନ କରିବା ଘୋର ପରିତାପର ବିଷୟ।

ଖାଲି ପାକିସ୍ତାନୀ ହିନ୍ଦୁ କାହିଁକି, ୧୯୯୦ ମସିହାରୁ କାଶ୍ମୀର ବିସ୍ଥାପିତ ହୋଇ ଦିଲ୍ଲୀ ଶରଣାର୍ଥୀ ଶିବିରମାନଙ୍କରେ ଆଶ୍ରୟ ନେଇଥିବା ସାଢ଼େ ତିନିଲକ୍ଷ ହିନ୍ଦୁମାନଙ୍କ ଘରବାହୁଡ଼ା ବି ସରକାରୀ ଉଦାସୀନତା ଯୋଗୁଁ ଅଦ୍ୟାବଧି ସମ୍ଭବ ହୋଇପାରିନାହିଁ। ହିନ୍ଦୁମାନଙ୍କ ପ୍ରତି ସଙ୍ଗଠିତ ଅତ୍ୟାଚାର ହେଲେ ତା'ର ପ୍ରତିକାର ନକରିବା କେଉଁ ନ୍ୟାୟରେ ଧର୍ମନିରପେକ୍ଷତା ତାହା ବୁଝିବା କଷ୍ଟକର। ଆସାମ ରାଜ୍ୟରେ ପ୍ରତି ସାଧାରଣ ନିର୍ବାଚନ ଅବ୍ୟବହିତ ପୂର୍ବରୁ ସାମ୍ପ୍ରଦାୟିକ ଦଙ୍ଗା ଏକ ସାଧାରଣ ଘଟଣାରେ ପରିଣତ ହୋଇଛି। ସେଥିପାଇଁ ହିନ୍ଦୁ ସଙ୍ଗଠନଗୁଡ଼ିକ ଉପରେ ଦୋଷ ଲଦିଦେଇ ତଥାକଥିତ ଧର୍ମନିରପେକ୍ଷବାଦୀମାନେ ନିଜର ମୁସଲିମ ଭୋଟବ୍ୟାଙ୍କକୁ ନିଶ୍ଚିତ କରିଥାନ୍ତି। ଏକ ସର୍ବେକ୍ଷଣରୁ ପ୍ରାପ୍ତ ତଥ୍ୟ ଅନୁଯାୟୀ ବେଆଇନ ବାଂଲାଦେଶୀ ମୁସଲମାନ ଅନୁପ୍ରବେଶକାରୀମାନେ ଆସାମର ୫୬ ଓ ପଶ୍ଚିମବଙ୍ଗର ୫୩ଟି ବିଧାନସଭା ନିର୍ବାଚନମଣ୍ଡଳୀରେ ପ୍ରାର୍ଥୀମାନଙ୍କର ଭାଗ୍ୟ ନିର୍ଦ୍ଧାରଣ କରୁଛନ୍ତି।

ରାଜନୀତିକୁ ପେସାଭାବେ ସ୍ୱୀକାର କରିଥିବା ଲୋକେ ପିଠି ଥାପୁଡ଼ା ନୀତି ମାଧ୍ୟମରେ ଭୋଟବ୍ୟାଙ୍କ ରାଜନୀତି କରିବା ଘୋର ପରିତାପର ବିଷୟ। ଦେଶରେ ଜାତି ଧର୍ମ ନିର୍ବିଶେଷରେ ସମାନ ଆଚରଣ ଓ ଦଣ୍ଡ ସଂହିତା ଲାଗୁହେଲେ ତାହା ବାସ୍ତବିକ ଧର୍ମନିରପେକ୍ଷତା ହେବ। ବିଶ୍ୱର ଯେକୌଣସି କୋଣରେ ମୁସଲମାନ ଓ ଖ୍ରୀଷ୍ଟିଆନ ଧର୍ମାବଲମ୍ବୀମାନଙ୍କ ସ୍ୱାର୍ଥହାନୀ ହେଲେ ପୃଥିବୀର ବହୁ ଦେଶ ସେମାନଙ୍କୁ ସହାୟତା କରିବାକୁ ଆଗେଇ ଆସୁଥିଲାବେଳେ ଅକଥନୀୟ ଅତ୍ୟାଚାର ଭୋଗକରୁଥିବା ହିନ୍ଦୁମାନଙ୍କୁ ପାଇଁ ଭାରତ ହିଁ ଏକମାତ୍ର ଆଶା ଓ ଭରସା ଏବଂ ଆଶ୍ରୟସ୍ଥଳ। ତେଣୁ କେନ୍ଦ୍ରରେ ଥିବା ମୋଦି ସରକାର ହିନ୍ଦୁ ଶରଣାର୍ଥୀମାନଙ୍କ ପାଇଁ ଏକ ସ୍ୱତନ୍ତ୍ର ଆଇନ ପ୍ରଣୟନ କରି ସେମାନଙ୍କୁ ଭାରତରେ ଥଇଥାନ କରାଇବାର ବ୍ୟବସ୍ଥା କରିବା ଅତ୍ୟନ୍ତ ଜରୁରୀ।

*ସମାଜ, ୩୧.୧୨.୨୦୧୪*

# ବୌଦ୍ଧଧର୍ମର ପୁନଃପ୍ରତିଷ୍ଠାତା ମହାମାନବ ଅନଗାରିକ ଧର୍ମପାଳ

ଊନବିଂଶ ଶତାବ୍ଦୀର ଶେଷ ଆଡ଼କୁ ବୌଦ୍ଧଧର୍ମର ପୁନରୁତ୍‌ଥାନର ଅଯମାରମ୍ଭ ହୋଇଥିଲା । ଏହି ପବିତ୍ର କାର୍ଯ୍ୟରେ ଯେଉଁ ବ୍ୟକ୍ତି ଜଣକ ସାରା ଜୀବନ ନିଜକୁ ଉତ୍ସର୍ଗ କରିଥିଲେ ସେ ହେଉଛନ୍ତି ମହାମାନବ ଅନଗାରିକ ଧର୍ମପାଳ । ଦକ୍ଷିଣ ସିଂହଳର ମତାରାରଠାରେ ୧୭ ସେପ୍ଟେମ୍ବର ୧୮୬୪ ମସିହାରେ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଥିଲା ଡନ୍ କାରୋଲିସ ହେୱାୱିଥରନା ଓ ମାତାଙ୍କ ନାମ ମଲ୍ଲିକା । ଜନ୍ମବେଳେ ତାଙ୍କ ନାମକରଣ କରାଯାଇଥିଲା ଡାଭିଡ୍ ହେୱାୱିଥରନା । ଅନଗାରିକ ଧର୍ମପାଳଙ୍କ ସମ୍ବନ୍ଧରେ ଓଡ଼ିଶାରେ ଚର୍ଚ୍ଚା କମ୍ । ଅନଗାରିକ ଧର୍ମପାଳଙ୍କ ଭଳି ତ୍ୟାଗବୀର ବିରଳ ।

ଡାଭିଡ୍ ହେୱାୱିଥରନାଙ୍କୁ ୧୦ ବର୍ଷ ହୋଇଥିବାବେଳେ କଲମ୍ବୋଠାରେ ଅବସ୍ଥିତ ସେଣ୍ଟ ବେନେଡିକ୍ଟ ଇନ୍‌ଷ୍ଟିଚ୍ୟୁଟ୍‌ରେ ସେ ପାଠ ପଢୁଥିଲେ । ସେହି ସ୍କୁଲରେ ପ୍ରତ୍ୟେକ ଅଧଘଣ୍ଟାରେ ଯୀଶୁଖ୍ରୀଷ୍ଟଙ୍କ ମା' ଭର୍ଜିନ ମେରୀଙ୍କ ପ୍ରଶଂସାରେ ଛାତ୍ରମାନଙ୍କୁ ପ୍ରାର୍ଥନା କରିବାକୁ ପଡୁଥିଲା । ଏହି ବିଦ୍ୟାଳୟରେ ତାଙ୍କୁ ଖ୍ରୀଷ୍ଟଧର୍ମ ଗ୍ରହଣ କରିବାକୁ ବାଧ କରାଯାଇଥିଲା । କିନ୍ତୁ ଡାଭିଡ୍ ସେହି ପ୍ରସ୍ତାବକୁ ଦୃଢ଼ତାର ସହିତ ପ୍ରତ୍ୟାଖ୍ୟାନ କରିଦେଇଥିଲେ । ତେଣୁ ମେ' ୧୮୭୬ ମସିହାରେ ସେଣ୍ଟ ବେନେଡିକ୍ଟ ସ୍କୁଲ କର୍ତ୍ତୃପକ୍ଷ ତାଙ୍କୁ ସ୍କୁଲରୁ ବିତାଡ଼ିତ କରିଥିଲେ । ସ୍କୁଲ କର୍ତ୍ତୃପକ୍ଷଙ୍କର ଏହି ଆଚରଣ ଡାଭିଡ୍‌ଙ୍କ ଶିଶୁମନରେ ଏକ ଦାରୁଣ ଆଘାତ ପହଞ୍ଚାଇଥିଲା । ପୁଣି ୧୮୭୮ ମସିହାରେ ସେ ଉତ୍ତର କଲମ୍ବୋର ସେଣ୍ଟ୍ ଥୋମାସ କଲେଜିଏଟ୍ ସ୍କୁଲରେ ଅଧ୍ୟୟନ କରୁଥିଲାବେଳେ ସେଠାର ପ୍ରଧାନ ଶିକ୍ଷକ ୱାର୍ଡେନ୍ ମିଲର ବୁଦ୍ଧଙ୍କ ପବିତ୍ର ଜନ୍ମ ଦିବସ ପାଳନ କରିବାକୁ ଡାଭିଡଙ୍କୁ ଗୋଟିଏ ଦିନ ଛୁଟି ଦେଲେନାହିଁ । ଡାଭିଡ୍ ସ୍କୁଲରୁ ବାହାରକୁ ଆସି ବୁଦ୍ଧ ମନ୍ଦିରକୁ ପ୍ରାର୍ଥନା କରିବାକୁ ଯାଉଥିଲାବେଳେ ୱାର୍ଡେନ ମିଲର ତାଙ୍କୁ ବେତରେ ନିଷ୍ଠୁର ପ୍ରହାର କରିଥିଲେ । କିନ୍ତୁ ଏଥିରେ ଡାଭିଡ୍ ଭୟଭୀତ ନହୋଇ ଗୌତମ ବୁଦ୍ଧଙ୍କ ପ୍ରତି ବିଶେଷ ଶ୍ରଦ୍ଧାବାନ ହୋଇଥିଲେ ।

ଡାଭିଡ୍ ହେୱାୱିଥରନାଙ୍କର ୧୮୮୩ ମସିହାରେ ପାରମ୍ପରିକ ଶିକ୍ଷାର ପରିସମାପ୍ତି ଘଟିଥିଲା। ସେହି ସମୟରେ ତାଙ୍କର କଲମ୍ବୋର ଭିଦ୍ୟୋଦୟ ବୌଦ୍ଧ ଶିକ୍ଷାପୀଠ ପିରିଭେନାଠାରେ କର୍ଣ୍ଣେଲ ହେନେରି ଷ୍ଟିଲ ଓଲକଟ ଏବଂ ଋଷିଆର ମହିଳା ମାଡାମ୍ ବ୍ଲାଭସ୍କିଙ୍କ ସହିତ ସାକ୍ଷାତ ହୋଇଥିଲା। ଏହି ସାକ୍ଷାତ ଓ ଆଲୋଚନା ତାଙ୍କ ଉପରେ ଗଭୀର ପ୍ରଭାବ ପକାଇଥିଲା ଓ ତାଙ୍କ ଜୀବନର ଗତିପଥ ବଦଳାଇ ଦେଇଥିଲା। ସେ ସମୟରେ ଶ୍ରୀଲଙ୍କାରେ ଖ୍ରୀଷ୍ଟିଆନ ଧର୍ମଯାଜକମାନେ ବହୁସଂଖ୍ୟାରେ ବିଦ୍ୟାଳୟମାନ ଖୋଲି ଇଂରେଜୀ ଶିକ୍ଷା ଦେବା ସହିତ ବାଇବେଲ୍ ସମ୍ବନ୍ଧୀୟ ଶିକ୍ଷା ଉପରେ ଗୁରୁତ୍ୱ ଦେଉଥିଲେ। ସିଂହଳୀମାନଙ୍କୁ ସେମାନଙ୍କ ଜାତି, ଧର୍ମ, ବର୍ଣ୍ଣ ଓ ସଂସ୍କୃତି ଯୋଗୁଁ ସେମାନେ ଲଜ୍ଜିତ ହେବା ଉଚିତ ବୋଲି ବୁଝାଉଥିଲେ। ଖ୍ରୀଷ୍ଟିଆନ ମିଶନାରୀମାନେ ସେମାନଙ୍କ ପ୍ରଚାର ଦ୍ୱାରା ସିଂହଳର ଜାତୀୟ ଚରିତ୍ରକୁ କଳୁଷିତ କରିବାରେ ଲାଗିଛନ୍ତି ଦେଖି ସେ ବ୍ୟଥିତ ହୋଇଥିଲେ। ତେଣୁ ଡାଭିଡ ହେୱାୱିଥରନା ସ୍ଥାୟୀ ସରକାରୀ ଚାକିରି ମୋହକୁ ପରିତ୍ୟାଗକରି ବୌଦ୍ଧଧର୍ମର ପ୍ରଚାର ଓ ଧର୍ମର ସାରତତ୍ତ୍ୱକୁ ଲୋକମାନଙ୍କ ନିକଟରେ ପହଞ୍ଚାଇବାପାଇଁ ନିଜ ଜୀବନକୁ ଉତ୍ସର୍ଗ କରିବାର ଦୃଢ଼ ନିଷ୍ପତ୍ତି ଗ୍ରହଣ କରିଥିଲେ। ଏହିଠାରୁ ଆରମ୍ଭ ହେଲା ତାଙ୍କର ନୂତନ ଜୀବନର କର୍ମଧାରା।

ମାଡାମ ବ୍ଲାଭସ୍କିଙ୍କ ସହ ଥିଓସୋଫିକାଲ ସୋସାଇଟିର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ସମ୍ବନ୍ଧରେ ଅଧ୍ୟୟନ କରିବା ପାଇଁ ଦକ୍ଷିଣ ଭାରତର ଆଡ୍ୟାର ସହରକୁ ଯାଇଥିଲେ। ଥିଓସୋଫିକାଲ ସୋସାଇଟିର କାର୍ଯ୍ୟାବଳୀ ତାଙ୍କୁ ବହୁ ପ୍ରଭାବିତ କରିଥିଲା। ୧୮୮୬ ମସିହାରେ ଇଂରେଜ ଔପନିବେଶିକ ଶାସନ ଅଧୀନରେ ଥିବା ଦେଶମାନଙ୍କର ବୌଦ୍ଧଧର୍ମାବଲମ୍ବୀମାନଙ୍କ ସ୍ୱାର୍ଥ ସୁରକ୍ଷା ନିମନ୍ତେ ସଂଘର୍ଷ କରିବା ପାଇଁ ସେ 'ବୁଦ୍ଧିଷ୍ଟ ଡିଫେନ୍ସ କମିଟି' ଗଠନ କରିଥିଲେ ଏବଂ ୧୮୯୦ ମସିହା ପର୍ଯ୍ୟନ୍ତ ଏହାର ସହକାରୀ ସଂପାଦକ ଥିଲେ। ସେ 'ଏସିଆର ଆଲୋକ' (Light of Asia)ର ପ୍ରଖ୍ୟାତ ଲେଖକ ସାର୍ ଏଡୱିନ ଆର୍‌ନୋଲ୍‌ଡଙ୍କ ଲଣ୍ଡନରେ ଟେଲିଗ୍ରାଫ୍ ପାଇଁ ପ୍ରକାଶିତ କେତୋଟି ସନ୍ଦର୍ଭ ଅଧ୍ୟୟନ କରି ବୁଦ୍ଧଗୟା ଶ୍ରୀ ମହାବୋଧି ମନ୍ଦିରର ଶୋଚନୀୟ ଦୂରବସ୍ଥା ସମ୍ପର୍କରେ ଅବଗତ ହେଲେ। ଏହି ସନ୍ଦର୍ଭଗୁଡ଼ିକରେ ବର୍ଣ୍ଣିତ ବିଷୟବସ୍ତୁ ତାଙ୍କୁ ବିଚଳିତ କରିଥିଲା ଓ ସେ ତାଙ୍କର ଇଂରାଜୀ ଖ୍ରୀଷ୍ଟିୟାନ୍ ନାଁ ଡନ ଡାଭିଡ୍ ହେୱାୱିଥରନାକୁ ପରିବର୍ତ୍ତନ କରି ଧର୍ମପାଳ ହେୱାୱିଥରନା (ଧର୍ମର ଅଭିଭାବକ) ରଖିଥିଲେ।

୧୮୮୮ ମସିହାରେ ସେ 'ବୁଦ୍ଧିଷ୍ଟ' ନାମରେ ଗୋଟିଏ ସମ୍ବାଦପତ୍ର ପ୍ରକାଶ କଲେ ଓ ମିଷ୍ଟର ଲିଡବିଟର ଏହାର ସଂପାଦକ ରହିଲେ। ୧୮୮୯ ଖ୍ରୀଷ୍ଟାବ୍ଦରେ ସେ ଜାପାନ ପରିଦର୍ଶନ କରି ସେଠାରେ ବୌଦ୍ଧଧର୍ମ ପ୍ରତି ଲୋକଙ୍କ ଅନୁରକ୍ତି ଦେଖି ମୁଗ୍ଧ ହୋଇଥିଲେ। ସେଠାରେ ସେ କେତେକ ପ୍ରଭାବଶାଳୀ ବୌଦ୍ଧଧର୍ମାବଲମ୍ବୀମାନଙ୍କ ସାଙ୍ଗରେ ସଂପର୍କ ସ୍ଥାପନ କରିବାରେ ସଫଳ ହୋଇଥିଲେ। ଡିସେମ୍ବର ୧୮୯୦ ମସିହାରେ ଧର୍ମପାଳ ଜାପାନୀ ବୌଦ୍ଧଭିକ୍ଷୁ କୋଜେନ୍ ଗୁନରଥନଙ୍କ ସହ ଭାରତ ଆସି ଆଡ୍ୟାରଠାରେ କିଛିଦିନ ବିତାଇବା ପରେ ଜାନୁୟାରୀ ୧୮୯୧ ମସିହାରେ ଇସିପଥନ ମୃଗବିହାର, ସାରନାଥ ଓ ତା'ପରେ ବୁଦ୍ଧଗୟା ପରିଦର୍ଶନରେ ଯାଇଥିଲେ। ପ୍ରଥମଥର ପାଇଁ ଜାନୁୟାରୀ ୨୨, ୧୮୯୧ରେ ଧର୍ମପାଳ ବୁଦ୍ଧଗୟା ମନ୍ଦିର ଓ ମହାବୋଧିଦ୍ରୁମ ପରିଦର୍ଶନ କରି ଏହାର ଦୂରବସ୍ଥା ଦେଖି ମର୍ମାହତ ହୋଇଥିଲେ। ବୁଦ୍ଧଗୟା ମନ୍ଦିର ପରିସର ହିନ୍ଦୁ ମହନ୍ତଙ୍କ ଅକ୍ତିଆରରେ ରହିଥିଲା। ଏହି ମନ୍ଦିରକୁ ପ୍ରବେଶ କରିବାକୁ ବୌଦ୍ଧଧର୍ମାବଲମ୍ବୀମାନଙ୍କୁ ବାରଣ କରାଯାଉଥିଲା। ସେଠାରେ ସେ ତିନିମାସକାଳ ରହି ଏହି ମନ୍ଦିରର ପୁନରୁଦ୍ଧାର ଓ ସଂରକ୍ଷଣ କାର୍ଯ୍ୟ କରିବା ପାଇଁ ଶପଥ ନେଇଥିଲେ। ଏହି ଉଦ୍ଦେଶ୍ୟକୁ ଫଳବତୀ କରିବା ପାଇଁ ସେ ମେ' ୩୧ରେ କଲମ୍ବୋଠାରେ 'ବୁଦ୍ଧଗୟା ମହାବୋଧି ସୋସାଇଟି' ନାମରେ ଏକ ସଂଗଠନ ସ୍ଥାପନ କରିଥିଲେ।

୧୮୯୩ ମସିହା ସେପ୍ଟେମ୍ବର ମାସରେ ସେ ଚିକାଗୋଠାରେ ଅନୁଷ୍ଠିତ ହୋଇଥିବା 'ବିଶ୍ୱ ଧର୍ମ ସମ୍ମିଳନୀ' (World Parliament of Religion)ରେ ଯୋଗଦେଇଥିଲେ। ଏହି ଧର୍ମସଭାରେ ସ୍ୱାମୀ ବିବେକାନନ୍ଦ ୧୧ ସେପ୍ଟେମ୍ବରରେ ହିନ୍ଦୁ ଧର୍ମ ସମ୍ପର୍କରେ ତାଙ୍କ ବକ୍ତବ୍ୟ ରଖି ସାରା ବିଶ୍ୱକୁ ଚମକୃତ କରିଦେଇଥିଲେ। ୧୮ ସେପ୍ଟେମ୍ବରରେ ଅନଗାରିକ ଧର୍ମପାଳ ତାଙ୍କର ବକ୍ତୃତା 'ବୁଦ୍ଧଙ୍କ ପାଖରେ ବିଶ୍ୱ ଋଣୀ' ପ୍ରଦାନ କରି ସେଠାରେ ଯୋଗଦାନ କରିଥିବା ଅଂଶଗ୍ରହଣକାରୀଙ୍କୁ ଅଭିଭୂତ କରିଦେଇଥିଲେ ଓ ସଙ୍ଗେ ସଙ୍ଗେ କେତେକ ଆମେରିକୀୟ ଭଦ୍ରଲୋକ ଓ ମହିଳା ବୌଦ୍ଧଧର୍ମ ଗ୍ରହଣ କରିବାକୁ ସେମାନଙ୍କର ଇଚ୍ଛା ପ୍ରକାଶ କରିଥିଲେ। ଜଣେ ଜର୍ମାନ ବିଦ୍ୱାନ ଡକ୍ଟର ପଲ କାରସ (Dr. Paul Carus) ଆମେରିକାରେ ତତ୍‌କ୍ଷଣାତ୍ ମହାବୋଧି ସୋସାଇଟିର ଶାଖା ପ୍ରତିଷ୍ଠା କରିଥିଲେ। ୨୬ ସେପ୍ଟେମ୍ବର ୧୮୯୩ ମସିହାରେ ଚାର୍ଲସ୍ ଟି. ଷ୍ଟ୍ରାଉସ୍ (Charles T. Strauss) ଅନଗାରିକ ଧର୍ମପାଳଙ୍କଠାରୁ

ବୌଦ୍ଧଧର୍ମରେ ଦୀକ୍ଷିତ ହୋଇଥିଲେ। ସ୍ୱାମୀ ବିବେକାନନ୍ଦ ଧର୍ମପାଳଙ୍କ ବୌଦ୍ଧଧର୍ମ ସମ୍ପର୍କରେ ପ୍ରଦାନ କରିଥିବା ବକ୍ତୃତାକୁ ଭୂୟସୀ ପ୍ରଶଂସା କରିଥିଲେ ଓ ଅନଗାରିକ ଧର୍ମପାଳଙ୍କୁ ବ୍ୟକ୍ତିଗତ ଭାବରେ ବହୁ ଆଦର ଓ ସମ୍ମାନ ପ୍ରଦର୍ଶନ କରିଥିଲେ। ସେହି ସମୟଠାରୁ ସ୍ୱାମୀ ବିବେକାନନ୍ଦ ଓ ଅନଗାରିକ ଧର୍ମପାଳ ଦରିଦ୍ର ଜନସାଧାରଣଙ୍କୁ ସେମାନଙ୍କ ଅଜ୍ଞତା, ନିରକ୍ଷରତା, ଅଭାବ, ଅନାଟନ, ଦାରିଦ୍ର୍ୟ, ଶୋଷଣରୁ ମୁକ୍ତ କରିବାକୁ ଆଜୀବନ ଉଦ୍ୟମ କରିଥିଲେ। ସ୍ୱାମୀ ବିବେକାନନ୍ଦ ପ୍ରତିଷ୍ଠା କରିଥିଲେ ରାମକୃଷ୍ଣ ମିଶନ୍ ଓ ସେହି ଲକ୍ଷ୍ୟ ନେଇ ଅନଗାରିକ ଧର୍ମପାଳ ଭାରତର ମହାବୋଧି ସୋସାଇଟି ସ୍ଥାପନ କରିଥିଲେ। ଅନଗାରିକ ଧର୍ମପାଳ ଭାରତର ମର୍ଯ୍ୟାଦା ବିଶ୍ୱ ଦରବାରରେ କିଭଳି ବୃଦ୍ଧି ପାଇବ ସେଥିପାଇଁ ସଦାସର୍ବଦା ଚେଷ୍ଟିତ ଥିଲେ। ତାଙ୍କ କାର୍ଯ୍ୟାବଳୀକୁ ସମୀକ୍ଷା କରି ବଙ୍ଗଳାର ବିଶିଷ୍ଟ ଶିକ୍ଷାବିତ୍ ପ୍ରଫେସର ବିନୟ ସରକାର ଲେଖିଥିଲେ ଯେ, "ଧର୍ମପାଳଙ୍କ ଉନ୍ନତିମୂଳକ କାର୍ଯ୍ୟ କେବଳ ବଙ୍ଗଳାରେ ସୀମିତ ନୁହେଁ, ତାହା ସାରା ଭାରତ ଓ ଏସିଆ ମହାଦେଶରେ ସଂପ୍ରସାରିତ ହୋଇଛି।"

ଅନଗାରିକ ଧର୍ମପାଳଙ୍କ ପ୍ରଚେଷ୍ଟାରେ ୧୯୧୫ ମସିହାରେ 'ଭାରତର ମହାବୋଧି ସୋସାଇଟି' ପଞ୍ଜୀକୃତ ଅନୁଷ୍ଠାନ ହୋଇପାରିଥିଲା। ଭାରତର ଉଚ୍ଚଶିକ୍ଷାର ପ୍ରବର୍ତ୍ତକ ଡକ୍ଟର ଆଶୁତୋଷ ମୁଖାର୍ଜୀ ଏହାର ସଭାପତି ଓ ଅନଗାରିକ ଧର୍ମପାଳ ଏହାର ସାଧାରଣ ସଂପାଦକ ଭାବରେ ନିର୍ବାଚିତ ହୋଇଥିଲେ। କଲିକତାର କଲେଜ ଷ୍ଟ୍ରିଟରେ ସେ ଗୋଟିଏ ଜମି କିଣି ସେଠାରେ ୧୯୨୦ ମସିହା ନଭେମ୍ବର ୨୦ ତାରିଖରେ 'ଶ୍ରୀ ଧର୍ମରାଜିକା ବିହାର' ପ୍ରତିଷ୍ଠା କରିଥିଲେ। ସାରନାଥରେ ମୂଳଗନ୍ଧିକୁଟି ବିହାର ନିର୍ମାଣ ଓ ଉଦ୍‌ଘାଟନ ଅନଗାରିକ ଧର୍ମପାଳଙ୍କ ଜୀବନବ୍ୟାପୀ ସଂଗ୍ରାମ ଓ ତ୍ୟାଗର ସର୍ବଶ୍ରେଷ୍ଠ ଗୌରବ ଓ ସଫଳତା ଅଟେ। ୨୯ ଏପ୍ରିଲ ୧୯୩୩ରେ ସାରନାଥଠାରେ ତାଙ୍କର ଦେହାନ୍ତ ହୋଇଥିଲା। "ତାଙ୍କ ଶେଷ ଉଇଲ୍‌ରେ ସେ ଭାରତରେ ପୁନର୍ଜନ୍ମର ଆଶାପୋଷଣ କରିଛନ୍ତି। ଭାରତ ପ୍ରତି ତାଙ୍କର ମମତା ଏତେ ବେଶି ଯେ ତାଙ୍କ ଜନ୍ମଭୂମି ଛାଡ଼ି ସାରନାଥରେ ମରିବାକୁ ସେ ପସନ୍ଦ କରିଥିଲେ। ବୁଦ୍ଧଗୟା, ସାରନାଥ, ବାରାଣସୀ, କଲିକତାରେ ବୌଦ୍ଧଧର୍ମର ପୁନଃପ୍ରତିଷ୍ଠା ତାଙ୍କୁ ଯେତିକି ଭାରତୀୟ କରିଚି, ବର୍ମା, ଥାଇଲାଣ୍ଡ, ସିଲୋନ, ଭାରତ, ଚୀନ, ଜାପାନ, ଆମେରିକା, ଇଂଲଣ୍ଡରେ ବୌଦ୍ଧଧର୍ମର ପ୍ରଚାର ପ୍ରସାର ତାଙ୍କୁ ସେତିକି ବିଶ୍ୱନାଗରିକ କରିଚି। କିନ୍ତୁ ସେ ତ ଅ+ନାଗରିକ। ପୁଣି ଅଣ+ଆଗାରିକ। ତାଙ୍କର ନା ରାଜ୍ୟ ଅଛି, ନା ଘର। ତାଙ୍କର କାମ ହିଁ ତାଙ୍କର ପରିଚୟ।"

*ସମାଜ, ୧୬.୦୯.୨୦୧୪*

# ଓଡ଼ିଶାରେ ବିଧାନ ପରିଷଦ ଗଠନ ସପକ୍ଷରେ

ଆମ ରାଜ୍ୟର ନେତୃବର୍ଗଙ୍କ ମଧ୍ୟରେ ଏକ ବିଚିତ୍ର ମାନସିକତା ଦେଖିବାକୁ ମିଳୁଛି। ସରକାରରେ ଥିବା ଦଳ ଯେଉଁ ପ୍ରସ୍ତାବ ଆଗତ କରୁଛନ୍ତି ବିପକ୍ଷରେ ଥିବା ଦଳଗୁଡ଼ିକ ସେଥିର ଭଲ ଦିଗଟିକୁ ଅଣଦେଖା କରି ତ୍ରୁଟିଗୁଡ଼ିକୁ ଚର୍ଚ୍ଚା କରିବାରେ ବିଶେଷ ଆଗ୍ରହ ଦେଖାଉଛନ୍ତି। ଏହି ପରିପ୍ରେକ୍ଷୀରେ ସରକାରୀ ଦଳର ରାଜ୍ୟରେ ବିଧାନ ପରିଷଦ ଗଠନ ପ୍ରସଙ୍ଗକୁ ଉଦାହରଣ ରୂପେ ଗ୍ରହଣ କରାଯାଇପାରେ। ୨୦୦୭ ମସିହାରେ ୟୁପିଏ ସରକାର ରାଜ୍ୟମାନଙ୍କୁ ଜଣାଇଥିଲେ ଯେ ଯେଉଁଠାରେ ବିଧାନ ପରିଷଦ ନାହିଁ ସେ ରାଜ୍ୟଗୁଡ଼ିକ ବିଧାନ ପରିଷଦ ପ୍ରତିଷ୍ଠା ସମ୍ପର୍କରେ ଆଗ୍ରହୀ ଥିଲେ କେନ୍ଦ୍ରକୁ ପ୍ରସ୍ତାବ ପଠାନ୍ତୁ। ରାଜ୍ୟମାନଙ୍କରେ ବିଧାନ ପରିଷଦ ଗଠନର ବ୍ୟବସ୍ଥା ସମ୍ବିଧାନର ୧୬୮ ଓ ୧୬୯ ଧାରା ଦ୍ୱାରା ସ୍ଥିରୀକୃତ। କେନ୍ଦ୍ରରେ ରାଜ୍ୟସଭା ଢାଞ୍ଚାରେ ରାଜ୍ୟସ୍ତରରେ ପରୋକ୍ଷ ନିର୍ବାଚନ ମାଧ୍ୟମରେ ବିଧାନ ପରିଷଦ ଗଠନ ହେବାର ବ୍ୟବସ୍ଥା ରହିଛି। ବିଳମ୍ବରେ ହେଉପଛେ ଓଡ଼ିଶା ଶାସନରେ ଥିବା ବିଜୁ ଜନତା ଦଳ ରାଜ୍ୟରେ ବିଧାନ ପରିଷଦର ଯେ ଗୁରୁତ୍ୱ ଉପଲବ୍ଧି କରିଛନ୍ତି ତାହା ସ୍ୱାଗତଯୋଗ୍ୟ। କେନ୍ଦ୍ରରେ ରାଜ୍ୟସଭା ଭଳି ରାଜ୍ୟରେ ବିଧାନ ପରିଷଦ ଗଠନର ଉଦ୍ଦେଶ୍ୟ ସମ୍ପର୍କରେ କୁହାଯାଇପାରେ ଯେ ନିର୍ବାଚନ ପ୍ରକ୍ରିୟାରେ ଭାଗ ନେଇପାରୁ ନଥିବା ବୁଦ୍ଧିଜୀବୀ, କଳା ଓ ସଂସ୍କୃତି, କ୍ରୀଡ଼ା, ବିଜ୍ଞାନ ଆଦି କ୍ଷେତ୍ରରେ ପାରଦର୍ଶିତା ହାସଲ କରିଥିବା ପ୍ରତିଷ୍ଠିତ ବ୍ୟକ୍ତିବିଶେଷଙ୍କୁ ସେମାନଙ୍କ ସୃଜନଶୀଳ ଚିନ୍ତାକୁ ପରିପ୍ରକାଶ କରିବାର ସୁଯୋଗ ଦେବାକୁ ବିଧାନ ପରିଷଦ ପ୍ରକୃଷ୍ଟ ସ୍ଥାନ ହେବ। ବିଧାନ ପରିଷଦର ମଧ୍ୟ ଆଇନ ପ୍ରଣୟନ କରିବାର କ୍ଷମତା ରହିଛି। ତେଣୁ ଅପେକ୍ଷାକୃତ ଅଭିଜ୍ଞ ସଭ୍ୟମାନଙ୍କ ଦ୍ୱାରା ରାଜ୍ୟବାସୀଙ୍କ ହିତ ପାଇଁ ଏଠାରେ ବିଲ୍ ଉପସ୍ଥାପନ ହୋଇପାରିବ ଏବଂ ତାହା ବିଧାନସଭାରେ ଗ୍ରହଣ ହେଲାପରେ ଆଇନରେ ପରିଣତ ହେବ। ସରକାରଙ୍କ ବିରୋଧରେ ପରିଷଦ ଅନାସ୍ଥା ପ୍ରସ୍ତାବ କିମ୍ବା ନିନ୍ଦା ପ୍ରସ୍ତାବ ଆଗତ କରିବାର କ୍ଷମତା ନାହିଁ। କିନ୍ତୁ ପରିଷଦ ପ୍ରଶାସନଠାରୁ ଯେକୌଣସି ବିଷୟରେ କୈଫିୟତ୍ ତଲବ କରିପାରିବେ।

ବର୍ତ୍ତମାନ ଦେଶରେ ଆନ୍ଧ୍ରପ୍ରଦେଶ, ଉତ୍ତରପ୍ରଦେଶ, ବିହାର, କର୍ଣ୍ଣାଟକ, ମହାରାଷ୍ଟ୍ର, ତେଲେଙ୍ଗାନା ଓ ଜାମ୍ମୁ-କାଶ୍ମୀରରେ ବିଧାନ ପରିଷଦ କାର୍ଯ୍ୟକ୍ଷମ ଅଛି। ନିକଟରେ ଆସାମରେ ବିଧାନ ପରିଷଦ ଗଠନ ପାଇଁ ସମସ୍ତ ପ୍ରକ୍ରିୟା ଶେଷ ହୋଇଛି। ପୂର୍ବରୁ ପଶ୍ଚିମବଙ୍ଗ, ପଞ୍ଜାବ ଓ ତାମିଲନାଡୁରେ ମଧ୍ୟ ବିଧାନ ପରିଷଦ କାର୍ଯ୍ୟ କରୁଥିଲା। କିନ୍ତୁ ଏବେ ପଶ୍ଚିମବଙ୍ଗ ଓ ପଞ୍ଜାବରେ ବିଧାନ ପରିଷଦକୁ ଉଚ୍ଛେଦ କରାଯାଇଛି।

ବିଜେଡ଼ିର ମୁଖପାତ୍ରମାନେ ପ୍ରକାଶ କରିଛନ୍ତି ଯେ ରାଜ୍ୟର ବ୍ୟବସ୍ଥାପନ ପ୍ରକ୍ରିୟାକୁ ଅଧିକ ଗଣତାନ୍ତ୍ରିକ ଓ ଋଦ୍ଧିମନ୍ତ କରିବା ଲକ୍ଷ୍ୟରେ ବିଧାନ ପରିଷଦ ଗଠନକୁ ତାଙ୍କ ଦଳ ଅଗ୍ରାଧିକାର ଦେଉଛି। ଆମ ରାଜ୍ୟର ସଂସଦୀୟ ବ୍ୟାପାର ମନ୍ତ୍ରୀ ବିକ୍ରମ କେଶରୀ ଆରୁଖଙ୍କ ଅଧ୍ୟକ୍ଷତାରେ ବିଧାନ ପରିଷଦ ଗଠନ ସମ୍ପର୍କୀୟ ବୈଠକ ଅନୁଷ୍ଠିତ ହେବାପରେ ବିଧାୟକମାନଙ୍କର ଏକ ପାଞ୍ଚଜଣିଆ କମିଟି ବିଧାନ ପରିଷଦ ଥିବା ବିଭିନ୍ନ ରାଜ୍ୟକୁ ଗସ୍ତ କରିବା ସ୍ଥିର ହୋଇଛି ଏବଂ ସର୍ବଶେଷ ଖବର ଅନୁଯାୟୀ ଏହି କମିଟି ସେମାନଙ୍କ ଗସ୍ତ କାର୍ଯ୍ୟ ଆରମ୍ଭ କରିସାରିଲେଣି। କିନ୍ତୁ ପରିତାପର ବିଷୟ ଏହି ବୈଠକରେ ବିରୋଧୀ ଦଳର ସଭ୍ୟମାନେ ଭାଗ ନେଇ ନାହାନ୍ତି। ବିରୋଧୀ ଦଳଙ୍କ ବକ୍ତବ୍ୟ ଯେ ମାତ୍ର ୧୧ ମାସ ତଳେ ବିଧାନ ପରିଷଦ ଗଠନ ପାଇଁ କଂଗ୍ରେସ ବିଧାୟକ ଦଳର ମୁଖ୍ୟ ସଚେତକ ପ୍ରସାଦ ହରିଚନ୍ଦନଙ୍କ ପ୍ରସ୍ତାବକୁ ବିଧାନସଭାରେ ବିଜେଡ଼ି ସରକାର ଅଗ୍ରାହ୍ୟ କରିଦେଇଥିଲେ। ଏହା ପୂର୍ବରୁ ୨୦୧୧ ମସିହାରେ ପ୍ରସାଦ ହରିଚନ୍ଦନ ବିଧାନ ପରିଷଦ ଗଠନ ପାଇଁ ବିଧାନସଭାରେ ଏକ ବେସରକାରୀ ବିଲ୍ ଆଗତ କରିଥିଲେ। ୨୦୧୩ ମସିହାରେ ମଧ୍ୟ ବିଧାନ ପରିଷଦ ଗଠନ ପାଇଁ ସେ ପୁନର୍ବାର ବିଧାନସଭାରେ ପ୍ରସ୍ତାବ ରଖିଥିଲେ। ତେବେ ବର୍ତ୍ତମାନ କ'ଣ ଏତେ ଜରୁରୀ ଆବଶ୍ୟକତା ପଡ଼ିଲା ଯେ ବିଧାନ ପରିଷଦ ଗଠନକୁ ନବୀନ ସରକାର ଅଗ୍ରାଧିକାର ଭିତ୍ତିରେ କରିବାକୁ ଚାହୁଁଛନ୍ତି। ଗତ ୫ ତାରିଖରେ ହୋଇଥିବା ଏକ କର୍ମଶାଳାରେ ସମ୍ବାଦର ସମ୍ପାଦକ ଓ ଓଡ଼ିଶାର ଜଣେ ଲୋକପ୍ରିୟ ନେତା ଶ୍ରୀଯୁକ୍ତ ସୌମ୍ୟରଂଜନ ପଟ୍ଟନାୟକ କହିଛନ୍ତି ଯେ ରାଜ୍ୟରେ ଗରିବ ଲୋକଙ୍କୁ ଚାଉଳ, କମ୍ବଳ ବଣ୍ଟନ କରି ରାଜ୍ୟ ସରକାର ସେମାନଙ୍କ ମୁହଁ ବନ୍ଦ କରିଦେଇଥିଲେ। ସାମ୍ବିଧାନିକ ବ୍ୟବସ୍ଥାର ଗୁରୁତ୍ୱପୂର୍ଣ୍ଣ ଅଙ୍ଗ ବିରୋଧୀ ଦଳକୁ ବେଖାତିର କରି ଚାଲିଛନ୍ତି ଏବଂ ବିଧାନ ପରିଷଦରେ ସଭ୍ୟ ପଦ ଲୋଭ ଦେଖାଇ ଏବେ ବୁଦ୍ଧିଜୀବୀ ଗୋଷ୍ଠୀ ଓ ନାଗରିକ ସମାଜକୁ ଦୁର୍ବଳ କରିଦେବାକୁ ଚକ୍ରାନ୍ତ ଆରମ୍ଭ କରିଛନ୍ତି।

ବିଜେଡ଼ିର ମୁଖପାତ୍ର ବିଧାୟକ ଶ୍ରୀ ଅମର ପ୍ରସାଦ ଶତପଥୀ ଓ ଅନ୍ୟମାନେ ବିଭିନ୍ନ ସଭା-ସମିତି ଓ ଗଣମାଧ୍ୟମରେ ବକ୍ତବ୍ୟ ରଖିଲାବେଳେ ବାରମ୍ବାର କହୁଛନ୍ତି ଯେ ବିଧାନ ପରିଷଦ ଗଠନ ହେଲେ ବୁଦ୍ଧିଜୀବୀ, ସମାଜସେବୀ ଓ ନାଗରିକ ସମାଜର ପ୍ରତିନିଧିମାନେ ନିଜର ସ୍ୱାଧୀନ ମତ ବ୍ୟକ୍ତ କରିବାକୁ ଏକ ଉପଯୁକ୍ତ କ୍ଷେତ୍ର ପାଇପାରିବେ। ତେଣୁ ଏହି ପରିଷଦ ଗଠନ କରିବାରେ ସମସ୍ତେ ସହଯୋଗ କରିବାକୁ ଆହ୍ୱାନ ଦେଉଛନ୍ତି। ବିଧାନ ପରିଷଦରେ ଆଲୋଚନାଗୁଡ଼ିକ ଦଳୀୟ ସୁବିଧାବାଦର ଊର୍ଦ୍ଧ୍ୱରେ ଓ ରାଜ୍ୟବାସୀଙ୍କ ହିତରେ ହେବ ବୋଲି ସବୁବେଳେ ଆଶା କରିବା ଉଚିତ ହେବ। ବିଜୁ ଜନତା ଦଳର ସଦସ୍ୟମାନେ ବିଧାନ ପରିଷଦ ଗଠନ ସପକ୍ଷରେ କହିଲାବେଳେ ସର୍ବଦା ରାଜ୍ୟସଭା କଥା ଉଠାଉଛନ୍ତି। ସେମାନଙ୍କ ଯୁକ୍ତି ହେଲା କେନ୍ଦ୍ରରେ ରାଜ୍ୟସଭା ସହିତ ବିଧାନ ପରିଷଦର କାର୍ଯ୍ୟାବଳୀ ତୁଳନୀୟ। ଯଦି ଆମ ରାଜ୍ୟରେ ବିଧାନ ପରିଷଦ ଗଠନ କରିବାକୁ ଦିଆନଯାଏ ତେବେ ରାଜ୍ୟସଭାକୁ ଭାଙ୍ଗିବାର ପ୍ରକ୍ରିୟା ମଧ୍ୟ ଆରମ୍ଭ କରାଯାଉ। ପ୍ରକୃତରେ କହିବାକୁ ଗଲେ ନୀତିଗତ ଭାବରେ ବିଧାନ ପରିଷଦ ଗଠନ ନ ହେବା ପାଇଁ ବିରୋଧୀ ଦଳ ନିକଟରେ କିଛି ବଳିଷ୍ଠ ଯୁକ୍ତି ନାହିଁ। ରାଜ୍ୟର ଆର୍ଥିକ ଅନଟନ ଓ ବର୍ତ୍ତମାନ ବିଧାନସଭାରେ ଦେଖାଦେଉଥିବା ଅବ୍ୟବସ୍ଥାର ଦ୍ୱାହି ଦେଇ ସେମାନେ ବିଧାନ ପରିଷଦ ଗଠନ ନ କରେଇଦେବାକୁ ଯୁକ୍ତି ବାଢୁଛନ୍ତି। ଆମ ରାଜ୍ୟରେ ବିଧାନ ପରିଷଦ ଗଠନ ହେଲେ ସେଥିରେ ସଭ୍ୟ ସଂଖ୍ୟା ୪୯ ରେ ସୀମିତ ରହିବ। ଏକ ତୃତୀୟାଂଶ ସଭ୍ୟ ବିଧାନସଭା ଦ୍ୱାରା ଓ ଅନ୍ୟ ଏକ ତୃତୀୟାଂଶ ସଭ୍ୟ ଜିଲ୍ଲାପରିଷଦ ଓ ପୌରସଭା ଦ୍ୱାରା ନିର୍ବାଚିତ ହେବେ। ରାଜ୍ୟପାଳ ୫ ଜଣଙ୍କୁ ମନୋନୀତ କରିବେ। ଶିକ୍ଷକ ମଣ୍ଡଳୀରୁ ୪ଜଣ ଓ ଗ୍ରାଜୁଏଟ୍ ଛାତ୍ରଛାତ୍ରୀ ୪ ଜଣ ଏବଂ ସାହିତ୍ୟ, ବିଜ୍ଞାନ, କଳା, ସମବାୟ ଆନ୍ଦୋଳନ ଓ ସମାଜସେବା କ୍ଷେତ୍ରରୁ ୪ ଜଣ ପ୍ରତିଷ୍ଠିତ ବ୍ୟକ୍ତିଙ୍କୁ ରାଜ୍ୟପାଳ ମନୋନୀତ କରିବେ। ଏହାଦ୍ୱାରା ଶାସନକଳ ଚଳଚଞ୍ଚଳ ହୋଇପାରିବ ବୋଲି ଆଶା କରାଯାଉଛି।

ବିଧାନସଭାରେ ପାରିତ ହୋଇଥିବା ସମସ୍ତ ବିଲ୍ ଆଲୋଚନା ପାଇଁ ବିଧାନ ପରିଷଦକୁ ଆସିବାର ବ୍ୟବସ୍ଥା ଅଛି। ଯଦି ବିଧାନ ପରିଷଦ ଏହି ବିଲ୍‌ରେ ତ୍ରୁଟିବିଚ୍ୟୁତି ପରିଲକ୍ଷିତ କରେ ତେବେ ପ୍ରଥମ ପର୍ଯ୍ୟାୟରେ ତିନିମାସ ପର୍ଯ୍ୟନ୍ତ ଏହି ବିଲ୍‌ଟିକୁ ସ୍ୱୀକୃତି ନଦେଇ ବିଧାନସଭାକୁ ଫେରାଇ ଦେବ। କିନ୍ତୁ ବିଧାନସଭାରେ ଯଦି ପୁନର୍ବାର ସେହି ବିଲ୍ ପାରିତ ହୋଇ ବିଧାନ ପରିଷଦକୁ ଆସେ ତେବେ ଏକ ମାସ ମଧ୍ୟରେ

ସେ ବିଲ୍‌ଟିକୁ ବିଧାନ ପରିଷଦ ସ୍ୱୀକୃତି ଦେବାକୁ ବାଧ୍ୟ ହେବେ। ଯଦି କୌଣସି ଜନସ୍ୱାର୍ଥ ବିରୋଧୀ ବିଲ୍ ତରବରିଆ ଭାବରେ ବିଧାନସଭା ଦ୍ୱାରା ଗୃହୀତ ହୋଇଥାଏ ତେବେ ବିଧାନ ପରିଷଦ ତାକୁ ବିଳମ୍ବିତ କରିବା ଦ୍ୱାରା ବିଧାନସଭା ବାହାରେ ଲୋକମାନଙ୍କର ପ୍ରତିକ୍ରିୟା ସଭାସମିତି ମାଧ୍ୟମରେ ପ୍ରକାଶ ପାଇବ ଏବଂ ବିଧାୟକମାନେ ବିଲ୍‌ର ସଂଶୋଧନ କରିବାର ଆବଶ୍ୟକତା ଅନୁଭବ କରିପାରିବେ। ଏହି ପରିପ୍ରେକ୍ଷୀରେ ବିଧାନ ପରିଷଦ ବିଲ୍‌ଟିକୁ ବିଳମ୍ବ କରିଦେବାର କ୍ଷମତା ଗୁରୁତ୍ୱପୂର୍ଣ୍ଣ ବୋଲି ବିବେଚନା କରାଯାଇପାରେ। ବିଧାନ ପରିଷଦରେ ବିଶିଷ୍ଟ ବୁଦ୍ଧିଜୀବୀ ଓ ସମାଜସେବୀମାନଙ୍କର ମନୋନୟନର ବ୍ୟବସ୍ଥା ଥିବାରୁ ବେଳେବେଳେ ବିଧାନସଭାର ସଂଖ୍ୟାଗରିଷ୍ଠ ଦଳର ନେତା ମୁଖ୍ୟମନ୍ତ୍ରୀ ହୋଇ ନ ପାରିଲେ ବିଧାନ ପରିଷଦରୁ ଦକ୍ଷ ଓ ନିର୍ବିବାଦୀୟ ବ୍ୟକ୍ତି ମୁଖ୍ୟମନ୍ତ୍ରୀ ହେବାର ନଜିର ରହିଛି। ପୂର୍ବତନ ମାଡ୍ରାସ ରାଜ୍ୟରେ ବିଧାନ ପରିଷଦର ସଦସ୍ୟ ଚକ୍ରବର୍ତ୍ତୀ ରାଜଗୋପାଳଚାରୀ ୧୯୫୨ ମସିହାରେ ଦୁଇବର୍ଷ ପାଇଁ ମୁଖ୍ୟମନ୍ତ୍ରୀ ହୋଇଥିଲେ। ବିହାରରେ ନୀତିଶ କୁମାର ଓ ସୁଶିଲ କୁମାର ମଧ୍ୟ ବିଧାନ ପରିଷଦର ସଭ୍ୟ ଥାଇ ମୁଖ୍ୟମନ୍ତ୍ରୀ ଓ ଉପ-ମୁଖ୍ୟମନ୍ତ୍ରୀ ହୋଇଥିଲେ। ଅସମୟରେ ବିଧାନ ପରିଷଦର ସଦସ୍ୟମାନେ ଯେ ସରକାରରେ ସ୍ଥିରତା ଆଣିବାରେ ସହାୟକ ହୁଅନ୍ତି ଉପରୋକ୍ତ ଦୁଇଟି ଉଦାହରଣରୁ ଜଣାଯାଏ।

ପ୍ରସାଦ ହରିଚନ୍ଦନ ରାଜ୍ୟର ଜଣେ ଦୂରଦୃଷ୍ଟି ସମ୍ପନ୍ନ ଓ ଲୋକହିତକର କାର୍ଯ୍ୟରେ ନିଜକୁ ନିୟୋଜିତ କରୁଥିବା ଜନନେତା ଭାବେ ଖ୍ୟାତି ଅର୍ଜନ କରିଛନ୍ତି। ବିଳମ୍ବରେ ହେଉ ପଛେ ଆମର ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ତାଙ୍କ ପ୍ରସ୍ତାବକୁ ଗୁରୁତ୍ୱ ଦେଇଥିବାରୁ ବିରୋଧୀଦଳମାନେ ବିଧାନ ପରିଷଦ ଗଠନ ପ୍ରକ୍ରିୟାରେ ସହଯୋଗ କରିବା ଉଚିତ ପଦକ୍ଷେପ ହେବ।

*ସମାଜ, ୨୨.୦୨.୨୦୧୫*



ଓଡ଼ିଶାର ଶିକ୍ଷା, ସଂସ୍କୃତି, ପ୍ରଶାସନ ଓ ସଂଗଠନ କ୍ଷେତ୍ରର ଜଣେ ସୁପରିଚିତ ବ୍ୟକ୍ତି ଡକ୍ଟର ବିମଳେନ୍ଦୁ ମହାନ୍ତି। ଜଗତସିଂହପୁର ଜିଲ୍ଲା ଅନ୍ତର୍ଗତ ମଙ୍ଗଳପୁର ଗ୍ରାମରେ ୯ ଡିସେମ୍ବର, ୧୯୩୭ରେ ତାଙ୍କର ଜନ୍ମ। ରେଭେନ୍‌ସା କଲେଜରୁ ୧୯୬୦ରେ ଇତିହାସରେ ସ୍ନାତକୋତ୍ତର ଶିକ୍ଷା ଲାଭ କଲାପରେ ପ୍ରାୟ ତିନି ବର୍ଷ ସେ କଟକ ଷ୍ଟୁଆର୍ଟସ୍ ବିଜ୍ଞାନ ମହାବିଦ୍ୟାଳୟରେ ଅଧ୍ୟାପନା କରିଥିଲେ। ଆମେରିକାର ମିସୋରୀ ବିଶ୍ୱବିଦ୍ୟାଳୟରୁ ଏମ୍.ଇଡି. ଓ ରାଞ୍ଚି ବିଶ୍ୱବିଦ୍ୟାଳୟରୁ ସେ ପିଏଚ୍.ଡି. କରିଛନ୍ତି।

ସେ ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟର ପ୍ରଥମ କୁଳପତି, ଜାଭିୟର ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ମ୍ୟାନେଜ୍‌ମେଣ୍ଟର ପ୍ରଥମ ରେଜିଷ୍ଟ୍ରାର, ଓଡ଼ିଶା କୃଷି ବିଶ୍ୱବିଦ୍ୟାଳୟର ପ୍ରଥମ ଛାତ୍ର କଲ୍ୟାଣ ବିଭାଗର ଡିନ୍, ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ରର ନିର୍ଦ୍ଦେଶକ, ଭାରତ ସରକାରଙ୍କ ମାନବ ସମ୍ବଳ ବିକାଶ ବିଭାଗ ଅଧୀନରେ ଥିବା ଜାତୀୟ ସେବା ଯୋଜନାର ଉପମୁଖ୍ୟ ପରାମର୍ଶଦାତା, ଜାତୀୟ ସମର ଶିକ୍ଷାର୍ଥୀ ବାହିନୀର ମେଜର୍, ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଥମ ଯୁବ କଲ୍ୟାଣ ଅଧିକାରୀ, ଓଡ଼ିଶା ସରକାରଙ୍କ କ୍ରୀଡ଼ା ଓ ଯୁବସେବା ବିଭାଗର ନିର୍ଦ୍ଦେଶକ, ସଂସ୍କୃତି ବିଭାଗର ନିର୍ଦ୍ଦେଶକ ଓ ଅତିରିକ୍ତ ଶାସନ ସଚିବ ଭାବେ କାର୍ଯ୍ୟକରି ନିଜର ବୈଶିଷ୍ଟ୍ୟ ପ୍ରତିପାଦନ କରି ଏକ ଆଦର୍ଶ ବ୍ୟକ୍ତି ରୂପେ ପରିଗଣିତ ହୋଇଛନ୍ତି। ଜଣେ ଲେଖକ ଓ ସୁବକ୍ତା ଭାବେ ସେ ସୁପରିଚିତ ଓ ସୁପ୍ରତିଷ୍ଠିତ। ଗୌତମ ବୁଦ୍ଧଙ୍କ ସମ୍ବନ୍ଧରେ ଇଂରାଜୀ ଓ ଓଡ଼ିଆରେ ଲିଖିତ ଅନେକ ପୁସ୍ତକ, ବାରାକ ଓବାମା, ମଧୁସୂଦନ ଦାସ, ସୁଭାଷ ବୋଷଙ୍କ ଜୀବନୀ, ଦୁଇଟି ପ୍ରବନ୍ଧ ସଂକଳନ ଆଦି ତାଙ୍କ ଦ୍ୱାରା ରଚିତ ପୁସ୍ତକଗୁଡ଼ିକ ଜନାଦୃତ ହୋଇଛି। ଛାତ୍ର ଅବସ୍ଥାରୁ ଜଣେ କ୍ରୀଡ଼ାବିତ୍ ଓ ଜାତୀୟ ସମର ଶିକ୍ଷାର୍ଥୀ ବାହିନୀରେ ନିଜର ବିଶେଷ କୃତିତ୍ୱ ଯୋଗୁଁ ସେ ନିଜର ସ୍ୱତନ୍ତ୍ର ପରିଚିତି ସୃଷ୍ଟି କରିଥିଲେ।